# ମୋ ବୋଉର କାହାଣୀ ପେଡ଼ିରୁ

ଶ୍ରୀମତୀ ବିନୋଦିନୀ ଦେବୀ

# ମୋ ବୋଉର
# କାହାଣୀ ପେଡ଼ିରୁ

ଶ୍ରୀମତୀ ବିନୋଦିନୀ ଦେବୀ



ଲାର୍କ ବୁକ୍ସ

ମୋ ବୋଉର କାହାଣୀ ପେଡ଼ିରୁ

**ଶ୍ରୀମତୀ ବିନୋଦିନୀ ଦେବୀ**


ଅଙ୍ଗ ସଜ୍ଜା
**ସୃଜନିକା**
ଭୁବନେଶ୍ୱର ୭୫୧୦୩୦

ପ୍ରଚ୍ଛଦ
**ଶିବ ପ୍ରସାଦ ପାତ୍ର**

ମୁଦ୍ରଣ
**ମିଡ଼ିଆ ପ୍ରେସ୍**
୨୪-ଇଷ୍ଟ, ଅଶୋକ ନଗର,
ଭୁବନେଶ୍ୱର ୭୫୧୦୦୯

ପ୍ରକାଶକ
**ଲାର୍କ ବୁକ୍ସ୍**
ସୁବର୍ଣ୍ଣରେଖା ଚ୍ୟାମ୍ବର୍ସ
ଏ/୯, ଭୌମ ନଗର,
ଭୁବନେଶ୍ୱର ୭୫୧୦୦୧

**ପ୍ରଥମ ପ୍ରକାଶ - ୨୦୧୩**

**ନବେ ଟଙ୍କା ମାତ୍ର**


Mo Boura Kahani Pediru

Srimati Binodini Debi


Page Layout
**Srujanika**
Bhubaneswar 751030d

Cover Design
**Siba Prasad Patra**

Printed at
**Media Press**
24-East, Ashok Nagar,
Bhubaneswar 751009

Published by
**Lark Books**
Subarnarkha Chambers,
A/9 - Bhouma Nagar,
Bhubaneswar 751001

**First Edition - 2013**

**Rupees Ninety Only**

# ମୁଖବନ୍ଧ

ପୁରୁଣା ଗପର ରାଜ୍ୟ ହେଉଛି ଅଜଣାର ରାଜ୍ୟ, ଖେଳର ରାଜ୍ୟ। ଏଠି ସବୁ କଥାର ଅର୍ଥ ନାହିଁ। ଅର୍ଥ ଖୋଜି ବାହାର କରିବାକୁ ହେବ କିମ୍ବା ନିରର୍ଥକ ସେହି ଶବ୍ଦର ସ୍ୱନ୍ଦ ଅନୁଭବ କରିବାକୁ ହେବ। ମନେ ରଖିବାକୁ ହେବ ଯେ ଏପରି କିଛି ନିରର୍ଥକ ନାହିଁ।

ସବୁ ସାହିତ୍ୟର ଆରମ୍ଭ ଗୀତ ସାହିତ୍ୟରୁ। ମନେ ରଖିବା ପାଇଁ ଗାଇବା ଏକାନ୍ତ ପ୍ରୟୋଜନ। ଓଡ଼ିଆରେ ଛ ପ୍ରକାର ଗଦ୍ୟ ବୋଲାଯାଏ। ତା ଭିତରେ ଉତ୍କଳିକା ଚୂର୍ଣ୍ଣବ ଅନ୍ୟତମ। ଢଗ, ଢମାଳି, ପ୍ରବଚନ, ନାଁଦିଆ ଆଦି ବିଭିନ୍ନ ରଚନା ଶବ୍ଦର ଖେଳ। 'ଟିଇକି ବାଛୁରି ଗାଣ୍ଡିରେ ପଘା' ଏକ ନିରର୍ଥକ ପହଳି ପରି ମନେହୁଏ। କିନ୍ତୁ ଏଥିରୁ ଛୁଞ୍ଚି–ସୂତା ଅର୍ଥ ବାହାରିଲେ ଏହା ଏକ ସାର୍ଥକ ପହଳି ହୋଇଯାଏ।

ଏ ବହିରେ ପନ୍ଦରଟି ଗପ ଅଛି। ଏ ଗପଗୁଡ଼ିକ ମୋ ସାନ ଭଉଣୀ ବିନୋଦିନୀ (ଚୁନି) ମୋ ବୋଉର ଗପପେଡ଼ିରୁ ସାଇତି ରଖିଛି। କଥନ ଭଙ୍ଗି ବୋଉର, ଫୁଲମାଳ ଗୁନ୍ଥିବା ସୂତା ଆଉ ଫୁଲ ବୋଉର। କିନ୍ତୁ ସଜେଇ ମାଳ ଗୁନ୍ଥିବା ଚୁନିର। ଏଇ କଥାଗୁଡ଼ିକର ବାଚନ ଭଙ୍ଗି ଓ ଭାଷାର କାରିଗରୀ ଯେତେ ପୁରୁଣା ହେଲେ ମଧ୍ୟ ଚୁନି ତାକୁ ସଜେଇ ଏତେ ନୂଆ କରିଦେଇଚି ଯେ ସବୁ ପୁରୁଣା ନୂଆ ହୋଇଯାଇଛି। ଏହା ଆଧୁନିକ ହେଲେ ମଧ୍ୟ ଆଧୁନିକ ଗପବହିଙ୍କ ଭିତରେ ବ୍ୟତିକ୍ରମ।

ଏଥିରେ ଥିବା ଚାରିଟି ଗପର ମୁଖ୍ୟ ଚରିତ୍ର ହେଉଛନ୍ତି ନାୟିକା ବା ଝିଅ। ଝିଅ ହେଉଛନ୍ତି ପରିବାରର, ସମାଜର ଓ ରାଜ୍ୟର ଶକ୍ତି। ଆମ ପରମ୍ପରାରେ ଥିଲା, 'ନାର୍ଯ୍ୟସ୍ତୁ ପତ୍ର ପୂଜ୍ୟନ୍ତେ ତତ୍ର ତିଷ୍ଠତି ଦେବତାଃ।' ଯେଉଁଠି ନାରୀମାନେ ପୂଜା ପାଆନ୍ତି, ସେଇଠି ଦେବତାଙ୍କର ଅଧିଷ୍ଠାନ। କିନ୍ତୁ ପୁରୁଷପ୍ରଧାନ ସମାଜରେ ନାରୀମାନେ ହିନିମାନିଆ ହେଲେ। ପରିବାର ଓ ସମାଜକୁ ବାନ୍ଧିରଖିବାର ସୂତ୍ର ହେଉଛି ନାରୀ। ସେଇଥି ପାଇଁ ପୁରୁଷର ସବୁ ଅଦୋଉତିର ଶିକାର ହେଉଛି ନାରୀ। ପଶ୍ଚିମୀ ଶିକ୍ଷାରେ ଶିକ୍ଷିତ ନାରୀଙ୍କୁ ପୁରୁଷ ଅତ୍ୟାଚାର ବିରୁଦ୍ଧରେ ଲଢ଼ିବା ପାଇଁ ସଶକ୍ତ ହେବାକୁ ଶିକ୍ଷା ଦିଆଯାଉଛି। କିନ୍ତୁ ଆମ ପରମ୍ପରାରେ ଥିବା ନାରୀର ସହିଷ୍ଣୁତା, ବିନମ୍ରତା, କୋମଳତା ସାଙ୍ଗେ ସାଙ୍ଗେ ଟାଣପଣିଆ ଯେ ପୁରୁଷଙ୍କୁ ବଦଳେଇବାରେ ସମର୍ଥ ହୁଏ ଏକଥା ଶିଖା ଯାଉନାହିଁ। ଦୁଷ୍ଟ, ଅହଙ୍କାରୀ ଓ ହିଂସୁକ ଦଣ୍ଡପାଏ। ଶିଷ୍ଟ, ଗୁଣଯୁକ୍ତ, କୋମଳ ସ୍ୱଭାବ, ଅହିଂସ ଓ ନିରହଂକାର ଜୀବନ ଯୁଦ୍ଧରେ ଜିଣେ। ଏଇସବୁ ଆଦର୍ଶ ଗପଛଳରେ ଲୋକଶିକ୍ଷାର ଅଙ୍ଗ ହୋଇଯାଏ।

ଏଇ ଗପଗୁଡ଼ିକର ଚମ୍ପକ ସୁନ୍ଦରୀ, ଚମ୍ପିଚେରୀ, ସାଧବଘର ସାନଝିଅ, ସାନବୋହୂ, ଚାରି

ସଙ୍ଗାତୁଣୀ, ଗରିବ ବ୍ରାହ୍ମଣର ସାନଝିଅ, ମନ୍ତ୍ରୀଙ୍କ ବୁଦ୍ଧିମତା ଝିଅ ପଦ୍ମାବତୀ, କଲରେଇଫୁଲ ଆଦି ଗୋଟିଏ ଗୋଟିଏ ଦୃଷ୍ଟିରୁ ଅନନ୍ୟା ଥିଲେ ସୁଦ୍ଧା ଆମର ଅତି ଜଣାଶୁଣା ଆଉ ଅତି ଆପଣାର ।

ଏଇ ଗପଗୁଡ଼ିକର ଗୋଟିଏ ବିଶେଷତ୍ୱ ହେଉଛି ସାମାଜିକ ସମନ୍ୱୟ । ଏଠି ପଶୁପକ୍ଷୀ, ଗଛବୃକ୍ଷ, ବାସନକୁସନ, ଶିଳଶିଳୁପୁଆ, ସମସ୍ତେ କଥାବାର୍ତ୍ତା କରନ୍ତି । ଦୁଃଖସୁଖ ହୁଅନ୍ତି । ଦୁଃଖି ଅରକ୍ଷିତ, ଅତ୍ୟାଚାରିତ ମଣିଷ ସହିତ ସମବେଦନା ବାଣ୍ଟନ୍ତି । ବେପରୁଆ ରାଜାଝିଅ, ଯିଏ ପାହାଡ଼ରେ ଚଢୁଥିଲା, ନଦୀରେ ପହଁରୁଥିଲା, ଘୋଡ଼ା ଦଉଡ଼ୋଉଥିଲା, ଶଙ୍ଖ ପୋଖରୀରେ ବନଶୀ ପକେଇ ମାଛ ଧରୁଥିଲା, ରଙ୍ଗରଙ୍ଗିଆ ବେଶ ପୋଷାକରେ ରଙ୍ଗିଲା ପ୍ରଜାପତି ପରି ସାରା ଫୁଲବନ ଘୂରିବୁଲୁଥିଲା, କନିଆଦେଖା ଗୋଧୂଳି ବେଳାରେ ଗୋଠଫେରନ୍ତା ଉଆସର ଗାଈଙ୍କ ଗହଣରେ ବାଛୁରୀମାନଙ୍କୁ ଗୋଡ଼ାଇ ଗୋଡ଼ାଇ ଧରି ଢେର ସାରା ଗେହ୍ଲା କରୁଥିଲା; ଆପେ ପାଳିଥିବା ହରିଣ, ନେଉଳ, ଗୁଣ୍ଡୁଚି ମୂଷା, ଠେକୁଆ, ଶଙ୍ଖୀ ବିଲେଇ, ମୟୂର, ହଂସ, ଶୁଆ, ସାରୀ, ବାରମାସୀ ଚଢ଼େଇ ଆଦିଙ୍କ ପାଖରେ ଘୂରି ଘୂରି କାହାକୁ ଧାନକେଣ୍ଡା, କାହାକୁ ଗଜାବୁଟ, କାହାରିକୁ ପାଚଲା କଇଁଚ କାକୁଡ଼ି, ନାଲି ଲଙ୍କା, କାହାକୁ ଦାନାମୁଠେ, ଫଳଟେ ଦେଇ, କାହା କାହା ସୁରକୁ ନକଲ କରି ହସି ହସି ଲେଉଟି ପଡୁଥିଲା । ଇଏ ମୋ ପିଲାଦିନର ଆମ ସାଇଝିଅଙ୍କ, ବିଶେଷ କରି ମୋ ଭଉଣୀ ଆଉ ପିଇସୀମାନଙ୍କ, ରୂପଗୁଣର ସମାହାର । ଖାଲି ଘୋଡ଼ାଚଢ଼ା ଆଉ ବନଶୀରେ ମାଛଧରା ଯାହା ନ ଥିଲା ।

ସତରେ ସୁନାସାପ କିନ୍ନର ପାଲଟିଯାଏ । ଅହିରାଜ ଲୋଭୀ, ହିଂସୁକ, ଦୁଷ୍ଟ ଲୋକଙ୍କୁ ଗିଳି ଗଛରେ ଗୁଡ଼େଇ ହୋଇ ସେମାନଙ୍କ ହାଡ଼ଗୋଡ଼ ଚୁନାକରି ହଜମ କରିଦିଏ । ରାଜାପୁଅ ପାରା, ବାର୍ହା, ବାଘ ରାଜକନ୍ୟାଙ୍କୁ ବାହାହୋଇ, ସେମାନଙ୍କୁ ଅପେକ୍ଷା କରେଇ, ଅସୁରୁଣୀମାନଙ୍କୁ ମାରି, ଆପଣା ମା ସାଜିଥିବା ଅସୁରୁଣୀର ଜୀବନ ନାଟିକା ଧରି, ତିନି ରାଜକନ୍ୟାଙ୍କ ସହିତ ଆପଣା ରାଜ୍ୟକୁ ଫେରିଆସିଲା । ମାଙ୍କଡ଼ ନିର୍ବାସିତା ନିରିମାଖି ଝିଅକୁ ରାଜାପୁଅ ସାଙ୍ଗେ ମିଳାଇବାରେ ମଣିଷ–ପଶୁପକ୍ଷୀ ଜୀବନର ସମନ୍ୱୟ ଏକ ସମ୍ପର୍କଭିତ୍ତିକ ବ୍ୟବସ୍ଥିତ ସମାଜର ପରିକଳ୍ପନା । କେଳାକେଳୁଣି ତା'ପରେ ଶିଳଶିଳୁପୁଆ, ବାସନକୁସନ, ଗାଈବାଛୁରୀଙ୍କ କଥାବାର୍ତ୍ତା ସାଧବ ସାନବୋହୂକୁ ବଞ୍ଚେଇଲା । ପିଲାମାନଙ୍କ ମନରେ ଏକ ସୁସମ୍ପର୍କଭିତ୍ତିକ ସମାଜର ଛବି ଆଙ୍କିବାରେ ଏଇସବୁ ଗପର ଯୋଡ଼ି ନାହିଁ । ମୋ ବୋଉ ଏକାଧାରରେ ଶବ୍ଦଶିଳ୍ପୀ, ଚିତ୍ରକର, କଳ୍ପନାପ୍ରବଣ ସର୍ଜନଶୀଳ କଥକ । ସିଏ ଏଇ ସବୁ କଥା କହିକହି ଆମ ଭାଇଭଉଣୀଙ୍କ ଜୀବନ ଗଢ଼ିଛି । ମୁଁ ଆଶା କରୁଛି ଯେ ଏଇ ଗପଗୁଡ଼ିକ ଆମ ଭାଙ୍ଗିଯାଉଥିବା ସମାଜକୁ ଯୋଡ଼ିବାରେ ସାହାଯ୍ୟ କରିବ ।

**ଡକ୍ଟର ଦେବୀ ପ୍ରସନ୍ନ ପଟ୍ଟନାୟକ**

# ବହି ସମ୍ପର୍କରେ...
# ଅଦେଖା ଅପା ସମ୍ପର୍କରେ...

ବିନୋଦିନୀ ଦେବୀ... । ବିନୋଦିନୀ ଦେବୀ... ।

ବିନୋଦିନୀ ଦେବୀଙ୍କୁ ମୁଁ ଆଜି ଯାଏ ପ୍ରାୟ ଦେଖିନି । ଥରୁଟିଏ ମାତ୍ର ଦେଖା । ସେ ପୁଣି ଝଲକ୍ ମାତ୍ର । ସେ ଅଚିହ୍ନାକୁ ମୁଁ ଅଚିହ୍ନା । କଥାବାର୍ତ୍ତା କିଛି ନାହିଁ ।

କିନ୍ତୁ ଅଦ୍ଭୁତ ନିବିଡ଼ତା । ଆନ୍ତରିକତା ଏକାବେଳେ ସୂତାରେ ସୁର୍କିମାଞ୍ଜା । ସେ ମହିୟସୀ ମହିଳା ମୋର ଏଇନା ହେଇ ଯାଇଛନ୍ତି ଅପା ହାଃ... ହାଃ... । କିନ୍ତୁ ହାୟ... ମୁଁ ଆଜି ଯାଏ ତାଙ୍କୁ ଦେଖିନି ।

କଥା କ'ଣ କି ଶତାବ୍ଦୀ ଭବନରେ ବିଜୁଳି ଦୀପାଳିମାଳା । ଗେଟ୍ ନିକଟରେ ଦାଲାନ୍‌ରେ ବଢ଼ିଥିବା ଲାଜୁଳୀ, ଭୀରୁ ମଧୁମାଳତୀର ଝଙ୍କାଳିଆ ପତ୍ର ଗହଳରେ ମେଞ୍ଚି ମେଞ୍ଚି ତାରା ପରି ଫୁଟୁଥିବା ଫୁଲରୁ ମହୁର ବରଷା ଥୋପି ପଡୁଛି ।

ମୁଁ ଲାଉଞ୍ଜ ଭିତରକୁ ପଶିଗଲି । ଚକ୍‌ମାଚକ୍ ଫିନ୍ ଫିନ୍ ବୁନିଆଦି, ଖାନ୍‌ଦାନୀରେ, ଶିକ୍ଷାନ୍ତରେ ପରିପୂର୍ଣ୍ଣ ସମ୍ଭ୍ରାନ୍ତ୍ୟରେ ଘର ଭିତରଟି ଅତି ଗରିମାମୟ ଦିଶୁଥିଲା । ମୁଁ ଚମ୍‌କି ଗଲି । କୁର୍ସି ଉପରେ ବସି ଆଳାପରତ ଦୁଇଜଣ ବ୍ୟକ୍ତି । ଜଣଙ୍କୁ ତ ଚିହ୍ନିପାରୁଛି ଇଏ ହେଉଛନ୍ତି ପ୍ରଖ୍ୟାତ ଗାୟକ ଶ୍ରୀ ପ୍ରଣବ ପଟ୍ଟନାୟକ, କିନ୍ତୁ ଆରେକ କିଏ ? ଜଣେ ଭଦ୍ର ମହିଳା ।

ଶୀତ ଯୋଗୁ ଗାଢ଼ କୃଷ୍ଣ ବର୍ଣ୍ଣର ପଶମ ବସ୍ତ୍ରରେ ସେ ଦୁହେଁ ତାଙ୍କର ସର୍ବାଙ୍ଗ ଶରୀରକୁ ଆଚ୍ଛାଦିତ କରି ରଖିଥିଲେ ।ଏଣେ ଦାମୀ କୃଷ୍ଣ ପଶମ ବସ୍ତ୍ରରେ ରାତ୍ରିର ସବୁତକ ତମସା ବଢ଼ିଗଲା ବେଳକୁ, ଉଜ୍ଜ୍ୱଳ ଚନ୍ଦ୍ରଉଦିଆ ତିମିରେ ଦୁହିଁଙ୍କର ଗୋରା ମୁଖମଣ୍ଡଳରେ ଝଲ୍‌ମଲ୍ ବିଜୁଳି ଆଲୁଅର ଟିକିଟିକି ତାରା ଝଲସି ଉଠୁଛି ।

ମୋର ଆଖିର ଚମକିଲା କନୀନିକାରେ ଏକାବେଳେ ସ୍ତବ୍ଧ ନିଥରତା କାରଣ ସେମାନେ ମତେ ଜଘନ୍ୟ ଭାବେ ଅଭିଜାତ ଦିଶୁଥିଲେ, ମୋ ଛାତିର ପର୍ଦ୍ଦା ଅସ୍ପଷ୍ଟ ସ୍ୱରରେ ମୋ କାନ ପାଖରେ କହିଲା: ମତେ ଖାଇଲା ଲୋ ବୋପା... ।

ହାଃ... ହାଃ... ହାଃ... ।

ମୁଁ ପଦାକୁ ଛିଟିକି ଆସିଲି । କାହିଁକି ନା ସେମାନଙ୍କର ଆଳାପ ଆଲୋଚନା ଭିତରେ ମୁଁ ବା କାହିଁକି କବାବ୍ ମେ ହଡ୍ଡୀ ହୋଇ ପଶିବି ? ସଙ୍ଗୀତର ଖୋଜ୍ ଖବର ରଖୁଥିବା ଅସଲି

ସମଝଦାର୍ ସୁରସିକ ଶ୍ରୀମାନ ସୂର୍ଯ୍ୟ ଦେବ ସେମାନଙ୍କ ପାଖରେ ବସିଥିଲା ଏବଂ ମତେ ବାହାରକୁ ଚାଲିଯାଉଥିବାର ଦେଖି ମୋ ପଛେ ପଛେ ଚାଲି ଆସିଲା।

ଉକ୍ତ ମହିଳାଙ୍କର ଜାଜ୍ୱଲ୍ୟମାନ ମୁରବୀପଣର ଅସାମାନ୍ୟ ରୂପଠାଣି ମତେ ପଲକ ମାତ୍ରକେ ଅଭିଭୂତ କରି ଦେଇଥିଲା। ମଥାର ସଂସ୍କୃତି ତଥା ଐତିହ୍ୟପୂର୍ଣ୍ଣ ମର୍ଯ୍ୟାଦାବନ୍ତ ଅବଗୁଣ୍ଠନ ଓ ହରିଦ୍ରା ବର୍ଣ୍ଣର ପ୍ରଶସ୍ତ କପାଳରେ ଦାଉ ଦାଉ ସିନ୍ଦୁର ଟୋପାର ପ୍ରଭାତୀ ସୂର୍ଯ୍ୟସମ ଲାଲିମା ଏବଂ ସର୍ବାଙ୍ଗ ଶରୀରରେ କୃଷ୍ଣ ବର୍ଣ୍ଣର ସ୍କାର୍ଫର ପ୍ରାଚୁର୍ଯ୍ୟମୟ ବିଭବ ତାଙ୍କୁ ଏପରି ଲକ୍ଷ୍ମୀବନ୍ତୀ କରି ଗଢ଼ି ତୋଳିଥିଲା ଯେ ମୁଁ ସୂର୍ଯ୍ୟକୁ ଦେଖୁ ଦେଖୁ ପଚାରିଲି: ଇଏ କିଏ କିରେ?

ସୂର୍ଯ୍ୟ ଉତ୍ତର ଦେଲା ବିନେଦିନୀ ଦେବୀ, ଲିରିସିଷ୍ଟ।

ତାଙ୍କୁ ଦେଖୁ ଦେଖୁ ସମ୍ଭ୍ରମରେ ଯାହା ଦବି ଯାଇଥିଲି, ନାଁ ଶୁଣୁ ଶୁଣୁ ଆହୁରି ଦବି ଗଲି। ହଠାତ୍ ମୋର ମନେ ପଡ଼ିଲା ସେଇ ପ୍ରସିଦ୍ଧ ଗୀତ:

ଏଇ କଳା ମୋର କଳଙ୍କ
ମରମରେ ମୋର ରକ୍ତର ଛିଟା
ଏଇ ମୋ ମଥାର ତିଳକ
ଏଇ କଳା ମୋର କଳଙ୍କ।

ଗୀତ ଶୁଭେ। ଶୁଭେ......

କେତେ କୋଠାମାନଙ୍କରେ କାନ୍ଥରେ ବାଡ଼େଇ ହୋଇ, ମୁଣ୍ଡିଆମାନଙ୍କର ଚୂଡ଼ା ଛୁଇଁ, ନଦୀ-ନାଳ, ବନ-ଉପବନର ଶାଖା-ପ୍ରଶାଖାର ପତ୍ର-ଫୁଲକୁ ଶିହରିତ କରି, ଧାନ-ମୁଗ-ବିରି ବିଲର ସବୁଜକ ସବୁଜିମାରେ ସଂଚରି ଯାଇ ଅମୃତ ଧାରାର ଧ୍ୱନି ଧ୍ୱନିରେ ମନ ପ୍ରାଣରେ ଚନ୍ଦନ ଢାଳେ। ମନ ଭରି ଯାଏ କସ୍ତୁରୀର ବାସ୍ନାରେ।

ଆକାଶବାଣୀ, କଟକ: ବର୍ତ୍ତମାନ ଆଧୁନିକ ସଙ୍ଗୀତ ଶୁଣାଇବେ: ଅକ୍ଷୟ ମହାନ୍ତି। ଗୀତିକାର: ବିନୋଦିନୀ ଦେବୀ।

ଏ ରାଜ୍ୟର ଅତୀବ ଲୋକପ୍ରିୟ ସୁପ୍ରଖ୍ୟାତ ଗାୟକ ଅକ୍ଷୟଙ୍କ କଣ୍ଠରୁ ପ୍ରସରି ଯାଉଛି ମହାନ ସୁନିର୍ବାଚିତ ମରମଥରା ଲହୁଣୀବୋଳା ଶବ୍ଦର ସୁଲଳିତ ଗୀତ:

ଅମଡ଼ା ବାଟର ଉଦାସୀ ଯାତ୍ରୀ
ଏ କଳଙ୍କ ମାରି ମଥାରେ ଟୀକା,
ମରୁ ପଥିକୀ ମୁଁ, ଅସରା ମୋ ପଥ
ଅମା ଅନ୍ଧାରେ ଚାଲିଛି ଏକା।
ଏଇ କଳା ମୋର ଆଖିର ତାରକା
ଏ କଳଙ୍କ ମୋର ଆଲୋକ
ଏଇ କଳା ମୋର କଳଙ୍କ।

ଆହା... ! ଆହା... ! କି ସୁମଧୁର ସୁକୋମଳ ଶବ୍ଦବିନ୍ୟାସ! ଉଦାସ ଯାତ୍ରୀ, ମଥାରେ ଟୀକା, ମରୁ ପଥିକୀ ମୁଁ। ବାଃ.. ବାଃ... ବାଃ......!

ମୁଁ ଯଦି ମ୍ୟାଜିକବାଲା ପି. ସି. ସରକାର ହୋଇଥା'ନ୍ତି, ତେବେ ବର୍ତ୍ତମାନ ମୁଠାଏ ସୁନା ଜରି ଶୂନ୍ୟାକାଶକୁ ଫୋପାଡ଼ନ୍ତି। ତା'ପରେ କ'ଣ ହୁଅନ୍ତା? ସେ ମୁଠାଏ ଜରି ଆକାଶରେ ବିଞ୍ଚି ହୋଇଗଲା ବେଳେ, ସେଥିରୁ ବାହାରି ପଡ଼ନ୍ତେ ହଜାରେ ଭଦଭଦଳିଆ ଚଢ଼େଇ। ସେମାନେ ଆକାଶରେ ଗୀତ ଗାଇ ଉଡ଼ି ଯାଉଥା'ନ୍ତେ। ତା'ପରେ କ'ଣ ହୁଅନ୍ତା? ଆଉ ସେ ଚଢ଼େଇମାନେ ନାହାନ୍ତି। ବରଂ ସେ ଚଢ଼େଇମାନେ ବର୍ତ୍ତମାନ ବନିଯା'ନ୍ତେ ଗୋଟାଏ ଫର୍ ଫର୍ ଉଡ଼ନ୍ତା କ୍ଷୀରୋଦରୀ ପାଟ ଏବଂ ସେଇ ପାଟରେ ଲେଖା ହୋଇଥା'ନ୍ତା ବିଚିତ୍ର ଢଙ୍ଗରେ:

ଏଇ କଳା ମୋର କଳଙ୍କ
ମରମରେ ମୋର ରକ୍ତର ଛିଟା
ଏଇ ମୋ ମଥାର ତିଳକ
ଏଇ କଳା ମୋର କଳଙ୍କ।

ଅଧିକାଂଶ ସମୟରେ ମୁଁ ଗୀତ ଶୁଣେ। ସକିଲ୍ ବାଦାୟୁନୀ, ସାହିର୍ ଲୁଧିଆନ୍‌ଭିଙ୍କ ଠାରୁ ଆରମ୍ଭ କରି ହସ୍‌ରତ୍ ଜୟପୁରୀ, ଆନନ୍ଦ ବକ୍ସି, ଜାଁ ନିସାର୍ ଅଖ୍‌ତାର କିମ୍ବା ଗୁଲ୍‌ଜାର ଯାଏ ମୁଁ ଗୀତ ଶୁଣେ। ଏହାଛଡ଼ା ଆମ କାଳୀଚରଣ, ନାରାୟଣ ପ୍ରସାଦ, ଜୀବନାନନ୍ଦ, ଦେବଦାସ, ଶିବାନନ୍ଦ ଅଥବା ନିଜେ ଅକ୍ଷୟଙ୍କର ଗୀତମାନ ମୁଁ ଶୁଣିଛି। ଏମାନଙ୍କର ବହୁ ଉଚ୍ଚାଙ୍ଗ ଗୀତ ସଙ୍ଗୀତ ସାମ୍ରାଜ୍ୟରେ କବିଙ୍କୁ ଯେ ବହୁ ରସପିପାସୁ ଜନମାନସରେ ଚିରନ୍ତନୀ ସ୍ଥାନ ଦେବ ଏ କଥା ସତ। ଭାତ ହାଣ୍ଡିରୁ ବାସ୍ ଗୋଟିଏ ଭାତକୁ ଯେମିତି ପରଖ କରାଯାଏ, ବିନୋଦିନୀଙ୍କର ସେଇ ଗୋଟିଏ ଗୀତକୁ ତଉଲ କଲେ ଜଣାଯିବ ଯେ କେତେ ପରିଚ୍ଛନ୍ନ, ପ୍ରାଞ୍ଜଳ, ଛଳଛଳ ତାଙ୍କର ସୂକ୍ଷ୍ମ ମାନସସତ୍ତା ଯାହାକି ତାଙ୍କୁ ଏପରି ଏକ ଗୀତି କବିତା ସୃଷ୍ଟି କରିବା ପାଇଁ ପ୍ରଶ୍ରୟ ଦେଇଛି।

ମୋ ଫୋନ୍ ରିଙ୍ଗ୍ କରୁଛି। ଫୋନ୍ ଧରିଲି। ହେଲୋ...

ଆପଣ ଦେବ୍ରାଜ ବାବୁ କହୁଛନ୍ତି ଟି?

ଅପର ପ୍ରାନ୍ତରୁ ଥର ଥର ନାରୀକଣ୍ଠ ଶୁଭୁଛି। ବୋଧହୁଏ ବର୍ଷୀୟସୀ ମହିଳା। ସ୍ୱରଭଙ୍ଗ ଘଟିଛି। ଏହି ସ୍ୱରଭଙ୍ଗପଣ ମତେ ହଠାତ୍ ଚହଲେଇ ଦେଲା। ଅତି ବିନୀତ ଭାବରେ କହିଲି: ଆଜ୍ଞା ହଁ।

ମୁଁ ବିନୋଦିନୀ ଦେବୀ...

ଆଜ୍ଞା?

ମୁଁ ବିନୋଦିନୀ ଦେବୀ। ବେଙ୍ଗାଲୁରୁରୁ କହୁଛି।

ସନ୍ତାନବତ୍ସଳା ମା'ର କଣ୍ଠରୁ ଯେପରି ମୋହ, ମମତା, ମାୟାର ଝରଣା ନୁହେଁ, ଟିକି ଟିକି ଫୁଲ ଝରିପଡ଼େ ସନ୍ତାନର ଅଣ୍ଟିରେ, ସେହିପରି ଅତି ଭାବପ୍ରବଣ ଗଳାରେ ଭାସି ଆସୁଛି ଫୋନ୍‌ରୁ ଶବ୍ଦମାଳା। ମୁଁ ଏକାବେଳେ ଆପଣଙ୍କର ଅଚିହ୍ନା। ତଥାପି ଅନୁରୋଧ କରୁଛି, ମୋର ଗୋଟିଏ କାମ କରିବେ ?

ମୁଁ ହଡ଼ବଡ଼େଇ ଗଲି। ମନକୁ ପଚାରିଲି: ଏ ବିନୋଦିନୀ ଦେବୀଟି କିଏ? ମୁଁ ତ ଏ ମହାଶୟାଙ୍କୁ ଆଦୌ ଜାଣିନି। ଏତେ ବାଟ! ପୁଣି ବେଙ୍ଗାଲୁରୁ?

ବେଙ୍ଗାଲୁରୁର ବିନୋଦିନୀଙ୍କର କି କାମରେ ମୁଁ ଆସିପାରିବି?

ମୁଁ ଗୋଟିଏ ବହି ଲେଖୁଛି।

ବହି କଥା କହିବାରୁ ମୋ ଦୃଶ୍ୟପଟରେ ସିନେମା ପରି ପହଞ୍ଚିଗଲା – ଶତାବ୍ଦୀ ଭବନ, ପ୍ରଣବ ଓ ବିନୋଦିନୀ ଦେବୀ।

ମୁଁ କହିଲି: ହଁ ଆଜ୍ଞା! କୁହନ୍ତୁ।

ସେ ବହିର ପାଣ୍ଡୁଲିପିକୁ ମୁଁ ଆପଣଙ୍କ ପାଖକୁ ପଠେଇବି।

ଆଖି ମୋର ବଡ଼ ହୋଇଗଲା: ଆଜ୍ଞା?

ମୋ ବହିର ମୁଖବନ୍ଧ ଆପଣ ଲେଖିବେ ବୋଲି ମୁଁ ଠିକ୍ କରିଛି।

ତାଜୁବ୍ ହୋଇଗଲି। ଘାବରା ବନିଯିବା କଥା। ବିନୋଦିନୀ ଦେବୀ... ! ସୁଦୂର ବେଙ୍ଗାଲୁରୁ! ଏତେ ବାଟରୁ ମୁଁ କେମିତି ମନେ ପଡ଼ିଗଲି? ମୋ ଫୋନ୍ ନମ୍ବର ପୁଣି ପାଇଲେ କେମିତି? ପୁଣି ତାଙ୍କ ବହିର ମୁଖବନ୍ଧ ମୁଁ ଲେଖିବି! ହାଃ... ହାଃ... ପାଗଲ୍।

କହିଲି: କି କଥା କହୁଛନ୍ତି ଆଜ୍ଞା? ଆପଣଙ୍କ ଭଳି ଅନରେବଲ୍ ଲେଡିଙ୍କର ବହିର ପ୍ରିଫେସ୍ ମୁଁ ଲେଖିବି? କଟକ, ଭୁବନେଶ୍ୱରରେ ମହା ମହା ପଣ୍ଡିତମାନେ, ଏଚ୍.ଓ.ଡି.ମାନେ ଥିବାବେଳେ ମୋ ପରି ଗଧମାର୍କା ଲେଖକ ପ୍ରତି ଆପଣଙ୍କର ଏ ଶୁଭଦୃଷ୍ଟି କାହିଁକି?

ମୁଁ କିଛି ଶୁଣିବି ନାହିଁ। ଆପଣ ହିଁ ମୋ ବହିର ମୁଖବନ୍ଧ ଲେଖିବେ।

ସାହିତ୍ୟ କଥା ମୁଁ କ'ଣ ଜାଣିଛି? ପେଣ୍ଡାଲ୍ ଉପରେ ମହା ମହା ପଣ୍ଡିତମାନେ ଭୁବନେଶ୍ୱର, କଟକରେ ଥାଇ ଆମେରିକା, ଲଣ୍ଡନ ସାହିତ୍ୟ କଥା କୁହନ୍ତି। ସାହିତ୍ୟ ବାବଦରେ ହବେଇ ଜାହାଜରେ ଭୁବନେଶ୍ୱରରୁ ଯାଇ ବିଶ୍ୱ ପରିକ୍ରମା କରନ୍ତି ଓ ତା'ର ମହିମା ବଖାଣନ୍ତି। ଏପରି ସ୍ଥଳେ ସାହିତ୍ୟ? କି ସାହିତ୍ୟ? ସାହିତ୍ୟର କି ହିସାବଟା ମତେ ଜଣାଅଛି ଯେ ମୁଁ ବହିର ମୁଖବନ୍ଧ ଲେଖିବି? ଏମିତି ପଣ୍ଡିତମାନେ ଯେତେବେଳେ ତାଙ୍କ ସମାଲୋଚନା ବହିରେ କିମ୍ବା ତାଙ୍କ ଶ୍ରୀତୁଣ୍ଡରେ ଆଜି ଯାଏ ମୋ ନାଁ ଉଚ୍ଚାରଣ କରିବାକୁ ଆଡ଼ରୁଷା ଦିଅନ୍ତି, ମତେ ରୀତିମତ ଅଣଦେଖା କରନ୍ତି, ମୋ ପରି ଫର୍ଟିଚର ଲେଖକ ବିନୋଦିନୀ ଦେବୀଙ୍କ ବହିରେ ମୁଖବନ୍ଧ ଲେଖିବ। ଆଶ୍ଚର୍ଯ୍ୟ!

କିନ୍ତୁ ମୁଁ ତାଙ୍କ ଅନୁରୋଧ ରକ୍ଷାକରି ମୁଖବନ୍ଧ ଲେଖୁଛି। ସାହିତ୍ୟର ବଡ଼ ଚକୁଳିଆ ପଣ୍ଡା, ଯାହାଙ୍କର ଛତାର ଗୋଲେଇ ମୋଟେଇ ପ୍ରକାଣ୍ଡ, ସେଇ ପ୍ରବୀଣ ଭାଷାତତ୍ତ୍ୱବିତ୍ ଡ. ଦେବୀପ୍ରସନ୍ନ ପଟ୍ଟନାୟକଙ୍କର ଭଉଣୀ ସିଏ। ତିଗିରିଆ ଗଡ଼ ନିବାସୀ ସ୍ୱାଧୀନତା ସଂଗ୍ରାମୀ ଓ ଗାନ୍ଧିବାଦୀ ପ୍ରସିଦ୍ଧ ବେବର୍ତ୍ତା ପରିବାରର ଅଲିଅଳୀ ରାଜ ଦୁଲଣୀ ସେ। ପୁଣି ଏକ ନମ୍ବର ଗାୟକ ସ୍ୱର୍ଗତ ଅକ୍ଷୟଙ୍କର ଭଉଣୀ ସୁଲକ୍ଷଣାଙ୍କର ନଣନ୍ଦ। ଯେଉଁଠି ଘରେ କଳା ସଂସ୍କୃତି ଠେସା ଠେସି, ଖୁନ୍ଦା ଖୁନ୍ଦି, ସେଇ ଘରର ସଦସ୍ୟା ତାଙ୍କ ବହିରେ ମୋର ମୁଖବନ୍ଧ ପ୍ରଥମେ ଦେବାକୁ ଚାହୁଁଛନ୍ତି। କେମନ୍ତ।

ଲୋକକଥା ହିଁ ସଂସ୍କୃତି। ସଭ୍ୟତା ହୁଏତ ମରି ଯାଇପାରେ, କିନ୍ତୁ ସଂସ୍କୃତି କେବେ ମରେନା। ବରଂ ତାହା ପାଣି ପବନରେ, ରକ୍ତରେ ମିଞ୍ଜି ହୋଇ ରହିଥାଏ। ଶ୍ରୁତି ଯଦି ସଂସ୍କୃତି, ବେଦ ହେଉଛି ସଭ୍ୟତା। ଭାତ ଯଦି ସଂସ୍କୃତି, ପଲାଓ ହେଉଛି ସଭ୍ୟତା। ଧୋତି ସଂସ୍କୃତି ହେଲେ ଫୁଲ୍ ପ୍ୟାଣ୍ଟ ହେଉଛି ସଭ୍ୟତା। ସଭ୍ୟତା ପାଞ୍ଚ ଦଶ ବର୍ଷରେ ବଦଳି ଯାଇପାରେ। କ୍ଷଣେ ମାତ୍ରରେ ହିରୋସିମା ନାଗାସାକି ଚୌପଟ୍। ହରପ୍ପା-ମହେଞ୍ଜୋଦାରୋ ସଭ୍ୟତା କାହିଁ କୁଆଡ଼େ କାଳର ଗର୍ଭରେ ଲୀନ।

ନାଳନ୍ଦା ଠାରୁ ଆରମ୍ଭ କରି ଆମର ରତ୍ନ ଗିରି, ଲଳିତ ଗିରି, ଧଉଳି ଗିରି ପ୍ରଭୃତି, ଏକଦା ଯାହା ସମୃଦ୍ଧି, ଐଶ୍ୱର୍ଯ୍ୟ, ଯଶରେ ପରିପୂର୍ଣ୍ଣ ଥିଲା, ବର୍ତ୍ତମାନ ତାହା ଗାଥାରେ କିମ୍ବା କଥାରେ ।

ଆଧୁନିକୀକରଣ ଫଳରେ ସହରୀ ସଭ୍ୟତା ପ୍ରବଳ ଭାବରେ ବେଗଗାମ୍ୟ ହେଉଛି । ପଲ୍ଲୀ ସଭ୍ୟତାକୁ ପ୍ରାୟ ପ୍ରତିଦିନ ସହରୀ ସଭ୍ୟତା ଚୂନା କରିବାରେ ଲାଗିଛି ଏବଂ ନିରୋଳା ଲୋକ ସଂସ୍କୃତି ଗୋଳିଆମିଶା ଶଙ୍କର ଜାତିର । ଯେତେ ଯାହା ହେଲେ ବି, ମାଟି ଗୋବର ଲିପା ଭାଗବତ ଟୁଙ୍ଗି, କୋଠାରେ ପରିବର୍ତ୍ତିତ ହେଲେ ବି, ସହସ୍ର ବିଜୁଳି ଆଲୁଅ ମାଳାକୁ ପଛ କରି ଗାଦିରେ ଘିଅ ଦୀପ ନହେଲେ ନାହିଁ ଜଡ଼ାତେଲ ଦୀପ ଜଳୁଛି । ହାଟ ବଜାରର ଚଉପାଢ଼ୀରେ, ସହର ବଜାର ଦେବୀଘରେ, ପୂଜା ମଣ୍ଡପରେ ଖଞ୍ଜଣି ମାଡ଼ ଚାଲିଛି । ବିଦେଶରେ ଓଡ଼ିଆଏ ନିଜ ଜନ୍ମଭୂମିକୁ ଭୁଲିଗଲେ ବି, ବେଳେ ବେଳେ ପଖାଳ ତୋରାଣିର ଆସର ଜମାଉଛନ୍ତି ।

ଏଇ ସମୟରେ ଇଲେକ୍‌ଟ୍ରନିକ ସିଟି ବେଙ୍ଗାଲୁରୁରେ ଥାଇ ଓଡ଼ିଆ ବିଲମାଳର ଘାସ ଫୁଲରେ ହସି ହସି ଗୀତ ବୋଲୁଥିବା ଲୋକ କାହାଣୀକୁ ବିନୋଦିନୀ ଦେବୀ ପୁଣି କାଗଜ କଲମରେ ଧରି ରଖିଛନ୍ତି । ଫୁଲ ମଉଳି ଯାଇପାରେ, ମଞ୍ଜି ମିଳେଇ ଯିବ କୁଆଡ଼େ? ସେ ଯେତେ ଅତ୍ୟାଚାରିତ ହେଲେ ସୁଦ୍ଧା, ସେ ମାଟି ଭିତରେ ଓ ପୁଣି ଫୁଲ ଭିତରେ । ବିନୋଦିନୀ ଦେବୀ ଜଣେ ସଫଳ, ଶୀର୍ଷ ଗୀତିକାର । ଠିକ୍ ନିର୍ଦ୍ଦିଷ୍ଟ ଶବ୍ଦ ସଂଯୋଜନା କରି କିପରି ଶ୍ରୋତା କିମ୍ବା ପାଠକର ମନକୁ କାବୁ କରି ଦିଆଯାଏ, ଏ କୌଶଳରେ ସେ ସମ୍ପୂର୍ଣ୍ଣ ସିଦ୍ଧି ଲାଭ କରିଛନ୍ତି । ଏହି କାହାଣୀମାଳା ଯଦିଓ ପିଲାମାନଙ୍କ ପାଇଁ, ତଥାପି ଏହାର ପ୍ରତିବେଦନ ବଡ଼ମାନଙ୍କୁ ଯେ ଟାଣି ଧରିବ, ତାହା ନିଃସନ୍ଦେହ । ବିନୋଦିନୀ ଯେହେତୁ ମୂଳରୁ କବି, ତାଙ୍କର ଗଦ୍ୟରେ କାବ୍ୟର ବ୍ୟଞ୍ଜନା ପରିପୁଷ୍ଟ । ଏପରି କାହାଣୀମାଳା ଓଡ଼ିଆ ଲୋକ ସାହିତ୍ୟକୁ ନିଶ୍ଚିତ ଭାବରେ ବୃଦ୍ଧିମନ୍ତ କରିବ ।

ଶେଷରେ ମୁଁ ଏତିକି କହୁଛି: ବୟସାଧିକ୍ୟ ଯୋଗୁଁ ତାଙ୍କର ସ୍ୱରଭଙ୍ଗ ଥରଥର କରୁଣାର ଗଳା ମୋ ପାଇଁ ବିଶେଷ ଆକର୍ଷଣ ।

ସେ ମୋ ପାଇଁ ଆଉ ମାଡାମ୍ କିମ୍ବା ମହାଶୟା ହୋଇ ରହି ନାହାନ୍ତି । ମୋର ମାନନୀୟା ଅପା ହୋଇ ଯାଇଛନ୍ତି । ହାୟ... ମୁଁ ଆଜି ଯାଏ କିନ୍ତୁ ତାଙ୍କୁ ଦେଖିନାହିଁ ।

**ଦେବ୍ରାଜ ଲେଙ୍କା**

କୁଶପଙ୍ଗୀ,
ବାଙ୍କୀ, କଟକ ୭୫୪୦୦୮

# ସୂଚୀ





# ଷୋଳ ସିଂହାର ରାଜା କଥା

ସେ ରାଜ୍ୟ ନାମ ଯେ ଚମ୍ପକ ପୁରୀ
ବହୁଧା ମାନେ କରୁଥାନ୍ତି କେଳି
ଲୁହାର ପାଚିରି କି ପିତଳର ଅର୍ଗଳି
ରୂପାର କବାଟକୁ ସୁବର୍ଣ୍ଣର ଜାଲି
ମୁକୁତା ଲାଗିଚି କେରି କେରି... ॥
ଆସିବାର ଘଡ଼ ଘଡ଼ି......... ଯିବାର ଚଡ଼ ଚଡ଼ି
ପିଲାଙ୍କ କାନ୍ଦଣା......... ମାଇପେଙ୍କ ରାନ୍ଧଣା
କେତେ କରିବି ସେ ରାଜ୍ୟର ବନ୍ଦନା ।
ମେଣ୍ଢା ମୁଣ୍ଡିଆ ବାଇଗଣ......... ସୁବେଦୀ ବ୍ରାହ୍ମଣ ନାଟୁଆ ମର୍କଟ
ହାତୀ ଚିତ୍ରରେଖା......... ଘୋଡ଼ା ଚାନ୍ଦି ମୁଖା
ଦୁଆର ବନ୍ଧକୁ ମାଣିକ୍ୟର ଶାଖା
କର୍ପୂର କରନ୍ତି ରେଖା ରେଖା......... ॥
ଏମନ୍ତ ନାରୀ ପିନ୍ଧିଲା ଲୁଗାରେ ପଡ଼ିଛି ଜରି
ଆଗରେ ଥୋଇଚି ସୁବର୍ଣ୍ଣ ଝରି,
ସେ ନବନୀତା, ଅତି ସୁକୁମାରୀ ରାଜଦୁହିତା
ସେ ରାଜଜେମା, ଉତ୍ତମେ ଉତ୍ତମେ...... ଅତି ଉତ୍ତମା
ଚମ୍ପକ ସୁନ୍ଦରୀ ନାମଟି ତା'ର, ରାଇଜ ଯାକର ଗଳାର ହାର ॥

(ସୁଲକ୍ଷଣା ଦେବୀ)

ସେଇ ରାଜଜେମା ଚମ୍ପକ ସୁନ୍ଦରୀ । ଭାରି ସୁନ୍ଦରୀ । ଭାରି ଅଳିଅଳି, ଭାରି ଗେଲବସରୀ, ଅତି ସେରନ୍ତିରେ ବଢୁଥାଏ । ରାଜାଘର ବୋଲି କଥା । ମାଛି ପଡ଼ିଲେ ନବଖଣ୍ଡ । ବାହାରୁ କାହାର ପ୍ରବେଶ ନିଷିଦ୍ଧ । ମାଆ ମାଉସୀ, ଧାଈ ବେହେରା, ପୋଇଲୀ ପରିବାରୀଙ୍କ କୋଳରେ ବଢୁଥାଏ । ବଡ଼ ହେଉଥାଏ । ଏମିତି ଏମିତି ଝିଅଟି ଜ୍ଞାନ ପାଇଲା । ତା'ର ନିଜର ସାଙ୍ଗ ସାଥୀ କି ସହି ସଙ୍ଗାତ କେହି ନ ଥା'ନ୍ତି ଖେଳିବାକୁ । ଖାଲି ପାଖରେ ଥାଏ ଗୋଟିଏ କୁଣ୍ଢେଇ ପେଡ଼ି । ସେଥିରେ ଜାତି ଜାତିକା ସୁନ୍ଦର ସୁନ୍ଦର କୁଣ୍ଢେଇ ସବୁ ସଜା ହୋଇ ଥାଆନ୍ତି । ଏକୁଟିଆ ଏକୁଟିଆରେ

ଜେମାମଣି ସେଇ କୁଣ୍ଢେଇମାନଙ୍କ ସାଥୀରେ ଖେଳେ। ଶୁଣିବା କଥା, ସେଇ କୁଣ୍ଢେଇ ପେଡ଼ି ଆଉ ରାଜଜେମାଙ୍କର ଗୋଟିଏ ଜନ୍ମ ବୃତ୍ତାନ୍ତ ଅଛି।

ରାଜା ଭାରି ସୁଖରେ ପ୍ରଜା ପାଳୁଥିଲେ। ସେ ରାଜ୍ୟରେ କେହି ଅସୁଖୀ ନ ଥିଲେ। ହେଲେ ରାଜା ରାଣୀ ଅତି ମନ ଦୁଃଖରେ ଦିନ କାଟୁଥିଲେ। କାହିଁକି ନାଁ ତାଙ୍କର କେହି ପିଲାଝିଲା ନ ଥିଲେ। କୋଳ ଖାଲି ଥିଲା। ରାଜା ରାଜ୍ୟରେ ବହୁ ଦେଉଳ ଅଟ୍ଟାଳୀ ତୋଳାଇଲେ, ବାଟରେ ଘାଟରେ କୂଅ ପୋଖରୀ ଖୋଳାଇଲେ। ଠା ଠାକେ ଧର୍ମଶାଳା ଚଟିଘର, ଅତିଥି ଭବନ ନିର୍ମାଣ କରାଇଲେ, ପ୍ରଜାଙ୍କ ମଙ୍ଗଳ ପାଇଁ ଯାହାଯାହା କରାଇବା କଥା ସବୁ କଲେ। ରାଣୀଙ୍କ ସହିତ ନାନା ଉପାସ ବାରବ୍ରତ କଲେ। ଦାନ ଧର୍ମ କଲେ। ଅତିଥି ଅଭ୍ୟାଗତ କଲେ। ପ୍ରଜାମାନଙ୍କର ଧନ୍ୟ ଧନ୍ୟ ପ୍ରଶଂସା। ରାଜାଙ୍କ ପାଇଁ ପ୍ରଜାମାନେ ମଧ୍ୟ ବହୁ ମାନସିକ ପୂଜାବିଧି କରୁଥାଆନ୍ତି। ଜାଗା ଜାଗାକେ ହୋମଯଜ୍ଞ, ଦେବାର୍ଚ୍ଚନା ତର୍ପଣ ସବୁ ଚାଲିଥାଏ।

ଦିନେ ରାଜଭବନକୁ ଜଣେ ମୌନୀ ବାବା ଆସିଲେ। ସୁନା ପାଟିଆ ପରି ରଙ୍ଗ। ଦୀର୍ଘ ପତଳା ଚେହେରା, ଦେହରୁ ସତେ ଅବା ଜ୍ୟୋତି ବାହାରୁଛି। ସେ କାହାରି ସାଥିରେ କଥା କହୁନାହାଁନ୍ତି। ଖାଲି ଷୋଳ ଘଡ଼ି ଭିତରେ ଘଡ଼ିକ ପାଇଁ ଯିଏ ଯାହା ପଚାରେ ସିଲଟ ଖଡିରେ ଲେଖି ଉତ୍ତର ଦିଅନ୍ତି। ରାଜବାଟୀର ଦିଅଁ ଘର ଖଞ୍ଜାରେ ସେ ରହୁଥିଲେ। ସେ କାଳେ ରାତି ଦିଘଡ଼ି ଥାଉଁ ଉଠି ନିତ୍ୟକର୍ମ ସାରନ୍ତି। ସୁରେଇଏ ପାଣି ନାକରେ ଟେଣ୍ଡି, ପାଟିରେ କାଢ଼ନ୍ତି। ପୁଣି ଚାଙ୍ଗୁଡ଼ିରେ ଚାଙ୍ଗୁଡ଼ିଏ ଫିତା ଗିଳି, ନାକ ବାଟେ କାଢ଼ି ଅନ୍ତନାଳି ଶୋଧନ କରନ୍ତି। ଏମିତି ଆହୁରି କେତେ କେତେ କ'ଣ କରନ୍ତି।

ସେଇ ମୌନୀ ବାବାଙ୍କ ପାଖରେ ରାଜାରାଣୀ ରାତି ଦିନ ଖଟି ଥାଆନ୍ତି। ଢେର ସେବା ଯତ୍ନ କରୁଥାଆନ୍ତି। ସେ ବିଦା ହେଲାବେଳେ ରାଜାରାଣୀ ପାଆଁପଡ଼ି, ଗଡ଼ଘାଲି ଶୋଇ ବିରାଟ ଗୋଟିଏ ବାଘ ଛାଲ ଦେଇ ମେଲାଣି ମାଗିଲେ। ମନେ ମନେ କ'ଣ ମାନସିକ କଲେ କେଜାଣି, ମୌନୀ ବାବା ଏଇ କୁଣ୍ଢେଇପେଡ଼ି ଦେଇ ଲେଖିଦେଲେ, "ଝିଅକୁ ଦେବ।" କୋଉ ଝିଅ... କାଇଁ ଝିଅ... କିଛି ପଚାରିବା ପୂର୍ବରୁ ସେ ପଛକୁ ଫେରି ନ ଚାହିଁ ଏକ ମୁହାଁ ହୋଇ ଚାଲିଗଲେ। ଟିକିଏ ପରେ ତାଙ୍କୁ ଆଉ କେହି ଦେଖି ନାହାଁନ୍ତି। କୁଆଡ଼େ କେଜାଣି ଉଭାନ ହୋଇଗଲେ। କିଛିଦିନ ପରେ ରାଣୀ ବୁଝି ପାରିଲେ ଯେ ତାଙ୍କର କ'ଣ ଗୋଟିଏ ହେବାକୁ ଯାଉଛି। ବହୁ ଆକାଂକ୍ଷିତ ମାଆ ହେବାର ସୌଭାଗ୍ୟ ତାଙ୍କୁ ମିଳିବାକୁ ଯାଉଛି। ଏହା ସେଇ ମୌନୀ ବାବାଙ୍କର ଅନୁଗ୍ରହ ବୋଲି ସମସ୍ତେ ବୁଝିପାରିଲେ। ରାଜ୍ୟରେ ଆନନ୍ଦ ଉତ୍ସବର ସୀମା ରହିଲାନି। ଠିକ୍ ସମୟରେ ରାଜକନ୍ୟା ଜାତ ହେଲେ।

ଏଇ ସେଇ କୁଣ୍ଢେଇ ପେଡ଼ି ଯାହା ମୌନୀ ବାବା ଦେଇ ଯାଇଥିଲେ। ଆଉ ସେଇ କୁଣ୍ଢେଇ ପେଡ଼ି ସାଥୀରେ ଜେମାମଣି ଛୁଆଟି ଦିନରୁ ଆଜି ପର୍ଯ୍ୟନ୍ତ ଖେଳି ଆସୁଛନ୍ତି। ଏକୁଟିଆ ଏକୁଟିଆରେ। ଯାହାପାଇଁ ସେ ଖେଳସାଥୀରେ ଅଭାବ ଅନୁଭବ କରିନାହାଁନ୍ତି କେବେବି, ଆଉ ଯାହା ଆଜିଯାଏ ସେଇମିତି ଅମଳିନ ହୋଇ ରହିଚି। ଜେମା ନିଇତି କୁଣ୍ଢେଇ ପେଡ଼ିଟି ଖୋଲି କୁଣ୍ଢେଇମାନଙ୍କୁ ଗାଧୋଇ ପାଧୋଇ ଧୁଆ ଲୁଗାପଟା ପିନ୍ଧାଇ ସଜକରନ୍ତି। ଭଲ ମନ୍ଦ ଖାଇବା ସବୁ ଆଣି ପେଡ଼ିରେ ଅତି ଯତ୍ନରେ ରଖନ୍ତି। କୁଣ୍ଢେଇମାନଙ୍କ ସାଥୀରେ କେତେ କ'ଣ କଥା ହୁଅନ୍ତି। କେତେ ଆଦର କରନ୍ତି, କେତେ ଗେହ୍ଲା କରନ୍ତି। ପୁଣି ସଜାଡ଼ି ପେଡ଼ିରେ ରଖି ମୁଦ ପକାଇଦେଇ କୁଣ୍ଢେଇ ପେଡ଼ିଟି ଶୋଇଲା

ଶେଯରେ ମୁଣ୍ଡପାଖେ ରଖିଦିଅନ୍ତି । ଏମିତି ଏମିତି ତାଙ୍କର ଦିନ କଟି ଯାଉଥାଏ ।

ସେ ଦିନ କ'ଣ ହେଉଚି ନାଁ ଚମ୍ପକ ସୁନ୍ଦରୀ ବଗିଚାରେ ବୁଲୁବୁଲୁ ଚାଲଚାଲ ହେଇ ଶେଷମୁଣ୍ଡଯାଏ ଚାଲିଯାଇଥା'ନ୍ତି । ଦେଖିଲେ ଫାଟକ ବାହାରେ ତା'ରି ବୟସର ଗୋଟିଏ କାଳି କୋଚଟି ଅସୁନ୍ଦରୀ ଝିଅ, ତଳକୁ ମୁହଁ ପୋତି ଠିଆ ହୋଇଛି । ଆଖିରୁ କେରା କେରା ହୋଇ ଲୁହ ବୋହିଯାଉଛି । ତା ଚାରି ପାଖରେ କେତେଗୁଡ଼ାଏ ବାଜେ ଲୋକ ଠିଆ ହୋଇ ବୋଲିବାଣୀ କରୁଛନ୍ତି । ଝିଅଟି ପାଖରେ ଠିଆ ହୋଇଥିବା ଦୁର୍ବଳିଆ ପତଳା ବଦ୍ ମିଜାଜିଆ ଫୁରଫୁର ମୁଣ୍ଡିଆ ଲୋକଟା କୁଆଡ଼େ ଝିଅଟିକୁ ବିକିବାକୁ ଆଣିଚି । ହେଲେ ଦର ପଟୁନି ।

ଏକଥା ଜେମା ଫାଟକ ଜଗିଥିବା ସିପାହୀଠାରୁ ବୁଝିଥିଲେ । ଜେମାକୁ ଦେଖି ଭିଡ଼ କରୁଥିବା ଲୋକମାନେ କିଏ କୁଆଡ଼େ ଆଡ଼ ହୋଇ ଗଲେଣି । ଜେମା କ'ଣ କଲେ ନା ହାତରୁ ହୀରା କଙ୍କଣଟି କାଢ଼ି ସିପାହୀ ହାତରେ ସେ ଲୋକ ପାଖକୁ ପଠାଇ ଦେଲେ । ସେ ଲୋକ ଆନନ୍ଦରେ କଙ୍କଣଟିକୁ କପାଳରେ ଲଗାଇ ଝିଅଟିକୁ ସିପାହୀ ହାତରେ ସମର୍ପି ଦେଇ ଜେମାମଣିଙ୍କୁ ସଲାମ ବଜେଇ ଚାଲିଗଲା ।

ଜେମା ଝିଅଟିକୁ ସାଥିରେ ଆଣି ରାଣିମା'ଙ୍କୁ କହି... ପୋଇଲି ପରିବାରିଙ୍କୁ ଲଗାଇ, ସଫାସଫି କରାଇ, ନୂଆ ଜାମାପଟା ଗହଣା ପତ୍ର ଲଗାଇ, ତାକୁ ବାଗ କରିଦେଲେ । ସବୁବେଳେ ସାଥିରେ ସଖୀପଣେ ରଖିଲେ। ଯୁଆଡ଼େ ଗଲେ ଆସିଲେ ଶୋଇଲେ ବସିଲେ ଖେଳିଲେ ବୁଲିଲେ ତାକୁ ପାଖେ ପାଖେ ରଖିଲେ । ତାକୁ ଭାରି ଭଲ ପାଇଲେ । ହେଲେ, 'ଅଳ୍ପ ଲୋକେ ଅଧିକାର, ତୁ କିମ୍ପା ଦେଲୁ ଚକ୍ରଧର' । ଚମ୍ପକ ସୁନ୍ଦରୀଟି ଯେତିକି ସରଳ ଯେତିକି କୋମଳମତି, ଚମ୍ପିଚେରୀ ସେତିକି ଚତୁରୀ... ସେତିକି କୁଚକ୍ରୀ । ରାଜକୁମାରୀର ସୁନ୍ଦର ପଣିଆ ଦେଖି ତା ମନ ଖାଲି ଟକମକ ହୋଇ ଫୁଟୁଥାଏ । ତା'ର ଶିରୀ ଦେଖିବା ଜମାରୁ ସହି ପାରୁ ନ ଥିଲା । ଭିତରେ ଭିତରେ ଜଳୁଥାଏ ଖାଲି । ଉପରେ ଉପରେ ସର ପକେଇ କଥା କହି ଜେମାଦେଇ ମନଟି କିଣି ନେଉଥାଏ ।

କହି ଜାଣିଲେ କଥା ସୁନ୍ଦର, ବାନ୍ଧି ଜାଣିଲେ ମଥା ସୁନ୍ଦର। ବିଚାରୀ ଜେମାଟି କିଛି ବୁଝିପାରେ ନାହିଁ । 'ଛନ୍ଦ ନଜାଣେ ନନ୍ଦରାଣୀ ପୁତନା କୋଳେ ପୁତ୍ର ଦେଲା ଆଣି।' ଏମିତି ଦିନ ଗଡ଼ି ଚାଲିଥାଏ । ରାଜକୁମାରୀ ଚମ୍ପକ ସୁନ୍ଦରୀର କେତେ କୁଆଡ଼ୁ ବିଭାଘର ପ୍ରସ୍ତାବ ଆସୁଥାଏ । ଶେଷରେ ସର୍ବଗୁଣସମ୍ପନ୍ନ ଅପୂର୍ବ ସୁନ୍ଦରୀ ରାଜଜେମା ଲାଖି ବରଟିଏ ଠିକଣା ହେଲା ।

ଷୋଳ ସିଂହାର ରାଜ୍ୟ ରାଜାଙ୍କର ଦେହାନ୍ତ ପରେ ଦେବୀପ୍ରସନ୍ନଙ୍କର ନୂଆନୂଆ ଅଭିଷେକ ହୋଇଥାଏ । ତାଙ୍କ ନାମକରଣର ମଧ୍ୟ ଗୋଟିଏ ଇତିହାସ ଅଛି । ବୁଢ଼ା ରାଜାଙ୍କର ବହୁତ ଆଶା ନାତିଟିଏ କୋଳରେ ଖେଳାନ୍ତେ । ବହୁଦିନ ଅପେକ୍ଷା କଲାପରେ ମଧ୍ୟ ତାଙ୍କର ସେ ଆଶା ଫଳବତୀ ହୋଇପାରି ନ ଥାଏ । ଆଗରୁ ଦୁଇଟି ନାତୁଣୀ ହୋଇଥାଆନ୍ତି । ଶେଷରେ ଇଷ୍ଟଦେବୀ ମାଆ ଦୁର୍ଗାଙ୍କର ସୁଦୟା ହେଲା । ଦିନେ ରାତି ପାହାନ୍ତିରେ ଠାକୁରାଣୀ ନିଜେ ଆସି ତାଙ୍କୁ ଉଠାଇଲେ । କହିଲେ, "ଆରେ ଶୋଇଚୁ କ'ଣ, ତୋର ପରା ନାତି ହେଲାଣି ।"

ବୁଢ଼ାରାଜା ଧଡ଼ପଡ଼ ହୋଇ ଉଠିବସିଲେ । କାଇଁ କେହିତ କୁଆଡ଼େ ନାହାନ୍ତି । କିଏ ଏମିତି କହିଲା ପରି ଲାଗିଲା? ଓହୋଃ ସବୁବେଳେ ସେଇ କଥା ମନରେ ଅଛିତ। ସେଥିପାଇଁ ତାଙ୍କୁ

ସେମିତି ଲାଗିଲା ବୋଧହୁଏ। ନିଦ ମଳମଳ ଆଖିରେ ବୁଢ଼ାରାଜା ମାଆଙ୍କ ଉଦ୍ଦେଶ୍ୟ ପ୍ରଣାମ ଜଣାଇଲେ। ଚଉଁରୀ ପଟରୁ କ'ଣ ଏତେ ଗହଳ ଚହଳ ଶୁଭୁଚି? ଶଙ୍ଖ ବାଜୁଛି ହୁଳହୁଳୀ ପଡୁଛି। ଘର ଖାଲି ଉଚ୍ଛୁଳୁଛି ଆନନ୍ଦ କୋଳାହଳରେ।

ବୁଢ଼ାରାଜା ଧାଇଁ ପଡ଼ି ଦେଖିଲେ, ପରା ଉପରେ ସତେ ଅବା ଚାନ୍ଦଟିଏ ଖସି ପଡ଼ିଛି। ଅତି ଖୁସିରେ ଜାମାଟିକୁ ଛାତିରୁ ଚିରିଦେଇ ବାନା ଉଡ଼େଇଲା ପରି କରି, ଶ୍ୱେତ ହାତୀରେ ବସି, ରାଜ୍ୟରେ ଶୁଭ ଖବରର ଡେଙ୍ଗୁରା ପିଟାଇବାକୁ କହି, ତାଙ୍କ ସାଙ୍ଗ ରାଜାଙ୍କୁ ଖବର ଦେବାକୁ ଚାଲିଲେ। ଦେବୀଙ୍କ ପ୍ରସନ୍ନରୁ ନାତିର ଜନ୍ମ ହୋଇଥିବାରୁ ନାଁ ଦେଲେ ଦେବୀପ୍ରସନ୍ନ।

ସେଇ ଦେବୀପ୍ରସନ୍ନଙ୍କ ସହିତ ଚମ୍ପକ ସୁନ୍ଦରୀର ବିଭାଘର ଠିକଣା ହୋଇଗଲା। ରାଜ୍ୟର ପରମ୍ପରା ଅନୁସାରେ ଷୋଳ ସିଂହାର ହୋଇ ତରୁଣ ରାଜାଟି ଯେତେବେଳେ ଦରବାରରେ ବିଜେ କରନ୍ତି ପ୍ରଜାମାନଙ୍କର ମନ ଆନନ୍ଦରେ ପୂରି ଉଠେ। ସେମାନେ ପ୍ରାଣଭରି ଛୋଟ ରାଜାଟିକୁ ଭଲ ପାଆନ୍ତି। କୋମଳମତି ରାଜାଟି ପାଇଁ ଗୁଣମୁଗ୍ଧ ପ୍ରଜାମାନଙ୍କର ସର୍ବତ୍ର ଜୟଜୟକାର। ସେଇ ସୁକୁମାର ରାଜା ସହିତ ସୁକୁମାରୀ ଚମ୍ପକ ସୁନ୍ଦରୀର ବିଭାଘର। ଆଲୁଅ ରୋଷଣୀରେ ବାଣବାଜା ଚହଚହ ମହମହରେ ବର ଅସିଲା। ସାରା ରାଜ୍ୟରେ ପ୍ରତି ଘରେ ଘରେ ସାଜ ସଜାରେ ତାଠୁଁ ବଳି ସିଏ, ତାଠୁଁ ବଳି ସିଏ। ଶଙ୍ଖ ହୁଳହୁଳୀ ବାଜା ବାଜଣାରେ, ଫୁଲ ଝାଡ଼ରେ ପୃଥ୍ୱୀ କମ୍ପୁଛି। ମର୍କତ ବେଦୀର ସଜା କ'ଣ ବା କହିବି। ପାନରେ ଛାମୁଣ୍ଡିଆ ହୋଇଛି। ସୁବର୍ଣ୍ଣ କଳସ ମାନ ଧାଡ଼ି ଧାଡ଼ି ହୋଇ ତା ଉପରେ ଉପରେ ରଖାଯାଇଛି। ମାଣିକ୍ୟର ରୁଖା ଉପରେ ସାତଦୀପ ଜଳୁଛି। ଯୋଡ଼ି ନାଗରା ତୁରୀ ମହୁରୀ ବାଜି ଚାଲିଛି। ନାନା ଅଳଙ୍କାର ବିଚିତ୍ର ଶାଢ଼ୀରେ ରୂପବତୀ ପୁରସ୍ତ୍ରୀମାନେ କଉତୁକ ହେଉଛନ୍ତି। ପୁରଧାମାନଙ୍କର ବିଭା ମନ୍ତ୍ର ଉଚ୍ଚାରଣରେ ଚଉଦିଗ ଗହଗହ ହେଉଛି।

ହସ୍ତଗଣ୍ଠି ବେଳ ଆସିଗଲା। ଚମ୍ପକ ସୁନ୍ଦରୀର ହାତଟିକୁ ଚର୍ଚ୍ଚା ବେହେରାଣୀ ବାହାରକୁ ଆଣିଲା; ଓଢ଼ଣୀ ଭିତରୁ ହାତଟିକୁ ସ୍ପର୍ଶ ମାତ୍ରକେ ରାଜାପୁଅର ମନ ପୁଲ୍କକିତ ହୋଇ ଉଠିଲା। ଏତେ ସୁନ୍ଦର ପଦ୍ମ ପାଖୁଡ଼ା ପରି କୋମଳ ହାତ ପାପୁଲିଟି। ଚମ୍ପାକଢ଼ି ପରି ହାତର ଆଙ୍ଗୁଳିଗୁଡ଼ିକ। ହାତରେ ଲାଗିଥିବା ରତ୍ନ ଅଳଙ୍କାରଗୁଡ଼ିକ ସେଇ ସୁନ୍ଦର ହାତଟିରେ ଲାଗି ନିଜର ଶୋଭା ବଢ଼ଉଛନ୍ତି ସିନା। ଲହୁଣୀ ପରି କୋମଳ ହାତ ସହିତ ରାଜାପୁଅର ଅନୁପମ ହାତଟି ସୁବର୍ଣ୍ଣ କଳସ ଉପରେ ରଖାହୋଇ ବନ୍ଧା ହୋଇଗଲା। ଦୁହିଁଙ୍କର ଦେହ ଦେଖିପାରୁ ନ ଥିଲେ। କେବଳ ହାତ ଦୁଇଟି ପାଦ ଦୁଇଟି ବ୍ୟତୀତ। କାରଣ ଆଜିକାଲି ପରି ସେତେବେଳେ ମୁହଁଖୋଲା ବିଭାଘର ହଉ ନ ଥିଲା ସେତେବେଳେ ଓଢ଼ଣା ନାକ ସରିକି ନୁହେଁ ପାଆ ସରିକି ପଡୁଥିଲା, ତେଣୁ ବରକନ୍ୟା କେହି କାହାରିକୁ ଦେଖିବା ସମ୍ଭବ ହେଉ ନ ଥିଲା।

ଏମିତିରେ ବାହାଘର ସରିଗଲା। ବରଟିକୁ ଦେଖିବାକୁ ତା ବିଷୟରେ କିଛି ଜାଣିବାକୁ ଚମ୍ପକ ସୁନ୍ଦରୀର ମନ ଭାରି ଉଚ୍ଚାଟ ହେଉଥିଲା – କାହା କାହା କଥାରୁ ରାଜା ବିଷୟରେ ଯେତେସବୁ ଖବର କାନକୁ ଆସୁଥିଲା ସେଥିରେ ତା ମନର ଆତୁରତା ଆହୁରି ବଢ଼ିଯାଉଥିଲା। ବିଦା ବିଦି ବେଳ ଆସି ପାଇଲାଣି। ଚମ୍ପିଚେରୀଟା କାହିଁକି ପାଖମାଡୁନି। ଏତିକି ବେଳେ ଚମ୍ପିଚେରୀ ତରତରିଆରେ ସେଇବାଟ ଦେଇ ଚାଲିଯାଉଥିଲା। ଚମ୍ପକ ସୁନ୍ଦରୀ ତା କାନି ଟାଣି, ତାକୁ ଅଟକେଇ, ନିରୋଳାକୁ

ନେଇ ବର କଥା ପଚାରିଲା । ଦେଖିବାକୁ କେମିତି ଆଉ କଅଣ କଅଣ ସବୁ ଖବର । ଚମ୍ପିଚେରୀ ଭାଉ କିନା କାନ୍ଦି ଉଠିଲା । ଚମ୍ପକ ସୁନ୍ଦରୀକୁ କୁଣ୍ଢେଇ ପକାଇ ଆଉଁସି ପାଉଁସି ଧକେଇ ଧକେଇ କହିଲା, "ସେ କଥା ମତେ ପଚାରିବ ବୋଲି ମୁଁ ସେଇଥିପାଇଁ ଏଠିକି ଆସୁନଥିଲି । ମୋ ତାରପରା ଜେମା ସାଆନ୍ତଙ୍କୁ ଏମିତି କ'ଣ କଲେ ଲୋ? ତୁମକୁ ଭସେଇ ଦେଲେ ଲୋ ଜେମାଦେଇ । କୋଉ ଜନ୍ମର ଶତ୍ରୁତା ଲୋ କେଜାଣି ।" ଚମ୍ପକ ସୁନ୍ଦରୀ ତ ତାଟକା ହୋଇ ରହିଗଲା, ପାଦତଳରୁ ଭୂଇଁ ଯେମିତି କୁଆଡ଼େ ଖସି ଯାଉଛି । ପଡ଼ି ଯିବକି? ସେ କାଠ ପାଲିଟି ଗଲା, ପାଟିରୁ କଥା ବାହାରିଲାନି । କାଟିଲେ ରକ୍ତ ବାହାରିବନି ।

ସେଇଠୁ ଚମ୍ପିଚେରୀ ଆରମ୍ଭ କଲା, "ସେଇ ଯୋଉ ଷୋଳ ସିଂହାର ରାଜା, ତା ମୁଣ୍ଡରେ ଷୋଳଟା ଶିଙ୍ଘ । କେଜାଣି ଗୋଟିଏ ଯୋଡ଼ିଏ ଶିଙ୍ଘ ଭଲ ହେଇଥିବ ପରା । ଆଉ ସବୁ ଭଙ୍ଗା ଦରଭଙ୍ଗା । କୋଉଥିରୁ ରକତ ବୋହି ଯାଉଚି, କୋଉଥିରେ ପୂଜ ଭଡ଼ ଭଡ଼ କରୁଚି । କୋଉଥିରେ ପୋକ ସାଲୁବାଲୁ ହଉଚି ତ କୋଉଥିରେ ମାଛି ଭଣଭଣ ହଉଚି । ଅଃ ଥୁଃ ଥୁଃ । କୋଉଥିରେ ଛିଣ୍ଡା କନା ଗୁଡ଼ା ହୋଇଚି । କେଉଁଥିରେ ଅଡୁଆ ବାଳ ଗୁଡ଼ା ହୋଇଚି । ମୋ ସୁନାନାକୀ ଜେମା ଦେଇଲୋ । ତମେ କେମିତି ସେଇ ନାସନା... ଅସନା ରାଜା ପାଖରେ ରହିବ । ମତେ କ'ଣ କଲା ଲୋ ମୁଁ କ'ଣ କରିବିଟି । ଆଉ ଜୀଇଁବିନି । ଜୀବନ ହରେଇ ଦେବି, ତୁମ ଦୁଃଖ ମୁଁ ଆଖିରେ ଦେଖି ପାରିବିନି ।" ଏମିତି କହି ଭୂଇଁ ସାଉଁଟି, ରଡ଼ିକରି ତଳେ ଗଡ଼ିଲା ।

ଚମ୍ପକ ସୁନ୍ଦରୀ କ'ଣ କରିବ? ତାକୁ ଚତୁର୍ଦିଗ ତ ଅନ୍ଧାର ଦେଖାଗଲା, ଶୂନ୍ୟ ଦେଖାଗଲା, ମୁଣ୍ଡକୁ ତେନ୍ତୁଳିଆ ବିଛା କାମୁଡ଼ିଲା ପରି ଲାଗିଲା । କ'ଣ ସେ କରିବ ଏବେ । କିଛି କଲେ କୁଳ କୁଟୁମ୍ବକୁ ଲାଜ । କିଛି ନ କଲେ ସେ ଅପରିଷ୍କାର ଷୋଳ ସିଂହାର ରାଜା ସହିତ ବଞ୍ଚି ପାରିବ ନାହିଁ । ସେ ଗୋଟିଏ ବୁଦ୍ଧି ପାଞ୍ଚିଲା । କରମକୁ ଆଦରି ସେ ସବୁ ସହିଯିବ । ଯାହା ଅଦୃଷ୍ଟରେ ଅଛି, ତାକୁ କିଏ ଆନ କରିବ । ସେ ଚମ୍ପିଚେରୀକୁ ତଳୁ ଉଠେଇଲା । ତାକୁ ତୁନି କଲା । ତା ହାତଧରି କହିଲା, "ହୀରା କଙ୍କଣ ହାତରୁ ଦେଇ ମୁଁ ତୋତେ ଆଣିଚି ନାଁ ? ତତେ ଅନେକ ଯତ୍ନ କରିଚି । ଏ ବିପଦ ବେଳେ ତୁ ଯଦି ସାହା ନ ହେବୁ ତା ହେଲେ ତୁ ଧର୍ମ ଦୋରେହା ହେବୁ । ମୋ ପାଟଶାଢ଼ୀ ଅଳଙ୍କାର ପତ୍ର ଲଗେଇ ତୁ ଷୋଳ ସିଂହାର ରାଜା ସଙ୍ଗେ ଯିବୁ । ଆଉ ତୋ ସାଜ ଶାଢ଼ୀ ବଦଳେଇ ମୁଁ ତୋ ସଙ୍ଗେ ଯିବି । ଏକଥା ତୋ ମୋ ଛଡ଼ା ଆଉ କେହି ଜାଣିବେନି । ନଈ ପାଣି ନଈରେ ଯିବ, ପିତୃଲୋକ ସନ୍ତୋଷ, ବୁଝିଲୁ ?"

ଚମ୍ପିଚେରୀ ତ ସେଇଆ ଚାହୁଁଥିଲା । ଛଳନାରେ ହାତେ ଲମ୍ବାର ଜିଭକାଢ଼ି କହିଲା, "ମତେ କ'ଣ କହୁଚ ଜେମାଦେଇ । ମୁଁ ଏତେ କାମ କେମିତି ତୁଲେଇ ପାରିବି? ମୁଁ ଛାର ପୋଇଲିଟା । ମତେ ପାତକ ଲାଗିବନି । ହେଲେ ହଉ । ମତେ ଯେତେବେଳେ ହାତରୁ କଙ୍କଣ ଦେଇ କିଣିଚ, ତମ ବୋଲ ନ ମାନିଲେ ଅହିନର୍କରେ ପଡ଼ିବି । ଯାହା କହିବ କରିବାକୁ ବାଧ୍ୟ । ଆମେ ଖାଲି ବେଶ ବଦଳେଇ ବସିବା, ତମ ପାଦତ ମୋ ମୁଣ୍ଡ ଉପରେ । ହେଲେ ଜେମା ଦେଈ, ତମେ ଜମାରୁ ଜୋଇଁ ମଣିମାଙ୍କ ଆଗକୁ ଆସିବନି କି କାହାରି ଆଗକୁ ଆସିବନିଟି । କଥା ପଦାକୁ ଆସିଲେ ମୋ ମୁଣ୍ଡ କାଟ ହୋଇଯିବ ।"

ତାପରେ ଚାହୁଁ ଚାହୁଁ ବେଶ ବଦଳା ହୋଇଗଲା । ଚମ୍ପିଚେରୀ ରାଜାଙ୍କ ଆଗେ ଆଗେ ହାନ୍ଦୋଳାରେ ବିଜେ କଲା । ଆଉ ଚମ୍ପକ ସୁନ୍ଦରୀ ସାଧାରଣ ସବାରୀରେ । ଆନନ୍ଦ କୋଳାହଳ ହୋ ହା ଧୋ ଧା ବାଣ ରୋଷଣୀ ଆନନ୍ଦ ଉଲ୍ଲାସରେ ବରଯାତ୍ରୀ ଦଳ ଲେଉଟାଣୀରେ ଆଗକୁ ଆଗକୁ ଆଗେଇଲେ ଗଡ଼ ଜିଣିଲାପରି । ଚମ୍ପିଚେରୀର ଖୁସି ଘର ଧରୁନି । ଜୀବନରେ ସେ କେବେ କଳ୍ପନା କରିନ ଥିଲା ଏତେ ବିଭବ କେତେ ଅୟସ କେତେ ଆରାମ। ଷୋଳସିଂହାର ରାଜାଘର, ଏମିତି କନ୍ଦର୍ପ ସୁନ୍ଦରବର । ରାଜା ତାଙ୍କୁ ଦେଖି କ'ଣ କହିବେ? ହଉ ଯାହାହେଉ ଦେଖାଯିବ । କେତେ ବୁଦ୍ଧିରେ ସେ ଏତେ ବାଟଯାଏଁ ଆସିପାରିଛି । ଆଗକଥା ଭାବିଲାବେଳକୁ ତା ମୁଣ୍ଡ ବୁଲେଇ ଯାଉଛି ।

ତେଣେ ଚମ୍ପକ ସୁନ୍ଦରୀର ମଧ ମୁଣ୍ଡ ବୁଲେଇ ଯାଉଚି ସବାରୀ ଫାଙ୍କରେ ଷୋଳ ସିଂହାର ରାଜାଙ୍କୁ ଦେଖି । ତା ଆଖି ଲାଖି ରହିଗଲା । ଇଏ କ'ଣ ? ଚମ୍ପିଚେରୀ ତାକୁ ଏମିତି ଠକେଇଦେଲା ? ତା ମନରେ ଯେ ଏତେ କଥା ଥିଲା ସେ ଜାଣି ପାରିଲାନି କେମିତି? କେମିତି ସେ ତାଙ୍କୁ ପରତେ ଗଲା ? କିଏ ଜାଣିଥିଲା ସେ ଏମିତି ବିଶ୍ୱାସରେ ବିଷ ବୋଳିଦେଇଚି ବୋଲି । ଏବେ ସେ କ'ଣ କରିବ ? ଗୁଡ଼ ତ କହୁଣୀକୁ ବୋହି ସାରିଲାଣି । ହେ ଭଗବାନ ତମେ ହିଁ ରକ୍ଷାକର । ସେ ସବୁ ଭୁଲି ଷୋଳ ସିଂହାର ରାଜାକୁ ଚାହିଁ ରହିଲା, ତା ଆଖିରେ ପଲକ ପଡୁନାହିଁ। ରାଜାର ସୁନ୍ଦର ପଣିଆ, ମାଧୁର୍ଯ୍ୟ, ଗାମ୍ଭୀର୍ଯ୍ୟ ସେ କେବଳ ଦେଖୁଚି ଆଉ ଦେଖୁଚି ।

ପରେ ବୋହୂ ମହାରାଣୀଙ୍କୁ ବନ୍ଦାପନା କରି ଉଆସକୁ ନିଆଗଲା । ସେ ରାଜ୍ୟର ପରମ୍ପରା ଅନୁସାରେ ସାତଦିନ ଯାଏ କେହି ନୂଆବୋହୂର ମୁହଁ ଦେଖିବେନି, କେବଳ ବର ଛଡ଼ା । ଝିଅ ସହିତ ଆସିଥିବା ଧାଈ ପୋଇଲି ଯାହା ଦରକାର ସବୁ କହିବ। ବାହାରେ ଆଉ ଯିଏ ଯାହା ଯୋଗାଇଦେବେ ।

ଚମ୍ପିଚେରୀ ଘର ଭିତରକୁ ଆସି ଚମକି ପଡ଼ିଲା । ଏଇ କ'ଣ ଘର ? ଇଏତ ଚନ୍ଦନ ଉଆସ । ହୀରା ନୀଳା ମୋତି ମାଣିକ ଅଷ୍ଟରତ୍ନରେ ସଜା ହାତୀ ଦାନ୍ତର ପଲଙ୍କ । ସେଇ ଅନୁରୂପ ଘରର ଅନ୍ୟ ସବୁ ସାମଗ୍ରୀ। ସେସବୁ ଜିନିଷର ମାଲିକାଣୀ ସେ ନିଜେ। ଗର୍ବରେ ତା ଛାତି ଫାଟି ଯାଉଚି। ତା ସାଥୀରେ ଘର ଭିତରକୁ ମଧ ଚମ୍ପକ ସୁନ୍ଦରୀ ଆସି ପାଷାଣ ପ୍ରତିମା ପରି ଆଗରେ ଠିଆ ହୋଇଚି। ତାକୁ ଦେଖି ତା ଦିହ ଜଳିଗଲା । ତା କାନ୍ଧ ଧରି, ଝିଙ୍କି ଝିଙ୍କି କହିଲା, "ହେ ଟୋକୀ ଏବେ ଶୁଣ। ତୋ ସୁନ୍ଦର ପଣିଆ ଚୁଲିକି ଯାଉ, ତୋ ଶିକ୍ଷାଦିକ୍ଷା ନିଆଁକୁ ଯାଉ । ଖବରଦାର କହୁଚି । ଏତେ ଦିନ ରାଜଜେମା ହୋଇ ଯାହା ଅୟସ କରିଗଲୁ ଗଲୁ, ଏଣିକି ତୁ ମୋ ପୋଇଲି । କାହାକୁ ମୁହଁ ଦେଖେଇବୁ କି କାହା ସାଙ୍ଗରେ କଥା ହେବୁ ତେବେ ମତେ ଚିହ୍ନିବୁ । ଦେଖିବୁ କ'ଣ ତୋର ଗତି । ବୁଦ୍ଧି ବଳରେ ମୁଁ ଏତେ ବାଟଯାଏ ଆସିଚି । ତୋ ପରି ନିର୍ବୁଦ୍ଧିଆଣୀ ରାଜାରାଣୀ ହେବାକୁ ଯୋଗ୍ୟ ନୁହେଁ ।"

ଚମ୍ପକ ସୁନ୍ଦରୀଟି ଏବେ କ'ଣ କରିବ ? ଆପଣା ହସ୍ତେ ଜିହ୍ୱାଛେଦି, କେ ଅଛି ତା'ର ପ୍ରତିବାଦୀ । ସେ ଖାଲି ତା ମୁହଁକୁ ଚାହିଁ ରହିଲା । ଆଖିରୁ ଧାର ଧାର ଲୁହ ବୋହି ଯାଉଥିଲା । ପାଟିରୁ ବଚନ ସ୍ଫୁରୁ ନ ଥିଲା । ଏହି ସମୟରେ ବାହାରୁ ମଙ୍ଗଳାଷ୍ଟକ ସହିତ ଶଙ୍ଖ ହୁଳହୁଳି ଶୁଣାଗଲା । ଚାପା ହସ, ଚୁଡ଼ି ନୁପୁର ଅଳଙ୍କାରମାନଙ୍କର ଝୁଣୁ ଝୁଣୁ ଆବାଜ ଶୁଣାଯାଉଛି । କିଏ କହିଲା ଷୋଳସିଂହାର ରାଜା ଏବେ ବିଜେ କରୁଚନ୍ତି ।

ତରବରରେ ଚମ୍ପିଚେରୀ ଚମ୍ପକ ସୁନ୍ଦରୀକୁ ଧମକା ଧମକି ସାବଧାନ କରି ଗମ୍ଭୀର ଘର ଭିତରେ ଲୁଚାଇ ଦେଲା । ରାଜାଘର ଭିତରକୁ ଆସି ଆରାମରେ ବସି ନୂଆବୋହୂର ମଙ୍ଗଳ କୁଶଳ ପଚାରିବେ କ'ଣ ଚମ୍ପିଚେରୀ ଧାଇଁ ଆସି ରଡ଼ି ପକେଇ ତାଙ୍କ ହାତଧରି ପକେଇ କହିଲା, "ମୋର ଇଏ କ'ଣ ହେଲା ମଣିମା? ମୁଁ କେଡ଼େ ସୁନ୍ଦରୀ ଆଗରୁ ଶୁଣିଚ ତ, ଜାଣିଚ ତ । ଏବେ ତୁମ ହାତ ସାଙ୍ଗରେ ହାତଗଣ୍ଠି ପଡ଼ିବାରୁ ମୋ ରୂପ କିମିତି ବେରୂପ ହୋଇଗଲା । ମୁଁ ଏବେ କ'ଣ କରିବି? କୁଆଡ଼େ ଯିବି, କାହାକୁ ମୁହଁ ଦେଖେଇବି ଟି ।" ଏମିତି କହି କାନ୍ଦିକାନ୍ଦି ଗଡ଼ିଯାଉଥାଏ ।

ରାଜା ତା'ର ସେ କାଳି କୋଚଟି ମୁହଁ ଦେଖି ତା ଭୈରବୀ ବୋବାଳି ଶୁଣି ଦଣ୍ଡେ ଅବାକ୍ ହୋଇ ଠିଆହୋଇ ରହିଲେ । ତା ପରେ ଆଉ ପଛକୁ ମୁହଁ ନ ଫେରେଇ ଘରୁ ବାହାରକୁ ଚାଲିଗଲେ । ଚାଲିଗଲେ ତ ଚାଲିଗଲେ । ଆଉ ଦିନେ ବି ସେ ଦୁଆର ବନ୍ଧ ମାଡ଼ି ନାହାଁନ୍ତି । ସେ ଯାଇ ଅଲଗା ଦିଅଁଘର ଖଞ୍ଜାରେ ରହିଲେ । ତାଙ୍କ ମନରେ ସବୁ ସରାଗ, ସମସ୍ତ ସରସତା, ସମସ୍ତ ସ୍ୱପ୍ନ, ପାଣି ଫୋଟକା ପରି କୁଆଡ଼େ ମିଳେଇଗଲା । ଇଷ୍ଟଦେବଙ୍କ ଆସ୍ଥାନ ତଳେ ବସି ରହିଥାନ୍ତି ।

ଏଣେ ଚମ୍ପିଚେରୀ ମହାଖୁସି । ଯାହାହେଉ ବୁଦ୍ଧିକରି ଆସନ୍ନ ବିପଦକୁ ଟଳେଇ ଦେଇ ପାରିଚି ବୋଲି ନିଜକୁ ବାରମ୍ବାର ସାବାସ୍ ଦେଉଚି । ବାଃ ବାଃ ଦେଉଚି । ଚମ୍ପକ ସୁନ୍ଦରୀ ଉପରେ ତା'ର ବଡ଼ ରାଗ । ଏତେ ସୁନ୍ଦରୀ କାହିଁକି ହୋଇଚି? ତାକୁ ସବୁବେଳେ ଖଟଉଛି । ଦିନରେ ପା'ଥର ଶେଯ ଉଠାଉଚି ପକାଉଛି । ଘର ଓଳିଆଓଳି କରଉଚି, ପୋଛାଉଚି । ହାତେ ତଳକୁ ଦବି ଯାଉଥିବା କଅଁଳ ଧୋବ ଫରଫର ଶେଯ ଉପରେ ଶୋଇ ରହି ଦିନକୁ ସତର ଥର ଗୋଡ଼ ମୋଡ଼ାଉଚି । ତାକୁ ଯେତେ କଷ୍ଟ ଦିଆଯାଇପାରେ ଦଉଛି । ତଥାପି ତା ମନ ପୂରୁନି । ଇଆଡ୍ରୁ ସିଆଡ୍ରୁ କହି ଉଠୁଣୁ ବସୁଣୁ ଗାଳିଦେଉଛି ।

ମହାରାଣୀଙ୍କ ପାଇଁ ଖାଇବାକୁ ଆସିଲା ଏବେ ବଢ଼ିଆ ଜିନିଷ । ଖାଇବା ଦୂରେଥାଉ ସେ କେବେ ଦେଖି ନ ଥିଲା କି ଶୁଣି ନ ଥିଲା । ଗାଉଁ ଗାଉଁ କରି ଖାଇ ପକାଇଲା । ଚମ୍ପକ ସୁନ୍ଦରୀ ପାଇଁ ଖାଲି ଭାତ ଆଉ କଲରା ଭଜା । ଖାଇସାରିଲା ପରେ ବିଲେଇ ପାଇଁ ଛାଡ଼ିଗଲା ପରି ଟିକିଏ ଛାଡ଼ି ଦେଇ କହିଲା, "ଏ ଟୋକୀ ସେଠି ତୋ ପାଇଁ ବଢ଼ାହୋଇ ଥୁଆହୋଇଛି । ସବୁ ଖାଇଦେଇ ବାସନ ମାଜି ଆଣିବୁ । ଦିନ ଗଡ଼ିଲେ ଯାଇ ଯିବୁ । ଖବରଦାର ତୋତେ ଯେମିତି କେହି ନ ଦେଖନ୍ତି ।"

ଚମ୍ପକ ସୁନ୍ଦରୀ ନୀରବରେ ଥାଳି ଉଠାଇନେଲା । ଆହା ନିରିମାଖୀ ରାଜଜେମାଟି ତ ତାଟକା ହୋଇଯାଇଚି । ତା ମୁଁହରୁ ବାକ୍ୟ ସୁଝୁନି । ମୂକ ପାଲଟି ଯାଇଚି ସତେ ଅବା । ସଞ୍ଜ ଢଳିଗଲା । ଚମ୍ପକ ସୁନ୍ଦରୀ ପଛପାଖ ପଦ୍ମ ପୋଖରୀ ଆଡ଼କୁ ଅଇଁଠା ଥାଳିବାସନ ଧରି ଚାଲିଚି । ଯିଏ ଛାଇକି ଦେଖି ଡରୁଥିଲା ସିଏ ଆଜି ଏକାକିନୀ ନିଛାଟିଆରେ । ତା ପାଦ ନୂପୁରରେ ଝୁଣୁଝୁଣୁ ଶୁଭାଯାଉନି । ଚମ୍ପିଚେରୀ ତା'ର ସବୁ ଅଳଙ୍କାର ଉତାରି ଦେଇଛି । ବାପାକୁ ଦୋଷ ବୋଲି ସେ ନିଜେ ଖଣ୍ଡେ ଖଣ୍ଡେ ଧଡ଼ି ଗୁଡ଼େଇ ଦେଇଚି । ଯାହାକୁ ଲକ୍ଷେ ପୋଇଲୀ ପରିବାର ଖଟୁଥିଲେ ସେ ପୁଣି ଆଜି ଆପଣା ଚାକରାଣୀର ଅଇଁଠା ବାସନ ମାଜିବାକୁ ଯାଉଚି । ହେ ଭଗବାନ ଚମ୍ପକ ସୁନ୍ଦରୀର ଇଏ କି ବିଡମ୍ବିତ ଭାଗ୍ୟ । ଏଇ କଥା ଭାବି ଭାବି ଚାଲିଚି ଅଲିଅଳୀ ରାଜଦୁଲଣୀ । ସାଥିରେ ତାର ପିଲାଦିନର ସାଥି କୁଣ୍ଢେଇପେଡ଼ିଟି ।

ପଦ୍ମପୋଖରୀ ଚାନ୍ଦିନୀରେ ସେ ବାସନ ରଖିଦେଲା। ସେଇଠି ଭରା ଦେଇ ବସିପଡ଼ିଲା, ଚାରି ଆଡ଼କୁ ଶୂନ୍ୟ ଆଖିରେ ଚାହିଁଲା । ତାକୁ ଆଜି ଆଉ କିଛି ଡର ମାଡୁନାହିଁ । ତା ଆଖିରୁ ଆଉ ଲୁହ ଆସୁନାହିଁ । ଲୁହ ସବୁ ବୋହି ବୋହି ଶୁଖି ଯାଇଚି ବୋଧେ। ଆଖି ତୋଳି ଆକାଶକୁ ଚାହିଁଲା – ବିସ୍ତୃତ ନୀଳ ଆକାଶ ଚାନ୍ଦୁଆ ପରି ଟଣା ହୋଇଚି, ଆଖି ପାଉନି। ଫୁଲ ପଡ଼ିଲା ପରି ଗୋଟିଏ ଗୋଟିଏ ତାରା କେଉଁଠି କେମିତି ଉଙ୍କି ମାରୁଚି । ଚମ୍ପକ ସୁନ୍ଦରୀ ଦୀର୍ଘନିଶ୍ୱାସଟିଏ ମାରି କୁଣ୍ଢେଇପେଡ଼ିଟି ଖୋଲିଦେଇ ସବୁ କଣ୍ଢେଇକୁ ଥରେ ଥରେ ଚାହିଁଲା । ଏଥର ଆଉ ଆଖିର ଲୁହ ବାଧାମାନୁନି । ଡବ ଡବ ହୋଇ ଡବାଳି ପଡ଼ିଲା ସବୁ । କୁଣ୍ଢେଇମାନଙ୍କୁ ଆଉଁସିଲା; ଏଥର ପାଟିରୁ କଥା ବାହାରିଲା, "ହାତରୁ କଙ୍କଣ ଦେଇ କିଣିଲି ପୋଇଲୀ, ସେ ହେଲା ସାଆନ୍ତାଣୀ ମୁଁ ହେଲି ପୋଇଲୀ, ଲୋ କୁଣ୍ଢେଇପେଡ଼ି ।" ତାପରେ ଥାଳିକ ଭାତ, ଆଉ ସବୁ ସେଇଠି ଗଦେଇ ଦେଇ କହିଲା, "ଛିଃ ଛିଃ କାଉ... ଚମ୍ପିଚେରୀ ହାତରେ କି ଚମ୍ପକ ସୁନ୍ଦରୀ ଖାଉ? କାଉ କୁକୁର କେହିନଖାଉ, ସେତୁ ବନ୍ଧ ପଡ଼ିଥାଉ ।" ତାପରେ ତା'ର କ'ଣ ହେଲା କେଜାଣି – ତା ଆଖି ଭାରୀ ହୋଇ ଆସିଲା । ସାତ ରାତିର ନିଦ ଯେମିତି ତା ଆଖିରେ ଭରିଗଲା । ଇଚ୍ଛା କରି ମଧ୍ୟ ସେ ଆଖିପତା ଖୋଲିପାରିଲାନି । ଛିନ୍ନମୂଳ ଲତାଟି ପରି ସେ ସେଇଠି ସେଇ ଚଉତରା ଉପରେ ସେଇମିତି ଲୋଟି ପଡିଲା ।

ଇଆଡ଼େ କ'ଣ ହୋଇଚି ନାଁ ସେଇ ସିଦ୍ଧଦତ୍ତ କୁଣ୍ଢେଇମାନେ ମନକୁ ଉଠିଲେ । ନିଜେ ନିଜେ ଚାଲି କୁଆଡ଼େ କେଜାଣି ଗଲେ, ଫେରିଲା ବେଳକୁ ଅପୂର୍ବ ସାଜରେ ସାଜି ଚମ୍ପକ ସୁନ୍ଦରୀ ଯାହା ଯାହା ଖାଇବାକୁ ଭଲପାଏ ତା ସବୁ ଆଣି ଚମ୍ପକ ସୁନ୍ଦରୀ ପାଖରେ ଗାଲିଚା ବିଛାଇ ସଜାଇ ରଖିଦେଲେ । ଗୋଲାପ ଜଳ ଛିଟାପାଇ ଚମ୍ପକ ସୁନ୍ଦରୀ ଚମକି ଉଠିବସିଲା । ପୂର୍ବ ପରିଚିତ ବାସ୍ନାରେ ସେ ବିଭୋର ହୋଇ କ୍ଷଣିକ ପାଇଁ କୋଉଠି ହଜିଗଲା । ତା ପାଖରେ ସଜା ହୋଇଥିବା ଗରମ ଗରମ ଖାଦ୍ୟରୁ ବାସ୍ନା ବାହାରୁଥିଲା। ତା'ର ମନେ ହେଲା ଏବେ ତାକୁ ବହୁତ ଭୋକ ଲାଗୁଚି। ଆରାମରେ ବସି ଖାଇଲା। ଏବେ ଚାହିଁଲା ଚମ୍ପକ ସୁନ୍ଦରୀ, ସବୁ ବାସନ ମଜାହୋଇ ଝକମକ କରୁଚି । କୁଣ୍ଢେଇପେଡ଼ିରେ କୁଣ୍ଢେଇ ସବୁ ନୂଆନୂଆ ବେଶ ପୋଷାକ ହୋଇ ଯେଝା ଜାଗାରେ ଯିଏ ରହିଛନ୍ତି । କୁଣ୍ଢେଇପେଡ଼ିଟି ଧରି ସିଏ ଫେରିଲା । ବାସନ ଆଣିବାକୁ ଭୁଲିଗଲା କିନ୍ତୁ ଆସି ଦେଖିଲା ବାସନ ସବୁ ସଜାହୋଇ ତା ଜାଗାରେ ଥୁଆହୋଇଛି । ସେ କିଛି ଜାଣି ପାରୁ ନ ଥିଲା କ'ଣ ସବୁ ଘଟିଯାଉଚି । ଏମିତିରେ ଦିନ ପରେ ଦିନ କଟିଯାଉଥାଏ । ଚମ୍ପିଚେରୀର ଅତ୍ୟାଚାର ଦିନକୁ ଦିନ ବଢ଼ିଯାଉଥାଏ । ସେ ଅତି ଆଶ୍ଚର୍ଯ୍ୟ ହେଉଥାଏ ଯେ ଏତେ ମାନସିକ ଶାରୀରିକ ଯନ୍ତ୍ରଣା ଭୋଗି ଆଉ ଶୁଖିଲା ଭାତ କଲରା ଭଜା ଖାଇ ଚମ୍ପକ ସୁନ୍ଦରୀ ଜ୍ୟୋତି ମଳିନ ପଡୁନାହିଁ କେମିତି ।

ଏପାଖେ କ'ଣ ହୋଇଚି ଯେ ପାଟ ମହାଦେଈଙ୍କୁ ସିନା କେହି ଦେଖୁନାହାଁନ୍ତି ହେଲେ ଚଳୁଥିବା ସ୍ତ୍ରୀଲୋକମାନଙ୍କ ଭିତରୁ କାହାର କେମିତି ନଜର ରାଣୀଙ୍କର ହାତ ପାଦ ଉପରେ ପଡ଼ି ଯାଉଥାଏ । କର୍କଶ କଣ୍ଠସ୍ୱର କାନରେ ବାଜିଯାଉଥାଏ । କିନ୍ତୁ ଷୋଳ ସିଂହାର ରାଜା ବୋଲି ବାହାରକୁ କଥା ପ୍ରଘଟ ହେଉ ନ ଥାଏ । କାଠିମରା ଭାତ ପରି ଭିତରେ ଭିତରେ ଫୁଟି ଯେମିତି ପେଜ ମରିଯାଏ, ସେଇମିତି ଭିତରେ ଭିତରେ କଥାସବୁ ଫୁଟୁଥାଏ । ସାତ ଦିନ ପୂରିବାକୁ ଆଉ ଦି ଦିନ ବାକି ଅଛି । ଷୋଳ ସିଂହାର ରାଜା ମନ ଦୁଃଖରେ ତ ଠାକୁରାଣୀଙ୍କ ଖଞ୍ଜାରେ ଅଛନ୍ତି । ଇଷ୍ଟଦେବୀଙ୍କୁ କ'ଣ

ମନକଥା ଜଣାଉଛନ୍ତି । ସେଦିନ ସଞ୍ଜୁଆ ସଞ୍ଜୁଆ ତାଙ୍କର ପ୍ରିୟ ଧଳାଘୋଡ଼ାଟିରେ ବସି ଅନ୍ୟମନସ୍କ ଭାବରେ ବୁଲୁଥାନ୍ତି । ଘୋଡ଼ା ଯୁଆଡ଼େ ନେଉଚି ନେଉ । ଘୋଡ଼ାଟି ଧୀରେ ଧୀରେ କଦମ ଚାଲି ପକାଇ ଚାଲିଛି ।

ଘୋଡ଼ା ଆସି ରାଣୀହଂସପୁରର ପଛପାଖ ପଦ୍ମପୋଖରୀ ପାଖରେ ପହଞ୍ଚିଲା । ରାଜା ଦେଖିଲେ ଚଉତରା ଉପରେ ଧଳା ଧଳା ହୋଇ ବନ୍ଧ ପଡ଼ିଲା ପରି କ'ଣ ଗଦା ହୋଇଚି । ଚାଲଚାଲ ହୋଇ ପାଖକୁ ଆସିଲେ । ଭାତ ଆଉ କ'ଣ ସବୁ ବନ୍ଧ ପଡ଼ିବା ଭାବରେ ରହିଚି । କାଉ କୁକୁର କି ଚଢ଼େଇ ଚିରୁଗୁଣି କେହି ଛଡ଼ା ଛଡ଼ି କରି ଖାଇନାହାଁନ୍ତି ଏଇ ଖୋଲା ଜାଗାରେ ।

ଆର ପାଖ ତୁଠରେ ଧୋବଣୀ ରାଣୀହଂସପୁରର ଲୁଗା ଧୋଉଚି । ରାଜା ତା ପାଖକୁ ଆସିଲେ । ଅସମୟରେ ଆକସ୍ମିକ ରାଜାଙ୍କୁ ଦେଖି ଅତି ସଂଭ୍ରମରେ ସାତ ପ୍ରଣାମ କରି ଓଢ଼ଣା ଟାଣି ଆଡ଼ ହୋଇ ଠିଆହେଲା । ରାଜା ତାକୁ ଭାତ କଥା ପଚାରିଲେ । ଧୋବଣୀ କହିଲା ମଣିମା, "ମୁଁ ନିତି ଦେଖୁଚି । ରାଣୀହଂସପୁରରୁ ବୋହୂଟିଏ କିଏ ବାହାରି ଆସି ଭାତ ସବୁ ସେଇଠି ଢାଳୁଛି; କ'ଣ ସବୁ କହୁଚି ଏତେ ଦୂରରୁ କିଛି ଶୁଭାଯାଉନି । ତା'ପରେ ସେଇପାଖରେ ଶୋଇ ପଡୁଛି। ସତ କହୁଛି ଛାମୁଁ । ଆଖି ଛୁଉଁଚି ଛାମୁଁ। ମତେ ସତ ଆପଣଙ୍କୁ ମିଛ, କାଲି ଅନ୍ଧାରରୁ ରାତି ଦି ଘଡ଼ିଯାଏ ମୁଁ ଏଇଠି କାମ କରୁଚି । କେଭେ ହେଲେ ସେଥିରେ କାଉଟିଏ ଥଣ୍ଟ ମାରେନି କି କୁକୁର ବିଲେଇ କେହି ଛୁଅଁନ୍ତିନି।"

ରାଜା ଆଶ୍ଚର୍ଯ୍ୟ ମଣି କହିଲେ, "ମୋତେ ଦେଖାଇ ଦେବ?" ଧୋବଣି କହିଲା, "ଆଜ୍ଞା ମଣିମା କାଲି ଆଗରୁ ଆସି ସେଇ କାମିନୀ ଗଛ ପାଖରେ ଯେଉଁ ଗହଳିଆ କୁନ୍ଦ ଝାଡ଼ ସବୁ ଅଛି, ତାରି ଭିତରେ ଲୁଚି ବସିବେ । ସେ ଆପଣଙ୍କୁ ଦେଖିପାରିବ ନାହିଁ। ହେଲେ ଆପଣ ତାଙ୍କୁ ଭଲକରି ଦେଖିପାରିବେ ଆଉ ତା କଥା ଶୁଣିପାରିବେ ।"

ରାଜାଙ୍କର ମନ ଉଚ୍ଚାଟ । ମନ ତ ଲାଗିଚି । କେମିତି ଦିନ ସରିବ, ସଞ୍ଜ ଆସିବ । ସେ ଆଗରୁ ବୁଦା ଆଢୁଆଳରେ ବସି ରହିଛନ୍ତି । ବେଳ ଜମାରୁ କଟୁନି । ଗୋଟିଏ ଗୋଟିଏ କ୍ଷଣ ଗୋଟିଏ ଗୋଟିଏ ଯୁଗ ପରି ମନେ ହଉଚି ରାଜାଙ୍କୁ । ଅନ୍ଧାର ମାଡ଼ି ଆସିଲା, ରାଜା ଚାହିଁ ବସିଛନ୍ତି । ଦୂର ଆକାଶରେ ଧୀରେ ଧୀରେ ଜହ୍ନ ଉଇଁ ଆସୁଛି । ସିଏ କାହିଁକି ଆସୁନି? ଆଉ କ'ଣ ଆସିବନି କି ଆଜି? ହଠାତ୍ ରାଣୀ ହଂସପୁରରୁ କିଏ ବାହାରି ଆସୁଛି । ରାଜାଙ୍କ ଛାତି ଧଡ଼କିନା ହୋଇପଡ଼ିଲା ।

ବୋହୂଟି ଧୀରେ ଧୀରେ ପାଖକୁ ଆସୁଛି । ପାଦର ନୂପୁର ଚୁଡ଼ିର ରୁଣୁଝୁଣୁ ଆବାଜ ଶୁଣାଯାଉନି, କିନ୍ତୁ ତା'ର ଢଙ୍ଗ ରଙ୍ଗ, ତା'ର ଚାଲିର ଛନ୍ଦ ରାଜାଙ୍କୁ ଚିହ୍ନା ଚିହ୍ନା ଲାଗୁଛି । ତାଙ୍କର ନିଶ୍ୱାସ ପ୍ରଶ୍ୱାସ ଖର ହୋଇଯାଉଛି । ଡାହାଣ ଆଖି ବାରମ୍ବାର ଫରକି ଉଠୁଚି । ସେ ଚୁପ୍ ଚାପ୍ ବସିରହିଛନ୍ତି ମୂର୍ତ୍ତିଟି ପରି । ଦେଖିଲେ ବୋହୂଟିର ଓଢ଼ଣାଟି ଧୀରେ ଧୀରେ ଖସି ପଡୁଛି । ରାଜା ପଲକ ହୀନ ଆଖିରେ ଚାହିଁ ରହିଲେ ଅପରୂପ ଲାବଣ୍ୟବତୀ ବୋହୂଟିର ମୁହଁକୁ । ଛାଇ ଛାଇ ଜହ୍ନ ଆଲୁଅରେ ମୁହଁଟିର ଶୋଭା ସେ କଳନା କରି ପାରୁ ନ ଥିଲେ । ଶୁଣିଲେ ବୋହୂଟି ଅଇଁଠା ଭାତ ଢାଳି ଦେଇ କହୁଚି, "ଛିଃ ଛିଃ କାଉ, ଚମ୍ପିଚେରୀ ହାତରେ କି ଚମ୍ପକ ସୁନ୍ଦରୀ ଖାଉ । କାଉ କୁକୁର କେହି ନଖାଉ, ସେତୁ ବନ୍ଧ ପଡ଼ିଥାଉ।" ତା'ପରେ ସେ କୁଣ୍ଢେଇ ପେଡ଼ିଟି ଖୋଲିଲା, କହିଲା, "ହାତରୁ କଙ୍କଣ ଦେଇ

କିଣିଲି ପୋଇଲୀ, ସେ ହେଲା ରାଜରାଣୀ ମୁଁ ହେଲି ହେଲି ପୋଇଲୀ, ଲୋ କୁଣ୍ଢେଇପେଡ଼ି।" ରାଜା ସ୍ପଷ୍ଟ ଶୁଣିପାରିଲେ ବୀଣାଜିଣା କଣ୍ଠର ଏଇ ଗୀତ। ଦେଖିଲେ କୁଣ୍ଢେଇପେଡ଼ିରେ କି କି ସୁନ୍ଦର କୁଣ୍ଢେଇମାନ ସଜାହୋଇ ରହିଛନ୍ତି। ଆଖି ଫେରାଇ ଦେଖିଲେ ବୋହୂଟିର ଆଖିରୁ କେରା କେରା ଲୁହ ବୋହିଯାଉଚି।

ସେ ନିଜକୁ ଆଉ ଆୟତରେ ରଖିପାରିଲେନି। ଲୁଚିଲା ଜାଗାରୁ ସିଧା ବୋହୂଟି ଆଗରେ ଠିଆହୋଇ ତାଙ୍କ ହାତ ଦୁଇଟିକୁ ଧରି ଉଠାଇଦେଇ କହିଲେ, "ତମେ କିଏ? ତମେ କିଏ ଦେବୀ ନାଁ ମାନବୀ। ଅପସରା ନା ଶାପଗ୍ରସ୍ତ କିନ୍ନରୀ?" ସେ ବୋହୂଟିର ହାତ ଝାଙ୍କି ଝାଙ୍କି ପଚାରିଲେ "ସତ କହ ତମେ କିଏ?" ହାତରେ ହାତଲାଗି ତାଙ୍କ ଛାତି ଚାଉଁକିନା ହୋଇଗଲା। ଏଇ ଛୁଆଁ ତ ସେ ଆଗରୁ ପାଇଛନ୍ତି। ବେଦୀ ଉପରେ। ଦୁହିଁଙ୍କର ମୁଣ୍ଡରୁ ଗୋଡ଼ଯାଏ ବିଜୁଳି ଖେଳିଗଲା ପରି ଲାଗିଲା। ବୋହୂଟି କାନ୍ଦି କାନ୍ଦି ତାଙ୍କ ପାଦ ଉପରେ କଚାଡ଼ି ପଡ଼ି କହିଲା "ମୁଁ ଚମ୍ପକ!"

ରାଜା ତାକୁ ଟେକି ଧରିଲେ। ସେମାନେ ଆଶ୍ଚର୍ଯ୍ୟ ହୋଇ ଦେଖିଲେ ଖୋଲା କୁଣ୍ଢେଇପେଡ଼ିରୁ ନାନା ପ୍ରକାର ବାଜା ବାଜେଣୀ ବାଜି ଉଠୁଚି। ହୁଳୁହୁଳି ଶଙ୍ଖ ଧ୍ୱନି ହାସ୍ୟ କୋଳାହଳରେ ଚଉଦିଗ ଉଚ୍ଛୁଳି ପଡୁଛି। ଆଉ ପୂର୍ବ ଆକାଶରେ କିଛି ଅଂଶ ଶୀତଳ ଆଲୁଅରେ ଆଲୋକିତ ହୋଇଯାଉଛି। ତା ଭିତରୁ ମୌନୀବାବାଙ୍କର ଉଜ୍ଜ୍ୱଳ ପ୍ରତିମୂର୍ତ୍ତି ପୂର୍ବପରି ଅଳ୍ପ ହସି ଅଭୟ ମୁଦ୍ରାରେ ଠିଆହୋଇ ରହିଛନ୍ତି। ଆଉ ଗୋଟି ଗୋଟି ହୋଇ କୁଣ୍ଢେଇ ଅଗ୍ନିଶିଖାଟିମାନ ହୋଇ ଲୀନ ହୋଇଯାଉଛନ୍ତି। କ୍ଷଣିକ ମଧ୍ୟରେ ମୌନୀ ବାବାଙ୍କ ପ୍ରତିଛବିଟି ଲିଭି ଲିଭି ପୂରା ଲିଭିଗଲା। ଆଉ ସାରା ଆକାଶ ଅନନ୍ତ ନିଳିମାରେ ପରିବର୍ତ୍ତିତ ହୋଇଗଲା।

ରାଜା ଦେବୀପ୍ରସନ୍ନ ଆଉ ରାଣୀ ଚମ୍ପକସୁନ୍ଦରୀ ଯୋଡ଼ ହସ୍ତରେ ଠିଆହୋଇ ରହିଥିଲେ। ଏ ଘଟଣା ଏମିତି ନିମିଷକ ମଧ୍ୟରେ ଭୋଜବାଜୀ ପରି ଘଟିଗଲା ଯେ ସେ ବିଷୟରେ କିଛି ଜାଣିବା ବୁଝିବା ଅବା ବିଶ୍ୱାସ କରିବାର ଅବସ୍ଥା କାହାରି ନ ଥିଲା। ରାଜା ରାଣୀ ଆତ୍ମବିସ୍ମୃତ ହୋଇଯାଇଥିଲେ। ସମ୍ବିତ ଫେରି ଆସିଲାପରେ ଦୁହେଁ ଦୁହିଁଙ୍କୁ କେତେ ବେଳ ଯାଏ କେବଳ ଚାହିଁ ରହିଲେ। ପରେ ଚମ୍ପକ ସୁନ୍ଦରୀ ମୂଳରୁ ଚୂଳ ଯାଏ ତା'ର ସବୁ ଘଟଣା ରାଜାଙ୍କୁ କହିଲା।

ରାଜା ତ ରାଗି ନିଆଁବାଣ ହୋଇଗଲେ। ଚମ୍ପିଚେରୀକୁ ପାଖରେ ପାଇଲେ ଗଣ୍ଡିମୁଣ୍ଡ ଅଲଗା କରିଦିଅନ୍ତେ। ଆହା ଅଲିଅଳୀ ରାଜଜେମାଟି କେତେ ଦୁଃଖ ନ ପାଇଲା ସତେ। ଚମ୍ପକ ସୁନ୍ଦରୀ ମୁହଁଟିକୁ ଦେଖି ଦେଖି ଶାନ୍ତ ହୋଇଗଲେ। ତାକୁ ଫୁଲଟି ପରି ଉଠେଇ ନେଇ ଘୋଡ଼ାଉପରେ ବସାଇ ଦେଇ ଯେମିତି ଆପେ ବସି ପଡ଼ିଛନ୍ତି, ସେମିତି ଘୋଡ଼ା ବିଜୁଳି ବେଗରେ ଛୁଟି ଦିଅଁଘର ଖଞ୍ଜାରେ ପଶିଗଲା। ଗହଳ ରାତିର ଆଡୁଆଳରେ କେହି କିଛି ଦେଖିପାରିଲେନି କି କେହି କିଛି ଜାଣି ପାରିଲେନି କ'ଣ ସବୁ ଘଟିବାକୁ ଯାଉଚି। ରାଜାରାଣୀ କାନ୍ଦି କାନ୍ଦି ଠାକୁରାଣୀଙ୍କୁ ପ୍ରଣାମ କଲେ, ପ୍ରାର୍ଥନା କଲେ। ତା ପରେ ଦୁହେଁ ମୁହଁକୁ ମୁହଁ ଯୋଡ଼ି ଢେରସାରା କଥାବାର୍ତ୍ତା ହେଲେ।... ହସିଲେ...।

କେତେବେଳେ କେଜାଣି ରାତି ପାହିଲାଣି, ସପ୍ତମ ଦିନର ରାତି ପାହିଗଲାଣି। ଆଜି ନୂଆରାଣୀଙ୍କର ମୁହଁ ଦେଖା। ଘନ ଘନ ଶୁଭଶଙ୍ଖ କାଳି ଅନ୍ଧାରରୁ ବାଜିଉଠୁଚି। ନାନାପ୍ରକାର ବାଜା

ବାଜନ୍ତରୀ, ତୁରୀ ମହୁରୀ, ବାଇଦ ବଡ଼କାଠ ଶବ୍ଦରେ ଦଶଦିଗ ଦୁଲୁକୁଛି । ଧୀରେ ଧୀରେ ସାରା ରାଇଜର ଲୋକେ ଜମୁଛନ୍ତି । ସମସ୍ତଙ୍କ ହାତରେ ଶ୍ରଦ୍ଧାଉପହାର ।

ଆଜି ମୁହଁ ଦେଖା ପାଇଁ ଚମ୍ପିଚେରୀ ଅତି ମୂଲ୍ୟବାନ ନାନା ଅଳଙ୍କାରରେ ମଣ୍ଡଣି ହୋଇ ଡାକରାକୁ ଅପେକ୍ଷା କରିବସିଛି । ଡାକରା ଆସିଲା । ଦଳେ ଖୋଜା (ମାଇଚିଆ) ଆସି ତାକୁ ଶୂନ୍ୟେ ଶୂନ୍ୟେ ଉଠେଇ ନେଇ ଗୋଟାଏ ଖଣ୍ଡିଆ ଶଗଡ଼ରେ ବସାଇ ଭିଡ଼ିଭିଡ଼ି ନେଇଗଲେ । ଠିକ ଦରବାର ଆଗକୁ । ଏତେବେଳେ କୋଉଠି ଥିଲା ଗୋଟେ କାଉ କୁଆଡୁ ଆସି ଉଡ଼ି ଉଡ଼ି ଠିକ୍ ଚମ୍ପିଚେରୀ ମୁଣ୍ଡ ଉପରେ ମଳତ୍ୟାଗ କରିଦେଲା । ସେତେବେଳକୁ କେବଳ ଚମ୍ପିଚେରୀ ବ୍ୟତୀତ ଅନ୍ୟ ସମସ୍ତେ ସବୁ ଘଟଣା ଜାଣି ସାରିଥିଲେ । ଚମ୍ପିଚେରୀ ଦରବାରକୁ ଚାହିଁଦେଇ ଚମକି ପଡିଲା । ଦରବାରରେ ରତ୍ନ ସିଂହାସନ ଉପରେ ଷୋଳ ସିଂହାର ରାଜା ଆଉ ଚମ୍ପକ ସୁନ୍ଦରୀ ଲକ୍ଷ୍ମୀ ନାରାୟଣଙ୍କ ପରି ବିରାଜୁଛନ୍ତି ।

ଏତେବେଳେ କିଏ କହିଲା ଏ ଚମ୍ପି ଦେଖିଲୁ ଏ ଖଣିରେ କେତେ ଧାନ ସମେଇବ । ଚମ୍ପି ନିଜ ଅଜାଣତରେ ଚାହିଁ ଦେଲା । ବିରାଟ ଗୋଟାଏ ଏତେବଡ଼ ଖଣିଗାଡ଼ । ଖଣି ଭିତରେ ମୁନିଆ ମୁନିଆ କଣ୍ଟା ସବୁ ଭରିଚି । କିଛି କହିବା ଆଗରୁ ତାକୁ କେହି ଜଣେ ଧକ୍କା ମାରିଦେଲା । ସେ ଦୁମ୍ କରି କଣ୍ଟା ଉପରେ ପଡ଼ିଲା ଆଉ ତା ଉପରେ କଣ୍ଟା ଗଦା ହୋଇଗଲା । ଝୁପଝାପ୍ ଚାରି ପାଖରୁ ଗାଣ୍ଡୁଏ ଗାଣ୍ଡୁଏ ମାଟି ପଡ଼ି ଗାତ ମୁଦି ହୋଇଗଲା । କାରଣ ଚମ୍ପିକୁ ତଳକଣ୍ଟା ଉପରକଣ୍ଟା କରିବାର ଆଦେଶ ରାଜାଙ୍କର ହିଁ ଥିଲା ।



# କେଳା କେଳୁଣୀ କଥା

"ଏ ମିତ କାନ ଡେରିଥା –
ସାଧବ ଘରର ଗୁମର କଥା ।
ଅତି ପୁରାତନ କାହାଣୀ ଇଏ,
ଆଚମ୍ବିତ ହେବ ଶୁଣିବ ଯିଏ ।"

ଗୋଟିଏ ରାଇଜରେ ଗୋଟିଏ ସାଧବ ଘର ଥାଏ । ତାଙ୍କର ସାତ ପୁଅରେ ସାତ ବୋହୂ । ବଣିଜ ବେପାରରେ ବହୁତ ଧନ କମେଇଥା'ନ୍ତି । ସୁନାରେ, ରୂପାରେ ବାଟ ଚାଲନ୍ତି । ସାନବୋହୂଟି ଭାରି ସୁନ୍ଦରୀ, ଦି ଅକ୍ଷର ପଢ଼ିଥାଏ, ଭାରି ଗୁଣର । ତାକୁ ଆଉ ଯା'ମାନେ ହିଂସା କରନ୍ତି । ସାଧବାଣୀ ବୁଢ଼ୀ ମଧ୍ୟ ତାକୁ ଜମାରୁ ଦେଖିପାରେନି । କାହିଁକିନା ସାନବୋହୂଟି ଥିଲା ଘରର ଝିଅ ନ ଥିଲା । ଯାନିଯୌତୁକ ସେମିତି କିଛି ଆଣିନାହିଁ । ବୁଢ଼ୀ କହେ ଖାଲି କ'ଣ ସୁନ୍ଦରକୁ ଚାଟିବ? ସାନ ପୁଅ ତା ସୁନ୍ଦର ପଣିଆ ଦେଖି ତାକୁ ବାହା ହୋଇଥାଏ । ତାକୁ ଭାରି ଭଲପାଏ । ସାନ ବୋହୂଟି ତ ବହୁତ ଭଲ ସ୍ୱଭାବର ଝିଅଟି । ଶାଶୂ, ଯା', ସେଭଳି ଭଲ ପାଆନ୍ତି ନାହିଁ, ଯାଉଣୁ ଆସୁଣୁ ଖୁଣ୍ଟନ୍ତି, ଘର ଯାକର ସବୁ ପାଇଟି ତା'ରି ହାତରେ କରାନ୍ତି, ଏ କଥା ସିଏ ସ୍ୱାମୀ ଆଗରେ ଜମା କହେନି, ହସି ହସି ସବୁ ସହିଯାଏ, ତା ମୁହଁ ଚାହିଁ । ସେ ଜାଣେ ଏ ଶାଶୂ ଘର ତା ପାଇଁ ତୀର୍ଥ ଭୂଇଁ । ଯାହା ଭାଗ୍ୟରେ ଅଛି ଘଟୁଛି, ସିଏ କାହିଁକି ମନ ଊଣା କରିବଟି । ଭାରି ଠାକୁରାଣୀ ଭକ୍ତ, ମନ କଥା ସବୁବେଳେ ମାଙ୍କୁ ଜଣାଏ । ତାର ପୂରା ବିଶ୍ୱାସ ମା ଦିନେ ନା ଦିନେ ନିଶ୍ଚୟ ତାର ଦୁଃଖ ଖଣ୍ଡନ କରିବେ ।

ବାହାଘର ଅଳ୍ପଦିନ ହେଲା ହୋଇଥାଏ, ବେପାର ବଣିଜ ପାଇଁ ଶ୍ୱଶୁର, ଦେଢ଼ଶୁର, ସ୍ୱାମୀ ବିଦେଶ ବାହାରିଲେ । ତା ମନ ଦୁଃଖ ହେଲା। ସବୁ କଷ୍ଟ, ଦୁଃଖ, ସ୍ୱାମୀର ଆଦର, ସ୍ନେହରେ ଭୁଲି ଯାଉଥାଏ ସିନା। ହଉ ଯାହା ଭାଗ୍ୟରେ ଅଛି, ଯାହା ତାଙ୍କ ଇଚ୍ଛା । ସ୍ୱାମୀମାନଙ୍କୁ ଆଉ ବୋହୂମାନେ ଭଲ ଚିଜ ଆଣିବାକୁ ବରାଦ୍ ଦେଲେ । କିଏ ଅଷ୍ଟରତ୍ନ ଜଡ଼ର ବାଜୁବନ୍ଧ, କିଏ ମୁକୁତା ଝରା ଲଗା କେତକୀ ପାନ । ସବା ସାନ ବୋହୂଟି କିଛି କହିଲା ନାହିଁ ଆଣିବାକୁ। ସାନ ସାଧବ ପୁଅଟି ଯେତେ ପଚାରିଲେ ମଧ୍ୟ ସେ ଖାଲି କହିଲା, "ମୋର କିଛି ଦରକାର ନାହିଁ, ଖାଲି ସହଳ ତମେ ଫେରିଆସ ।" ସାନ ପୁଅଟି ତାକୁ ଗେଲ୍ହା କରି କହିଲା, "କିଛି ମନ ଦୁଃଖ କରିବନି, ମୋ ରାଣୀ। ତୁମକୁ ଛାଡ଼ି କ'ଣ ମୁଁ ବେଶୀ ଦିନ ରହିପାରିବି? ତମ ପାଇଁ କ'ଣ ଆଣିବି? ମୁଁ ତୁମ ପାଇଁ ସୁନା ଜରି ଦିଆ କଳାମେଘୀ ପାଟଟିଏ ଆଣିବି । ତମେ ତ ସୁନ୍ଦରୀ ତରାଟିଏ, ଭାରି ମାନିବ ।"



ଏମିତିରେ ସମସ୍ତେ ବିଦାବିଦି ହୋଇ ସମୁଦ୍ରରେ ବୋଇତ ମେଲିଦେଲେ । ସାଧବାଣୀ ବୁଢ଼ୀ ସାତ ବୋହୂଙ୍କୁ ଧରି ବୋଇତ ବନ୍ଦାଣ କରି ମେଲାଣି ଦେଇ ଘରକୁ ଫେରିଲେ । ସାନ ବୋହୂ ଉପରେ ଦାଉ ସାଧିବାକୁ ତାଙ୍କୁ ସବୁ ଏବେ ଭଲ ମଉକା ମିଳିଗଲା । ପୁଅ ଥିଲାବେଳେ ଭରସି ପାରୁ ନ ଥିଲେ । ଏବେ ଉଠୁଣୁ ବସୁଣୁ ବାରକଥା କହନ୍ତି, ବଟାଘଟାଠୁ ଆରମ୍ଭ କରି, ରନ୍ଧାବଢ଼ା, ପରଷାପରଷି, ବାସନ ମଜାମଜି, ଘରର ଯାବତୀୟ କାମସବୁ ସେହି ବୋହୂଟି ହାତରେ କରାନ୍ତି । ବୋହୂଟି ସମସ୍ତଙ୍କୁ ଘଷାମୋଡ଼ା କରି, ସବୁ କାମ ତୁଟେଇ ରାତିଅଧକୁ ଶୋଇଲା ଘରକୁ ଯାଏ । କେତେବେଳେ ରାତି ପାହେ, ତାକୁ ଜଣା ପଡ଼େନି, ପୁଣି କାଳି ଅନ୍ଧାରକୁ ଉଠି କାମରେ ଲାଗେ ।

ବୋଇତ ଫେରିବାକୁ ଆଉ ଦି ଦିନ ବାକିଥାଏ । ସେ ଦିନ ବୁଢ଼ୀର କାହିଁକି ସଉକ ହେଲା ଗପ ଶୁଣିବାକୁ । ଢେର ରାତି ହେଲାଣି, ବୋହୂମାନଙ୍କୁ ଡାକି କହିଲା, "ଗପ କହ ।" ସମସ୍ତେ ତ ଭୂସ୍‌ପଣ୍ଡିତ, ଆଉ ଏମାନଙ୍କୁ ଗପ ଆସେନି । ସାନ ବୋହୂକୁ ଆସେ, ପାଠ ପଢ଼ିଚି ତ । ହେଲେ କାମ

କରି ସେ ଏତେ ଥକି ଯାଇଥିଲା ଯେ, ଶାଶୂର ଗୋଡ଼ ମୋଡ଼ି ଦଉ ଦଉ ଆଖିରେ ଆଖିଏ ନିଦ ଭରି ଗଲାଣି । ସେଇଠି ଶୋଇପଡ଼ନ୍ତା କି! ଗପ କହିବା ଅବସ୍ଥା ଆଉ ତା'ର କାହିଁ ? ଅନ୍ୟମାନଙ୍କ କଥା ଶୁଣି ବୁଢ଼ୀ ଭାରି ଖପ୍ପା ହୋଇଗଲା । ରାଗରେ ପିତ ତାଳୁକୁ ଉଠିଗଲା । ସେ ଅଭିଶାପ ଦେଲା ଯାହା ପେଟରେ ଯେତେ ଗପ ଅଛି, ସେ ସବୁ କେଳା କେଳୁଣୀ ହୋଇଯାଉ । କାହାକୁ ତ କିଛି ଜଣା ନ ଥିଲା । କାହାର କାହିଁକି କ'ଣ ହୁଅନ୍ତା ଅବା! ହେଲେ ସାନ ବୋହୂଟିକୁ ଦି'ଟି ଗପ ଆସୁଥିଲା । ତା ପେଟରେ ଦୁଇଟି କେଳା କେଳୁଣୀ ହୋଇଗଲେ ।

ବୋଇତ ଆସି ଖଣ୍ଡେ ଦୂରରେ ଲଙ୍ଗର ପକାଇଛି । ସାନ ବୋହୂ ଶୋଇଥିବା ବେଳେ କେଳା କେଳୁଣୀ ଦୁଇଟି ତା ପେଟ ଭିତରୁ ବାହାରି ବୋଇତକୁ ଚାଲିଗଲେ । ରାତି ପାହା ପାହା ବେଳକୁ ବୋଇତ କୂଳରେ ଲାଗିଯିବ, ଘରକୁ ଫେରିବା ଆନନ୍ଦରେ କାହାରି ଆଖିରେ ନିଦ ନାହିଁ... କେମିତି ଆପଣା ଆପଣା ପ୍ରିୟଜନମାନଙ୍କୁ ଭେଟିବେ । ଏତେ ଦିନର ବିଚ୍ଛେଦପରେ ଏ ମିଳନ କେତେ ଖୁସିର ନହେବ ସତେ! ଏମିତି ସୁଖ ସ୍ୱପ୍ନରେ ସମସ୍ତେ ମସଗୁଲ୍ ।

ଏତିକି ବେଳେ କେଳା କେଳୁଣୀ ଦୁଇଟି ବୋଇତ ଉପରେ ଅଙ୍ଗଭଙ୍ଗି କରି ନାନା ପ୍ରକାର ଗୀତ ନୃତ୍ୟ ଆରମ୍ଭ କରିଦେଲେ । ମୁଗ୍ଧ ହୋଇ ଉପଭୋଗ କରୁଥାନ୍ତି ସମସ୍ତେ । ଗୀତ ନାଚରେ ଏତେ ମଜ୍ଜି ଯାଇଥିଲେ ଯେ ସେମାନେ ଭାବିବାକୁ ଅବସର ପାଇଲେନି, ଏମାନେ କିଏ, କେଉଁଠୁ ଆସିଲେ । କେମିତି ଆସିଲେ । ସେମାନେ ଆତ୍ମବିସ୍ମୃତ ହୋଇ ସାରିଥିଲେ । ସତେ ଅବା କିଏ ତାଙ୍କୁ ସମ୍ମୋହନ କରିଦେଇଛି । ଗୀତ ନାଚ ସରିଲା ପରେ ସାଧବ ପୁଅମାନେ ତାଙ୍କୁ ହାତ ଖୋଲା ପୁରସ୍କାର ଦେଲେ । ଯାହା ମାଗିଲେ ଦେଲେ । କେଳା ଆସି ସାନ ପୁଅକୁ କଳାମେଘୀ ପାଟ ଖଣ୍ଡିକ ମାଗିଲା । ସିଏ ଦେଇଦେଲା । ତା'ର କ୍ଷଣିକ ପାଇଁ ମନେ ହେଲାନି ଯେ ଏହା କାହା ପାଇଁ ଆଣିଥିଲା ।

ଭୋର ଭୋର... ରାତି ଜାଙ୍ଗୁଲ୍ ଜାଙ୍ଗୁଲ୍ ହେଲା ବେଳକୁ, ପୂର୍ବ ଆକାଶ ଲାଲ୍ ହୋଇ ସୁନ୍ଦରା ଫାଟିଲା ବେଳକୁ, ବୋଇତ ଆସି କୂଳରେ ଲାଗିଲା । ବୋଇତ ବନ୍ଦାଣ ପାଇଁ ଘରକୁ ବେଉରା ଗଲା । ବୋହୂମାନଙ୍କ ସହିତ ବୁଢ଼ୀ ସାଧବାଣୀ ବନ୍ଦାଣ ଥାଳି ଧରି ସଜବାଜ ହୋଇ ବାହାରିଲେଣି, ସାନ ବୋହୂକୁ ଡାକ ପଡ଼ିଛି । ବିଚରା ସାନ ବୋହୂଟି ପାଇଟିରେ ବ୍ୟସ୍ତ ଥିଲା, ଧୂଆଧୁଇ ହୋଇ ବାହାରି ଆସୁଛି, ହେଲେ କ'ଣ ପିନ୍ଧି ଯିବ? ସମସ୍ତେ ତ ନାନା ପ୍ରକାର ବହୁମୂଲ୍ୟ ପାଟଶାଢ଼ୀ ପିନ୍ଧି ବାହାରିଥିବେ । ତା'ର ତ ଭଲ ଶାଢ଼ୀ ଖଣ୍ଡିଏ ମଧ୍ୟ ନାହିଁ । ସେ ଥା ଥା ମା ମା ହୋଇ ଭାବିଭାବି ଆପଣା ଶୋଇଲା ଘର ଭିତରକୁ ପଶି ଆଲଣାରେ ପଡ଼ିଥିବା କଳାମେଘୀ ଶାଢ଼ୀ ଖଣ୍ଡିଏ ଦେଖିଲା । ସାନ ପୁଅ ନିଶ୍ଚୟ କାହା ହାତରେ ଶାଢ଼ୀ ଖଣ୍ଡିକ ଆଗତୁରା ପଠାଇ ଦେଇଛନ୍ତି, ପିନ୍ଧିକରି ବୋଇତ ବନ୍ଦେଇ ଯିବ ବୋଲି । ସାନ ପୁଅ କଥା ଭାବି ସେ ଲାଜେଇ ଗଲା। ଶାଶୂଙ୍କ ଡାକରାରେ ତରତରରେ ଶାଢ଼ୀ ଖଣ୍ଡି ପିନ୍ଧି ବନ୍ଦାଣ ଥାଳ ଧରି ବାହାରି ଆସିଲା ।

ସମସ୍ତେ ଆଶ୍ଚର୍ଯ୍ୟ ହୋଇ ତାକୁ ଚାହିଁ ରହିଲେ । ରୂପବତୀ ସାନ ବୋହୂର ଶୋଭା ସାତଗୁଣ ଝଲସୁଥିଲା । ସମସ୍ତେ କେତେ କ'ଣ, ଆଖିରେ ଆଖିରେ କଥା ହୋଇଗଲେ । ସାଧବାଣୀ ସାଧବଙ୍କୁ ଏବଂ ବୋହୂମାନେ ପୁଅମାନଙ୍କୁ ବନ୍ଦାପନା କଲେ । ପ୍ରଥମେ ତ ସାନ ପୁଅ ସାନ ବୋହୂକୁ ଦେଖି

ମୁଗ୍ଧ ହୋଇ ଚାହିଁ ରହିଲା । କିନ୍ତୁ ପରେ ପରେ ତା କପାଳ କୁଞ୍ଚିତ ହୋଇଗଲା, ତା ମନ ମଧ୍ୟ ଭାରି ଦୁଃଖ ହୋଇଗଲା । ସାନ ବୋହୂ ପାଖକୁ ଆସିଲା କେମିତି ଏ ଶାଢ଼ୀ? ତା ମନ ଭିତରେ ନାନା ପ୍ରକାର ସନ୍ଦେହ ବସା ବାନ୍ଧିଲା । ମା ଭାଉଜକୁ ପଚାରିଲା, "ଗଲା ରାତିରେ ଆମ ଘରକୁ କେହି ଆସିଥିଲେ କି?" ସହଜେ ତ ସାନ ବୋହୂକୁ କେହି ଦେଖି ସହିପାରନ୍ତିନି । ସାନ ପୁଅ ପାଖରେ ସେମାନେ ଦରଦର ମୁରୁକି ହସା ମାରି ମୁହଁ ମୋଡ଼ିଲେ । ତା'ର ସନ୍ଦେହ ଆହୁରି ଜମାଟ ହେଲା । ସାନ ବୋହୂ ଲାଜେଇ ଲାଜେଇ ଅଳ୍ପ ହସି କହିଲା, "ତମେ ଗଲାବେଳେ ମୋ ପାଇଁ ଏହି ଶାଢ଼ୀ ଆଣିବ ବୋଲି କହିଥିଲ ନା ।" ସାନ ପୁଅର ମୁହଁ ଗମ୍ଭୀର ହୋଇଗଲା । ସେ କିଛି ନ କହି ସେଠୁ ଚାଲିଆସିଲା ।

ସମୟ କଟି କଟି ଯାଉଥିଲା । ସାନ ପୁଅ ମନରେ ସୁଖ ନ ଥିଲା । ଏତେ ଆଶା ଆଗ୍ରହରେ ସେ ଘରକୁ ଫେରି କ'ଣ ଦେଖିଲା । କେଳା ସହିତ ୟାର କିଛି ସମ୍ପର୍କ ଅଛି, ସେ ଭାବିଲା । ନ ହେଲେ କେଳାକୁ ଦେଇଥିବା ଶାଢ଼ୀ ୟା ପାଖକୁ ଆସିଲା କେମିତି? ତା ମନରେ ସନ୍ଦେହର ନାଗମାନେ ଫୁଁ ଫୁଁ ହୋଇ ଗର୍ଜୁଥିଲେ । ସେ ମନକୁ ମନ କହିଲା । ଆଜି ରାତିରେ ଯାହା ହେବାର ହେଉ ପଛେ ସେ କଳଙ୍କିନୀ ସାନ ବୋହୂକୁ ଶେଷ କରିଦେବ । ସାନ ବୋହୂ କଥା ଭାବିଲା ବେଳକୁ ତାକୁ ବିଷ ପରି ଲାଗୁଥିଲା । ସେ ଖାଲି ସମସ୍ତେ ଶୋଇବାକୁ ଅପେକ୍ଷା କଲା ।

ରାତି ଆସ୍ତେ ଆସ୍ତେ ଘନ ହେଉଥିଲା । ସାନ ବୋହୂର ମନ କଷ୍ଟ କହିଲେ ନ ସରେ । ଯା'ମାନଙ୍କ ଘରୁ ଆନନ୍ଦର ଚାପା ଗୁଞ୍ଜନ... ହସ ଖୁସି କଥାବାର୍ତ୍ତା ଭାସି ଆସୁଛି । ତା ମନ କ'ଣ ହେଇଯାଉଛି । ଏତେ ଦିନେ ତା ସ୍ୱାମୀ ଘରକୁ ଫେରିଲେ, ସେ କେତେ କଥା ଭାବି ନ ଥିଲାଟି । କିନ୍ତୁ କ'ଣ ହେଲା ତା ଭଗବାନଙ୍କୁ ଜଣା । ତାକୁ କଥା କହିବା... ହସ ଖୁସି ଆଦର କରିବା ତ ଦୂରର କଥା, ଆଡ଼ ଆଖିରେ ମଧ୍ୟ ଚାହୁଁନାହାନ୍ତି । ତା ଆଖିରୁ ଧାରଧାର ଲୁହ ବହି ଯାଉଛି । କାନି ପଣତରେ ଯେତେ ପୋଛିଲେ ବି ପୁଣି ସମୁଦ୍ର ଉପାସିଆ ।

ଆଜି ତାର କିଛି କାମ କରିବାକୁ ଇଚ୍ଛା ନାହିଁ । ଚୁଲି ସବୁ ଅଲିପା ପଡ଼ିଛି । ବାସନ କୁସନ ଅଧୁଆ । ଶିଳ ପାଖରୁ ଶିଳପୁଆ ଯାଇ ଖଣ୍ଡେ ଦୂରରେ ପଡ଼ିଛି । ଗାଈ ପାଖକୁ ବାଛୁରୀ ଛଡ଼ାଯାଇ ନାହିଁ । ସେ ସେଇଠି ରୋଷେଇ ଘରର ବହନ୍ତିରେ କାନିଟି ପାରି କହୁଣି ଉପରେ ମଥାଟି ରଖି, ଲୋଟେଇ ହୋଇ ଶୋଇ ଆକାଶ ପାତାଳ ଭାବୁଛି । ଭାଗ୍ୟକୁ ନିନ୍ଦା କରୁଛି । ଠାକୁରାଣୀ ଉପରେ ତା'ର ବହୁତ ଅଭିମାନ ଆସିଯାଇଛି, କ'ଣ କ'ଣ କହୁଛି । କାନ୍ଦିକାନ୍ଦି ଆଖିସବୁ ଫୁଲି ଗେଣ୍ଡା ଶାମୁକା ପରି ହୋଇଗଲାଣି । କେତେବେଳେ କେଜାଣି ମା ନିଦ୍ରାଦେବୀ ତାକୁ ଥାପୁଡ଼ାଇ ଥାପୁଡ଼ାଇ ଶୁଆଇ ପକେଇଲେ ।

ରାତି ଗଭୀର ହେଲାଣି, ଚାରିଆଡ଼ ନିଶୁନ୍ ଲାଗୁଚି । ନିଶା ସାଇଁ ସାଇଁ ଗର୍ଜୁଛି । ଯିଏ ଯୁଆଡ଼େ ସୁଖ ନିଦ୍ରାରେ... ସୁଖ ସ୍ୱପ୍ନରେ ବିଭୋର । ଚାଇଁ କିନା ସାନ ପୁଅର ନିଦ ଭାଙ୍ଗିଗଲା । ସେ ଉଠିପଡ଼ି ବସି ପଡ଼ିଲା । ଅସଜଡ଼ା ଖଟରେ ମୁହଁ ମାଡ଼ି ଶୋଉ ଶୋଉ କେତେବେଳେ ଆଖି ତା'ର ଲାଗି ଯାଇଥିଲା । ରାଗରେ ତା ଦେହ ଜଳୁଛି । ସିଏ ଶେଯ ତଳେ ଲୁଚାଇ ରଖିଥିବା କଟାରି କାଢ଼ିଲା । ଚାରିଆଡ଼କୁ ଚାହିଁ ଚାହିଁ ସାନ ବୋହୂକୁ ଖୋଜୁଛି । କାହିଁ ତା'ର ପତା ନାହିଁ । ତା'ର ଧ୍ରୁବ ଧାରଣା

ହେଲା ସିଏ ନିଶ୍ଚୟ ସେହି କେଳା ପାଖକୁ ଯାଇଥିବ। ଘର ପରେ ଘର, ବାରଣ୍ଡା ପରେ ବାରଣ୍ଡା, ପାରି ହୋଇ ଆସି ରୋଷେଇ ଘର ପାଖରେ ପହଞ୍ଚିଲା।

ଘର ମଝିରେ ଛାଞ୍ଚୁଣିଟା ପଡ଼ିଛି। ଝୁଣ୍ଟି ପକାଇଲା। ଛାଞ୍ଚୁଣି କହୁଛି, "ମଲା, ମୋର ତୁ ଏଡ଼େ ପାରିବାର ଯେ ସାନ ବୋହୂକୁ ମାରିବାକୁ ଯାଉଛୁ। ତୋ ଆଖିକି କ'ଣ ଦୁଶୁନି, ମୋତେ କୁଦି ପକାଉଛୁ। ଆହାଃ ବିଚାରୀ ସାନ ବୋହୂଟି ମନ ଦୁଃଖରେ ସିନା ମୋତେ ମୋ ଜାଗାରେ ରଖିନି।" ସାନ ପୁଅ ଜାଣିଲା ସାନ ବୋହୂ ଏଇଠି କୋଉଠି ଅଛି। ସାନ ପୁଅ ଶୁଣିଲା, ସାନ ଚୁଲି ବଡ଼ ଚୁଲିକି କହୁଛି, "ସାଙ୍ଗ ମୋ ଦେହ ଖାଲି ପୋଡୁଛି।" ବଡ଼ ଚୁଲି କହିଲା, "ପୋଡ଼ିବନି ଆଉ କ'ଣ ହେବ? ମୋ ଭିତରେ ପରା ଡହ ଡହ ଜଳୁଛି। ବିଚାରୀ ସାନ ବୋହୂଟି ସିନା ପାଣି ଛିଞ୍ଚି ଲିଭାଏ, ଲିପେ। ଆଜି ତ ତା ମନ ପୋଡୁଛି, ସେ ଏତେ ମନ କଷ୍ଟରେ ଅଛି। ତା କଥା ତ ତାକୁ ଧରାଧରି, ସିଏ ଆଉ କ'ଣ କରନ୍ତା।"

ସାନ ପୁଅ କାନ ଖଡ଼ା ଖଡ଼ା କରି ଆହୁରି ଶୁଣିଲା। ଶିଳପୁଆ ଶିଳକୁ କହୁଛି, "ଏ ମା, ମୋତେ ତୋ ପାଖକୁ ନେଇ ଯା।" ଶିଳ କହିଲା, "ତୋତେ ମୁଁ କେମିତି ନେବିରେ ଧନ? ମୁଁ କ'ଣ ଚାଲି ବୁଲି ପାରୁଛି ନା ମୋର ହାତ ଗୋଡ଼ ଅଛି? ବିଚାରୀ ସାନ ବୋହୂ ସିନା ଘର ଗୋଟିକର କାମ ଦାମ ସାରି ଆମେ ସବୁ କିଏ କୁଆଡ଼େ ଥାଏ ଏକାଠି କରେ। ଆଜି ତ ତାକୁ ବଳାବଳି। ତା ମନ ତ ଜଳି ଯାଉଛି। ଆହାଃ କେଡ଼େ ଅବିବେକି ଲୋକଗୁଡ଼ାକ ଏ ଘରେ ଅଛନ୍ତି ମ! ସୁନାରେ, ଆଜି ରାତିକ ସେଇମିତି ଥା। କାଲି ଯଦି ସିଏ ବଞ୍ଚିଥାଏ, ତେବେ ଆମକୁ ଏକାଠି କରିବ।"

ସାନ ପୁଅ ଶୁଣୁଛି, ତା ମନରେ କିଛି ଭାବାନ୍ତର ହେଲା। ଆଉ ଟିକେ ଆଗରେ ବାସନମାନେ କଥା ହେଉଛନ୍ତି ଶୁଣିଲା। ସେଥିରୁ କିଏ କହୁଛି, "ହଇଲୋ ଅପା, ବାସନ ସଭାରେ ଆଜି ଆମେ କି ଅପଦସ୍ତ ନ ହେଲେ କହିଲୁ ଦେଖି। ସେହି ସାହୁ ଘର ବାସନ ନିଜେ ପଛେ ସବୁଦିନେ କଳା ପଟପଟ, ଆଜି ଆମକୁ ଦେଖି କେମିତି ଖତେଇ ହେଉଥିଲା।" ଗୋଟିଏ ଥାଳି କହିଲା, "କ'ଣ କରିବାରେ ସାଙ୍ଗ, ବୋହୂର ତ କପାଳ ମନ୍ଦ, ତା ସାଥିରେ ଆମର ବି ହୀନି କପାଳ। ସେ ସିନା ଘରର ସବୁ କାମ ସାରି ଆମକୁ ମାଜିମୁଜି ସୁନା ପରି ଝଟକାଉଥାଏ ଯେ ଆମେ ନିତି ବାସନ ସଭାରେ ଛାତି ଫୁଲେଇ ବସେ। ତା'ର ତ ମନରେ ନିଆଁ ଲାଗିଯାଇଛି। ବନସ୍ତ ପୋଡ଼ିଲେ ସମସ୍ତେ ଜାଣନ୍ତି, ମନ ପୋଡ଼ିଗଲେ କିଏ ଜାଣିବ। ସେ କେତେ ଆନନ୍ଦରେ ସାନ ପୁଅକୁ ଚାହିଁ ବସିଥିଲା। ତା'ର ଘର ଲୋକେ ଯେତେ ଦୁଃଖ ଦେଲେ ବି ସେ କ'ଣ କେବେ ଦିନେ ତା ଗେରସ୍ତ ଆଗରେ କହିଛି ଭଲା? ସାନ ସାଧବର ବୁଝାମଣାକୁ ଦେଖ।"

ସାଧବ ପୁଅ ଅଧେ ବୁଝୁଥିଲା ଅଧେ ବୁଝୁ ନ ଥିଲା। ତା ମୁଣ୍ଡ କ'ଣ ହୋଇଯାଉଥିଲା ସତରେ କ'ଣ ବୋହୂଟି ଘରର ସମସ୍ତ କାମ କରେ, ଏତେ ଖଟେ, ତାକୁ ତ କାହିଁ ଜଣା ନ ଥିଲା। ତା ହୀନ ଅବସ୍ଥା ପାଇଁ ସେ ନିଜେ ଦାୟୀ। ସେ ନିଜକୁ ଧିକ୍କାର କଲା। ଏହି ସମୟରେ ଗୁହାଳରୁ ହମା ହମା ଶୁଭିଲା। ବାଛୁରୀ ତା ମା ପାଖକୁ ଯିବ ବୋଲି ଅଳି କରୁଛି, "ମାଆ, ଆ ଆ ମୁଁ କ'ଣ ତୋ'ଠୁ ଦୂରରେ ଏଇଠି ବନ୍ଧା ହୋଇ ରହିଥିବି। ମୋତେ ଭାରି ଭୋକ କଲାଣି।" ମା କହିଲା, "ଆଉ କ'ଣ କରିବାରେ ମୋ ଧନ ତୁନି ହୁଅ। 'ଛି କରିଦେ, ମନ ମାରିଦେ, ଚାଉଳ ଭଜା ତୋ ମନକୁ

ବୁଝା'। ସାନ ବୋହୂ ଯଦି ଆଜି ହଣା ଖାଇବ ତେବେ ଆମର ଦଶା କ'ଣ ନହେବ। ଘର ଲୋକ ତ ଚାଣ୍ଡାଳ, ଏତେ ଅବିଚାରୀ।" ବାଛୁରୀ କହିଲା, "ତୁ କ'ଣ କହୁଛୁ ମା, ସାନ ବୋହୂଟିକୁ କିଏ ହାଣିବ, କାହିଁକି ହାଣିବ? ଆମକୁ କିଏ ଆଉ ବଟା ବିରିରେ ଚୁନି ମିଶାଇ, ପେଜ ଗୋଳାଇ, କାଣ୍ଡିଆ କୁଣ୍ଡା ଢାଳି, ଯତ୍ନ କରି ଖାଇବାକୁ ପିଇବାକୁ ଦେବ?"

ମା ସେଇଠୁ ସାନ ବୋହୂର ବିବାହ ଘରଠୁ ଆରମ୍ଭକରି, ଗରିବ ଘର ଝିଅ ବୋଲି ତା ଉପରେ ସମସ୍ତେ ଅତ୍ୟାଚାର କରିବା କଥା, ପୁଣି କେଳା କେଳୁଣୀ କଥା ସବୁ ବୁଝାଇ ବାଛୁରୀକୁ କହିଲା। ପୁଣି, ରାଗିକରି କହିଲା, "ସାଧବ ପୁଅ ଭାରି ମୂର୍ଖ, ଆଜି ତାକୁ ମାରିବାକୁ ବସିଛି। ବୋହୂଟି ଯଦି ମରିଯିବ ନାଁ ସାଧବ ଘରର ସବୁ ଶିରୀ ତୁଟିଯିବ। ଅଇରି ଖପରା ବଇରି ବାଆ ହୋଇଯିବ। କେଳା କେଳୁଣୀ ପରା ତା'ର ପୁଅ ଝିଅ ପରି। ବୋହୂର ଠାକୁରାଣୀ ପାଖରେ ଅଚଳା ଭକ୍ତି ତ, ସେଥିପାଇଁ ତାକୁ ସାହାଯ୍ୟ କରିବାକୁ ମା ତାକୁ ପଠେଇଥିଲେ। ଅଦୋଷରେ ଶାଶୂ ଅଭିଷାପ ତା ପାଇଁ ଆଶୀର୍ବାଦ କରିଦେଇଛନ୍ତି ମା। ବୁଝିଲୁ, କେଳା କେଳୁଣୀ କଥା ଯଦି ଜନ ମଣିଷ ଜାଣିବେ ତେବେ ସେମାନେ ଉଭାନ୍ ହୋଇଯିବେ। ଆଜି ସାନ ବୋହୂଟି ତ ଭୋକରେ ରହିଛି, ତୁ ବି ସେମିତି ଭୋକରେ ମୋ ଠୁଁ ଅଲଗା ହୋଇ ରହ।"

ସାନ ପୁଅ ସ୍ତବ୍ଧ ହୋଇ ସବୁ କଥା ଶୁଣୁଥିଲା, ତା ନିଜ ଉପରେ ତା'ର ଭାରି ରାଗ ହେଲା। ନିଜକୁ ଧିକ୍କାରି ଧିକ୍କାରି ଉଠି କଟାରୀକୁ ଦୂରକୁ ଫୋପାଡ଼ିଦେଲା। କଟାରୀଟା ଗୋଟିଏ ପଥରରେ ବାଜି ଟାଇଁ କିନା ଶବ୍ଦ ହେଲା। ସାନ ବୋହୂର ଛାଇ ନିଦ ଭାଙ୍ଗିଗଲା। ସେ ଉଠିବାକୁ ଚାହିଁ ବି ଉଠି ପାରୁନ ଥିଲା। ସାରା ଦିନର ଖଟଣି, ଉପାସ, ସେଥିରେ ଏତେ ମନ ଦୁଃଖରେ ତାର ଦିହ ହାତ ଥରୁଥଲା। ସାନ ପୁଅ ଏଣେ ବାଛୁରୀକୁ ଫିଟାଇ ଗାଈ ପାଖରେ ରଖିଲା, ଛାଞ୍ଚୁଣିକୁ ନେଇ ରୋଷେଇ ଘର କବାଟ କୋଣରେ ରଖିଦେଲା। ସେ ସାନ ବୋହୂକୁ ଚାହିଁଲା। ଆହାଃ ବିଚାରୀ, ଦୁଃଖିନୀ, ନିରିମାଖୀ, ସାନ ବୋହୂଟି ଭୂଇଁରେ କାନିଟି ପାରି କହୁଣୀ ଉପରେ ମଥାଟି ରଖି ଗଛ ଉପରେ ଖସି ପଡ଼ିଥିବା କଅଁଳ ଲତାଟି ପରି ଭୂଇଁରେ ଲୋଟି ପଡ଼ିଛି, ତା'ରି ନିଜ ଦୋଷରୁ।

ସାନ ସାଧବ ପୁଅ ସାନ ସାଧବ ବୋହୂ ପାଖରେ ବସି ପଡ଼ି ତା ଲୁହଧୁଆଁ ମୁହଁ ଉପରେ କେରା କେରା ହୋଇ ଲାଗି ଯାଇଥିବା କେଶ ଗୁଡିକୁ ଧୀର ଭାବରେ ଶାଉଁଳାଇ ଦେଇ ଉଠେଇ ଦେଲା। ତା ମଥାଟି ଆଣି କୋଳ ଉପରେ ରଖି ଆକାଶର ସେହି ଗୋଟା ଜହ୍ନ ଆଡ଼େ ଚାହିଁ ଚାହିଁ ସାଧବାଣୀ ମୁହଁ ସହିତ ତୁଳନା କରୁଥିଲା, ଗେଲ କରି କରି।



# ରଙ୍ଗମହଲରେ
# ଗୁମାନୀ ରାଜା ଝିଅ କଥା

ଚପଳା ପରି ଚପଳା, ସୁବର୍ଣ୍ଣ ବରଣୀ, ମନମାନୀ, ଅଝଟି, ବେପରୁଆ ସେଇ ରାଜାଝିଅଟି, ଯିଏ ପାହାଡ଼ରେ ଚଢ଼ୁଥିଲା, ନଦୀରେ ପହଁରୁଥିଲା, ଘୋଡ଼ା ଦଉଡ଼ାଉଥିଲା, ଶଙ୍ଖ ପୋଖରୀରେ ବନଶୀ ପକେଇ ମାଛ ଧରୁଥିଲା। ରଙ୍ଗ ରଙ୍ଗିଆ ବେଶ ପୋଷାକରେ ରଙ୍ଗିଲା ପ୍ରଜାପତି ପରି ସାରା ଫୁଲବନ ଘୂରି ବୁଲୁଥିଲା, କନିଆ ଦେଖା ଗୋଧୂଳି ବେଳାରେ ଗୋଠ ଫେରନ୍ତା ଉଆସର ଗାଈଙ୍କ ଗହଣରେ ବାଛୁରୀମାନଙ୍କୁ ଗୋଡ଼ାଇ ଗୋଡ଼ାଇ ଧରି, ଢେର ସାରା ଗେହ୍ଲା କରୁଥିଲା। ଆପେ ପାଳିଥିବା ହରିଣ, ନେଉଳ, ଗୁଣ୍ଡୁଚିମୂଷା, ଠେକୁଆ, କୁକୁର, ଶଙ୍ଖି ବିଲେଇ, ମୟୂର, ହଂସ, ଶୁଆ, ଶାରୀ, ବାରମାସି ଚଢ଼େଇମାନଙ୍କ ପାଖରେ ଘୂରିଘୂରି କାହାକୁ ଧାନ କେଣ୍ଡା, କାହାକୁ ଗଜାବୁଟ, କାହାରିକୁ ପାଚିଲା କଇଁଚି କାକୁଡ଼ି, ନାଲିଲଙ୍କା, କାହାକୁ ଦାନା ମୁଠେ ଫଳଟେ ଫୁଲଟେ ଦେଇ, କାହା କାହା ସ୍ୱରକୁ ସବୁ ନକଲ କରି ହସିହସି ଲୋଟି ପଡ଼ୁଥିଲା। ନୀଳ ଆକାଶରେ ଲୋଟଣି ଭାଙ୍ଗୁଥିବା ଲୋଟଣିପାରାଙ୍କୁ ଚାହିଁଚାହିଁ ବିଭୋର ହେଇ ଯାଉଥିଲା।

ଆଜି ସେଇ ହାସ୍ୟଲାସ୍ୟମୟୀ ତେଜୀ ରାଜକୁମାରୀଟି ଏମିତି ଚୁପ୍‌ଟି ମାରି ବସିଯାଇଛି କାହିଁକି? ଦରଫୁଟା ଗୋଲାପ କଳି ଉପରେ ଶିଶିର ବିନ୍ଦୁ ପରି ତା'ର ନିଟୋଳ କପୋଳରେ ସ୍ୱେଦ ବିନ୍ଦୁ ଲାଗି ରହିଚି, ବିନ୍ଦୁ ବିନ୍ଦୁ ଚନ୍ଦନ ପାଟିରେ। ଦୁଇ ରେଖାଙ୍କିତ ସୁନ୍ଦର ଭ୍ରୂଲତା ମଝିରେ ସିନ୍ଦୁର ଟୋପାଟି ଝକ୍‌ଝକ୍ କରୁଚି। ଖଞ୍ଜନ ନୟନରେ କଜ୍ଜ୍ୱଳ ଧାର ସତେ ଅବା ଛଳ ଛଳ କରୁଥିବା ଲୁହ ଟୋପାମାନ ଅଟକାଇବା ପାଇଁ ବୃଥା ଚେଷ୍ଟା କରୁଚି। ମଥାରେ ଅଳକା ପନ୍ତି କେତକୀ ପାନ। କର୍ଣ୍ଣରେ ହୀରକ ଝୁମୁକା, ଗଳାରେ ଗଜମୋତି, ନବରତ୍ନ ଖଚିତ ସୁଦୃଶ୍ୟ ହାରମାନ। ବାହାରେ ଅନନ୍ତ ହସ୍ତରେ ସୁଶୋଭିତ ବାହିଚୁଡ଼ି କଙ୍କଣ, କତୁରୀ, ଫୁଲ ପଇଁଚ। ପାଦରେ ପାଉଁଜି, ପା ପଦ୍ମ, ରୁଣୁଝୁଣୁ ନୂପୁର। ଅଙ୍ଗୁଷ୍ଠିରେ ସୁବର୍ଣ୍ଣ ଝୁଣ୍ଟିଆ। ଝିଅଟି ସତେ ଅବା ରତ୍ନାଳଙ୍କାରରେ ଭୂଷିତ ସାକ୍ଷାତ ରତ୍ନାକରଙ୍କ ଜେମା!

ଝିଅଟି ଗମ୍ଭୀର ଭାବରେ ନିଜକୁ ଚାହିଁଥିଲା। ହାତ ଖୋଲି ଚାହିଁଲା, ସବୁ ଅଙ୍ଗୁଷ୍ଠିମାନଙ୍କରେ ନାନା ପ୍ରକାରର ମୁଦ୍ରିକା ଶୋଭା ପାଉଚି। ହସ୍ତପଦ୍ମ ଝଲମଲ କରୁଚି। ଆଉ ଟିକିଏ ଉପରକୁ ଅସାଡୁଆ ସୂତା। ଦୁବ ଫୁଲ ସବୁ ଗୁଡ଼ା ହୋଇ ବନ୍ଧା ହେଉଚି। ଅସରଳ ସୂତା ନବଘନ ପଇତା।

ବିବାହର ନିଦର୍ଶନ। ସଦ୍ୟ ବିଭାଘର ପରେ ସେ ବେଦୀରୁ ଉଠି ଆସି ଏଇଠି ବସି ଯାଇଚି। ଏବେ ମଧ୍ୟ ତା ମଥାରୁ ଦୁବ ଚାଉଳ ଖସିପଡୁଚି। ହସ୍ତଗଣ୍ଠି ପଡ଼ିଗଲା। ହୋମ ସରିଗଲା। ପଞ୍ଚୁଗ୍ରାସି ବି ସରିଗଲା। ଓଢ଼ଣା ତଳୁ ତା' ପାଖରେ ବସିଥିବା ସୁଦର୍ଶନ ବରଟିକୁ ଦେଖି ଦେଖି ସେ ମୁଗ୍ଧ ହେଇଯାଉଥିଲା। ତା'ର ତ ମନେ ହେଲାନି ଯଦିଓ ଓଢ଼ଣା ତଳୁ ମୁହଁ ଦେଖିପାରିବା ଏତେ ସମ୍ଭବ ନ ଥିଲା, ତେବେ ଆଗ୍ରହ ତ ଟିକିଏ ଥାଆନ୍ତା। ବର୍ତ୍ତମାନ ସେ ସବୁକଥା ବୁଝିପାରୁଛି। ଯେତେବେଳେ ରାଜକୁମାର ଦୁଇ ପକ୍ଷର ରାଜ ପରିବାରଙ୍କ ସମ୍ମୁଖରେ ବଜ୍ର ନିର୍ଘୋଷ ଶୁଣାଇ ଦେଇ ଚାଲିଗଲା ଯେ ରାଜକୁମାରୀ ଏଇଠି ରହିବେ, ସେ ତାଙ୍କୁ ସାଙ୍ଗରେ ନେବନାହିଁ। ସେ ବରଯାତ୍ରୀ ନେଇ ବାହୁଡ଼ିଗଲେ।

କେବଳ ରହିଗଲେ ବରପିତା। ଦୁଃଖରେ ମ୍ରିୟମାଣ କନ୍ୟାପିତାମାତାଙ୍କ ମଥାରେ ସତେ ଅବା ବଜ୍ରପାତ ହେଇଗଲା। ସାରା ପରିବାର ସହିତ ସାରା ରାଜ୍ୟରେ ହାହାକାର ଘୋଟିଗଲା। ମର୍ମନ୍ତୁଦ ଦୁଃଖରେ ଭାଙ୍ଗିପଡ଼ିଥିବା କନ୍ୟାମାତାପିତାଙ୍କୁ କ'ଣ ବୁଝାଇବେ ବରପିତା? ତାଙ୍କ ମୁହଁରେ ଭାଷା ନ ଥିଲା। ଏକ ମାତ୍ର ପୁତ୍ରର ଏପରି ଅମାନବିକ, ଅମାନୁଷିକ ବ୍ୟବହାରରେ ସେ ଲଜ୍ଜାରେ ମାଟିରେ ମିଶି ଯାଉଥିଲେ। କେହି ବି ବୁଝି ପାରୁ ନ ଥିଲେ ଏହାର ରହସ୍ୟ କ'ଣ? ଏ ହସଖୁସି ଆନନ୍ଦସମ୍ପଦରେ ଭରପୁର ନୌକାଟି କାହିଁକି ଅତଳ ଦୁଃଖ ଦରିଆର ମଝି ଗଣ୍ଡରେ ବୁଡ଼ିଗଲା?

କିନ୍ତୁ ବର୍ତ୍ତମାନ ଝିଅଟି ସବୁ ଅନୁମାନ କରିପାରୁଥିଲା। ସେ ଦିନର ସେଇ ଅଭିମାନୀ କିଶୋର ରାଜକୁମାର ଆଜି ତା'ର ଅଭିମାନର ପ୍ରତିଫଳ ପ୍ରକାଶ କରିଚି। ତାକୁ ପ୍ରତିବାଦୀ ଭାବରେ ଆହ୍ୱାନ କରିଚି। ସେ ଠିକ୍ ଭାବରେ ତା'ର ସମ୍ମୁଖୀନ ହେବ ନିଶ୍ଚୟ। ମାତ୍ର ରାଜକୁମାର ତ ଅନ୍ୟପ୍ରକାର ତା ଉପରେ ପ୍ରତିଶୋଧ ନେଇ ପାରିଥା'ନ୍ତେ। ସେ କ'ଣ ଏତିକି ଟିକିଏ ବୁଝିପାରିଲେନି ଯେ ଏଇଥି ପାଇଁ ଦୁଇଟି ପରିବାର ସହିତ ଦୁଇଟି ରାଜ୍ୟ କେତେ ହନ୍ତସନ୍ତ ନ ହେବେ। ଏହା ମଧ୍ୟ ଏତିକିରେ ସୀମିତ ନ ରହିପାରେ। ଆଜିର ଏଇ ଖିଆଲି ରାଜକୁମାର ଯିଏ କି ଦିନେ ସମଗ୍ର ରାଜ୍ୟର ଅଧିକାରୀ ହେବେ, ତାଙ୍କର ଅନ୍ତତଃ ସାଧାରଣ ଜ୍ଞାନ ଟିକିଏ ରହିବା ଉଚିତ୍ ନୁହେଁ? ନିଜର ପିଲାଳିଆ ଆତ୍ମସମ୍ମାନ ପାଇଁ ଆଜି ସେ କେଡ଼େ କେଡ଼େ ମହତ ଜନମାନଙ୍କର ଅସମ୍ମାନ ନ କଲେ? ତା'ର ଭାରି ରାଗ ଆସିଗଲା, ସେଦିନର କଥା ମନେ ପଡ଼ିଲା। ନିହାତି ଛୋଟ ଚଗଲୀ କିଶୋରୀଟିଏ କଲମି ତୋଟାରେ ସାଙ୍ଗମାନଙ୍କ ସହିତ ଲୀଳାଖେଳା କରୁଥିଲା। ପିଜୁଳି ଗଛରେ ଚଢ଼ି କେତେ ଖାଉଥିଲେ, କେତେ ଫିଙ୍ଗୁଥିଲେ ତଳେ ଥିବା ସାଙ୍ଗମାନଙ୍କୁ। ରାଜକୁମାର ମୁଗ୍ଧ ଭାବରେ ଚାହୁଁ ଚାହୁଁ ଘୋଡ଼ାର ଗତି ହୁଏତ ଶିଥିଳ ହେଇ ଆସିଥିଲା। ଝିଅଟି ଅଧାଖିଆ ପିଜୁଳି ଫାଳକ ତା ଉପରକୁ କଉତୁକରେ ଫୋପାଡ଼ି ଦେଇଥିଲା। ସବୁ ଝିଅ ଏକା ସଙ୍ଗରେ ହସି ଉଠିଲେ। ବିଭୋର କିଶୋର କୁମାରଟି ଚମକି ପଡ଼ି ନିହାତି ଅପଦସ୍ତ ହେଇ ରାଗି ଗଲାକି କ'ଣ। କହିଲା, "ଏମିତି ଝିଅକୁ ବାହା ହୁଅନ୍ତା, ଅଧାବିଭା ହେଇ ଛାଡ଼ି ଦିଅନ୍ତା।" ଇଏକି ଛାଡ଼ିବା ଝିଅ! ଉତ୍ତର ଦେଲା, "ଏମିତି ପୁଅକୁ ବାହା ହୁଅନ୍ତା, ବାପଘରେ ଥାଇ ପୁଅ କରନ୍ତା।"

ଏତିକି ମାତ୍ର କଥା, ସେତ ଅନେକ ଦିନ ତଳର କଥା। ସେ ବୁଝିପାରିଚି ଖିଆଲି କଉତୁକ ପାଇଁ ଆଜି ତାକୁ କେତେ ବଡ଼ ମୂଲ୍ୟ ଦେବାକୁ ପଡୁଛି। କେତେ ଦୁଃସାହସୀ ଜୀବନର ଏ ବିଡ଼ମ୍ବନା।

ରାଜା ପୁଅ କାହିଁକି ଏତିକି ଟିକିଏ ବୁଝିପାରିଲେନି ଯେ ସେ କେବଳ ନିଛକ ପିଲାଦିନିଆ ଦୁଷ୍ଟାମି। ଠିକ୍ ଅଛି। ତା ମନ ଅଭିମାନରେ ଭାରୀ ହେଇଗଲା। ମୁହଁରେ ସଂକଳ୍ପର କଠିନତା, ରାଜାପୁଅର ଏ ନିର୍ବୋଧତାକୁ ସେ ଠିକଣା ଜବାବ ଦେବ। ତା ନିଜେ କହିଥିବା କଥା ମଧ୍ୟ ସେ ରଖିବ ନିଶ୍ଚୟ।

ସେ ଝାଡ଼ିଝୁଡ଼ି ହେଇ ଉଠିଲା। ଯେଉଁଠାରେ ତା'ର ପିତାମାତା ଆଉ ଶ୍ୱଶୁର ଦୁଃଖରେ ମ୍ରିୟମାଣ ହୋଇ ସ୍ଥାଣୁ ପରି ବସି ରହିଥିଲେ ସେଠିକୁ ଯାଇ ସମସ୍ତଙ୍କର ପାଦଛୁଇଁ ବିନମ୍ର ପ୍ରଣତି ଜଣାଇଲା। ତାକୁ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ। ପ୍ରଥମେ କ୍ଷମା ଯାଚନା କରି, କିଛି ଗୋପନ ନ ରଖି ପିଲାଦିନର ସବୁ କଥା ଖୋଲିଦେଲା। ଆଉ କହିଲା, "ଆପଣମାନେ କେହି ବିଚଳିତ ହୁଅନ୍ତୁନାହିଁ। ଆପଣମାନଙ୍କର ସଦୟ ଅନୁଗ୍ରହ ଏବଂ ଆଶୀର୍ବାଦ ପାଇଲେ ମୁଁ ଏହି ଦୁଃଖ ଏବଂ ଲଜ୍ଜାକର ସମୁଦ୍ରକୁ ଅତି ସହଜରେ ଅତିକ୍ରମ କରିଯାଇପାରିବି। ତା ପରେ ସେ ଆହୁରି ଅନେକ କଥା କହିଲା। ସେଇ କଥା ସବୁ ସେ ଏମିତି ସୁନ୍ଦର, ମାର୍ଜିତ, ଶାଳୀନ ଅଥଚ ଦୃଢ଼ ଭାବରେ କହିଲା ଯେ ତାହା ସମସ୍ତଙ୍କ ହୃଦୟରେ ପ୍ରତିଫଳିତ ହେଲା। ଶ୍ୱଶୁର ତା କଥାରେ ସମ୍ପୂର୍ଣ୍ଣ ଭାବରେ ପ୍ରଭାବିତ ହୋଇଗଲେ ଏବଂ ତାକୁ ସବୁମତେ ସାହାଯ୍ୟ କରିବାର ପ୍ରତିଶୃତି ଦେଇ, ଆଶୀର୍ବାଦ କରି, ଖୁସି ଖୁସି ଆପଣା ରାଜ୍ୟକୁ ବାହୁଡ଼ିଲେ।

ଦିନ ଗଡ଼ିଗଡ଼ି ଚାଲିଲା। ଏ ବିଚିତ୍ର ସଂସାରରେ ଅନେକ ଅସମାପ୍ତ କାହାଣୀର ସମାପ୍ତ ହୁଏ, ଅନେକ ବିୟୋଗାତ୍ମକ ନାଟକ ନାଟକୀୟ ଭାବରେ ମିଳନାତ୍ମକ ଆଡ଼କୁ କର ମୋଡ଼େ। ସମୟ ତ ତା ବାଟରେ ଚାଲୁଥିଲା। ହଠାତ୍ ଦିନେ ରାଜାପୁଅ ଗଡ଼ରେ ଚହଳ ପଡ଼ିଗଲା। ଆସିବେ, ସେ ଆସିବେ, ବନାରସରୁ ପରୀସୁନ୍ଦରୀ ବାଈଜୀ ଆସୁଛନ୍ତି। ମାସକ ପୂର୍ବରୁ ରାଜାଙ୍କର ରଙ୍ଗମହଲ ସଜା ଚାଲିଥିଲା, ବହୁ ମୂଲ୍ୟ ହୀରକ ଖଚିତ ଝାଡ଼ସବୁ ଛାତରୁ ଝୁଲୁଥିଲା, ବହୁ ମୂଲ୍ୟବାନ ମୁକ୍ତା ମଣ୍ଡିତ ପରଦାମାନ ଧୀର ପବନରେ ଦୋହଲି ଦୋହଲି ତରଙ୍ଗାୟିତ ହେଉଥିଲା। ତଳେ ଦାମି ଦାମି ମଖମଲି ଗାଲିଚାମାନ ବିଛା ଯାଇଥିଲା।

ସେଇ ବାଟ ଦେଇ ଚାଲିଯାଇଥିବା ମଣିଷ ମହକରେ ମହକି ଯାଉଥିଲେ। ଭିତରୁ ବଂଶୀର ମୃଦୁମନ୍ଦ ସ୍ୱନ ସାଥିରେ ଘୁଙ୍ଗୁରର ରୁଣୁଝୁଣୁ ଧୀର ଭାବରେ ଶୁଣାଯାଉଥିଲା। ବିଭିନ୍ନ ବେଶ ପୋଷାକରେ ପରିଚାରିକାମାନେ ପରଦା ଭିତରେ ବେଳେବେଳେ ଛାଇଛାଇକା ଭାବରେ ଦୃଷ୍ଟିରେ ପଡୁଥିଲେ। ତାରଜାଲି ଭିତରେ ନାନା ପ୍ରକାରର ସୁଗନ୍ଧିତ ଶୋଭନୀୟ ଦୁଷ୍ପ୍ରାପ୍ୟ ଫୁଲକୁଣ୍ଡମାନ ସଜ୍ଜିତ ହୋଇ ରଖାଯାଇଥଲା। ମଜବୁତ୍ ଗେଟ୍ ପାଖରେ ବର୍ଦ୍ଦି ପିନ୍ଧା ଚାରିଜଣ ପହିଲିମାନ୍ ବନ୍ଧୁକ ହସ୍ତରେ ପହରା ଦେଉଥିଲେ। ଭିତରୁ କେହି ଆସୁ ନ ଥିଲେ କିମ୍ବା ବାହାରୁ କେହି ଯିବା ଆସିବା କରୁ ନ ଥିଲେ। ସର୍ବସାଧାରଣଙ୍କର ପ୍ରବେଶ ନିଷେଧ ଥିଲା, ଆଉ ଦୁଇଜଣ ପହିଲିମାନ ରଙ୍ଗମହଲର ଚାରି ପାଖରେ ପଇଁତରା ମାରୁଥିଲେ।

ସଞ୍ଜ ପ୍ରହର ଆସୁ ନ ଆସୁଣୁ ରଙ୍ଗମହଲ ଅନ୍ୟ ପ୍ରକାରର ରଙ୍ଗୀନ ଆଲୋକମାଳାରେ ସଜ୍ଜିତ ହୋଇ ଝଲମଲ କରୁଥିଲା। କେତେବେଳେ ଛାଇଆଲୁଅରେ ରଙ୍ଗମହଲ ବାହାରେ ରସିକଶେଖର କେତେ ଜଣଙ୍କୁ ହାତରେ ମଲ୍ଲିମାଳ ଗୁଡ଼ାଇ, ଅତର ମାଖି, ଟପ୍ପା ଚାରିପାଖରେ ଭୁଆ... ମଶାରୀ ଚାରି ପାଖରେ ମଶା... ଘୂରିଲା ପରି ଘୂରିବାର ଦେଖା ଯାଉଥିଲା। ଚନ୍ଦ୍ରଚର୍ଚ୍ଚିତ ନିଶିଥରେ ବିଜୁଳି

ଝଟକ ପରି ବେଳେବେଳେ ବାଈଜୀଙ୍କୁ ସଖୀଙ୍କ ଗହଣରେ ଖୋଲା ଛାତରେ ଦେଖିବାକୁ ମିଳୁଥିଲା, ସେ ବି କ୍ଷଣଟିଏ ପାଇଁ। ଚାମର ସଦୃଶ ଘନ କୃଷ୍ଣ କେଶଗୁଚ୍ଛ ନିତମ୍ବ ଉପରେ ଅଳସ ଭାଂଗୁଥିଲା। ଅପରୂପା ରୂପମୟୀ ଶୋଭାଙ୍ଗିନୀ ବାଈଜୀଙ୍କର କ୍ଷଣିକ ମାତ୍ର ସାକ୍ଷାତ ପାଇଁ ରାଜକୁମାରଙ୍କୁ ଉଆସର ଛାତ ଉପରେ ଘଣ୍ଟା ଘଣ୍ଟା ଧରି ଅପେକ୍ଷା କରିବାକୁ ପଡୁଥିଲା। ରାଜବାଟୀଠାରୁ ରଙ୍ଗମହଲର ଦୂରତା ବହୁତ ବେଶି ନ ଥିଲା। ଉଆସର ପରିଚାରିକାମାନଙ୍କଠାରୁ, ଖୋଜାମାନଙ୍କଠାରୁ, ଏମିତି କି ନିଜ ମାତାଙ୍କଠାରୁ ସେ ବାଈଜୀଙ୍କର ସୌନ୍ଦର୍ଯ୍ୟ ବର୍ଣ୍ଣନା ଶୁଣି ଶୁଣି ତାଙ୍କର ଦେଖିବାର ପିପାସା ବହୁଗୁଣିତ ହେଇଯାଇଥିଲା ଏବଂ ପ୍ରଥମ ଦେଖାରେ ସେ ପୁରାପୁରି ଘାଏଲ୍ ହେଇଯାଇଥିଲେ। ତାଙ୍କ ସହିତ ସାକ୍ଷାତ ପାଇଁ ସେ ଅତି ମାତ୍ରାରେ ବ୍ୟଗ୍ର ହୋଇଉଠିଲେ।

ରାଜକୁମାରଙ୍କର ଏଇ ଦୁର୍ବଳତା କଥା ରାଜାଙ୍କୁ ଅଛପା ନ ଥିଲା। ମହାରାଜଙ୍କ ଜ୍ଞାତସାରରେ ମହାରାଣୀଙ୍କର ଚତୁରୀ ବୁଦ୍ଧିମତୀ ବିଶ୍ୱାସୀ ଦାସୀ ସାହାଯ୍ୟରେ ମହାରାଣୀ ଓ ବାଈଜୀଙ୍କର ସାକ୍ଷାତ ହୋଇଥିଲା ଏବଂ ପୂର୍ଣ୍ଣପ୍ରାଣରେ ସେମାନେ ତାଙ୍କୁ ସମର୍ଥନର ପ୍ରତିଶୃତି ଦେଇଥିଲେ। ଏପରିକି ରଙ୍ଗମହଲର ସାଜସଜା ପରିପାଟିରେ ଯେ ତାଙ୍କର ପ୍ରଛନ୍ନ ହାତ ଥିଲା, ତାହା କାହାକୁ ଜଣା ନ ଥିଲା।

ଦିନେ ନଅରର ବୁଢ଼ୀ ମୁଦୁସୁଲି ଯିଏ ରାଜକୁମାରଙ୍କୁ ଇଛରାଇଛରି କରିଥିଲା, କୋଳରେ କାଖରେ କରି ପାଳିଥିଲା, ଆସି କହିଲା, "ମୋ ଧନ, ଆସି କେତେ ସରି ହେଲାଣି! ଏ ଦୁଃଖ ଆଉ ମୁଁ ଦେଖିପାରିବି ନାହିଁ। ଏ ବୟସରେ ବୋହୂପିଲାଟିକୁ ଛାଡ଼ି ଦେଇ ଆସିଲ, ଯେତେ ଯିଏ କହିଲେ ଆଉ ଗୋଟିଏ ହେଇଥା'ନ୍ତ ଭଲା, ସେଥିକି ତ ଅରାଜି ହେଲ। ମୁଁ କ'ଣ କରିବିଟି?" ଦେହ ମୁଣ୍ଡରେ ହାତ ବୁଲାଉ ବୁଲାଉ ବୁଢ଼ୀ ଲୁହ ଢାଳିଲା, ପୁଣି ଫୁସ୍‌ଫୁସ୍ କରି କହିଲା ମୁଁ ତୁମକୁ ଯେମିତି ହେଲେ ତା' ପାଖକୁ ନେଇଯିବି। କୁମାର ଶୋଇଲା ଶେଯରୁ ଉଠି ବସି ପଡ଼ିଲା। କହିଲା, "କେମିତି ଯିବି? ସେଠି ମାଛି ପଡ଼ିଲେ ନବଖଣ୍ଡ।" ବୁଢ଼ୀ କହିଲା, "ଉଆସର ସ୍ତିରୀଲୋକଙ୍କୁ ତ ମନା ହେଇପାରିବନି। ମୁଁ ତୁମକୁ ଝିଅ ବେଶ କରି ନେଇଯିବି, ଦି କାନ ପୁଅ ଜାଣିବନି।" ରାଜାପୁଅ ପିଣ୍ଡରେ ପ୍ରାଣ ପଶିଗଲା। ସେ ଗଳାରୁ ମୋତି ହାର କାଢ଼ି ବୁଢ଼ୀ ଗଳାରେ ଲମ୍ବାଇ ଦେଲା।

ସେଇ ରାତିରେ ବୁଢ଼ୀ ଆୟ ଅଳଙ୍କାର ମଣ୍ଡିତା ବୋହୂଟିଏ ସାଥିରେ ନେଇ, ଭେଟି ଦେବା ପାଇଁ ସୁନା ଚାଙ୍ଗୁଡ଼ିରେ ଫୁଲ ମାଳ ସହିତ ରତ୍ନହାରଟିଏ ଧରି ରଙ୍ଗମହଲରେ ପହଞ୍ଚିଲା। ବାଈଜୀ ଉଆସରୁ ଆସିଥିବା ଅତିଥିମାନଙ୍କୁ ଢେର ଆଦର ଅଭ୍ୟର୍ଥନା କରି ପାଖରେ ବସାଇଲେ। ସୁବର୍ଣ୍ଣ ପାତ୍ରରେ ସ୍ୱାଦିଷ୍ଟ ପାନୀୟ ପରଷିଦେଲେ। ବୋହୂଟି ତାଙ୍କୁ ଚାହିଁଚାହିଁ ବିଭୋର ହେଇ ଯାଉଥିଲା। ଆଣିଥିବା ରତ୍ନହାର ପିନ୍ଧାଇ ଦେଲା, ଫୁଲ ସବୁ ଗଭାରେ ସଜାଇ ଦେଲା। କିନ୍ତୁ କିଛି କଥା କହୁ ନ ଥାଏ। ଇଆଡ଼େ କ'ଣ ହେଇଛି ନା ରାଜକୁମାରଙ୍କ ମୁଦୁସୁଲି ବୁଢ଼ୀର ବାଈଜୀଙ୍କ ସହିତ ଆସିଥିବା ମାରଫତ୍‌ଦାର ବୁଢ଼ୀ ସାଙ୍ଗେ ଭାରି ପଟି ଗଲାଣି। ଯୋଗକୁ ଦୁହିଁଙ୍କ ନାଁ ଏକା ହେଇଥିବାରୁ ସେମାନେ ମିତ ବସିସାରିଲେଣି। ବୁଢ଼ୀକୁ ଢେର ଆଦର ସମ୍ମାନ ମିଳୁଛି। ହସଖୁସି କଥାବାର୍ତ୍ତା, ପାନ ଦିଆଦେଇରେ କେତେବେଳେ ଆସି ନିଶାର୍ଦ୍ଧ ହେଲାଣି। ବେଳ ଜଣା ପଡୁନି। ଏଥର ମୁଦୁସୁଲି ଫେରିବା ପାଇଁ ମେଲାଣି ମାଗିଲା। ଆଉ ଟିକେ ରହନ୍ତୁ, ଆଉ ଟିକେ ରହନ୍ତୁ କହି ମାରଫତ୍‌ଦାର ବୁଢ଼ୀ କଥାକୁ ଟାଳି ଦେଉଚି।

ବାଇଜୀ ମଧ୍ୟ ବୋହୂଟିକୁ ଆଉ ଟିକେ ରହନ୍ତୁ ବୋଲି ଆଗ୍ରହ ପ୍ରକାଶ କରୁଛନ୍ତି । କଥା କ'ଣ ହେଲା କି ରାଜକୁମାର ତ ବାଇଜୀଙ୍କୁ ଦେଖୁଛନ୍ତି ଆଉ ଦେଖୁଛନ୍ତି । ବାଇଜୀ ମଧ୍ୟ ତାଙ୍କ ଉପରେ ଏମିତି ସ୍ନେହଶ୍ରଦ୍ଧା ଅଜାଡ଼ି ସାରିଲେଣି ଯେ ରାଜକୁମାର ଗୋଟା ପଣେ ଭିଜିଗଲେଣି । ଏଥର ରାଜକୁମାର ତ ବାଇଜୀଙ୍କର କ୍ରୋଧକୁ ଭ୍ରୁକ୍ଷେପ ନ କରି, ଯାହା ଦଣ୍ଡ ଦେବେ ସହିବାକୁ ପ୍ରସ୍ତୁତ ହୋଇ ଆପଣାର ପରିଚୟ ପ୍ରକାଶ କରିଛନ୍ତି । ବାଇଜୀଙ୍କର କ୍ରୋଧ ଆଉ ସମ୍ଭାଳେ କିଏ? ଖୁବ୍ ରାଗିଯାଇ କହିଛନ୍ତି, "ମୁଁ ବାଇଜୀର କନ୍ୟା ହେଇପାରେ । ମାତ୍ର ମୁଁ ବାଇଜୀ ନୁହେଁ । ମୁଁ ଅନୂଢ଼ା ଶିକ୍ଷିତା ବନାରସ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ପଢ଼ି ସର୍ବୋଚ୍ଚ ନମ୍ବର ରଖି ସ୍ୱର୍ଣ୍ଣପଦକ ପାଇଚି । ଆପଣଙ୍କର ଯୋଗ୍ୟତା ମଧ୍ୟ ମୋତେ ଅଜଣା ନାହିଁ । ଆପଣଙ୍କ ପାଇଁ ମୁଁ ଅଯୋଗ୍ୟା ନୁହେଁ । ମାତ୍ର ଆପଣଙ୍କର ଏପରି ଭାବରେ ଏଠିକୁ ଆସିବା ମୁଁ ପସନ୍ଦ କରିପାରିବିନି କିମ୍ବା ଆପଣଙ୍କୁ ଗ୍ରହଣ କରିପାରୁ ନାହିଁ । କ୍ଷମା କରିବେ ।"

ରାଜକୁମାର ଅତି ବ୍ୟାକୁଳ ଭାବରେ ଅତି ବିନୟରେ ତାକୁ ବୁଝାଇବାକୁ ଆପ୍ରାଣ ଚେଷ୍ଟା କରିଛନ୍ତି । ଅତୀତର ସମସ୍ତ ଘଟଣା, କିଛି ଗୋପନ ନ କରି ଖୋଲି କହିଛନ୍ତି । ଶେଷରେ ସଫଳ ହେଇଚନ୍ତି । ଏଣିକି ଆମେ ବାଇଜୀ ନ କହି ତାଙ୍କ ନାମ ରଶ୍ମିରେଖା କହିବା । ରଶ୍ମିରେଖା ରାଜକୁମାରଙ୍କର ସବୁ କଥା ଶୁଣିସାରିବା ପରେ ନିଜର ଅବଶୋଷ ପ୍ରକାଶ କରିଚି । ପିଲାଳିଆ ଦୁଷ୍ଟାମି ପାଇଁ ଏହିଭଳି ବ୍ୟବହାର ନିହାତି ଅମାର୍ଜନୀୟ ଅପରାଧ । ରାଜକୁମାର ମଥାପୋତି ବସି ରହିଚନ୍ତି । ପ୍ରକୃତରେ ରଶ୍ମିରେଖା ଯାହା ସବୁ କହୁଚନ୍ତି ତା ଯଥାର୍ଥ । ସେଥିପାଇଁ ସେ ଅନୁତପ୍ତ । ମାତ୍ର କ'ଣ ଆଉ ଏବେ କରାଯାଇପାରେ?

ତା ପରର ଘଟଣା ଭାରି ସୁନ୍ଦର । ଭାରି ମଧୁର । ସେମାନେ ଦି'ଜଣ ରଙ୍ଗମହଲରେ ଗୋପୀନାଥ ମନ୍ଦିରକୁ ଯାଇଥିଲେ । ଫେରିଲା ବେଳେ ରଶ୍ମିରେଖା କପାଳରେ ବଡ଼ ସିନ୍ଦୁର ଟୋପା, ସିନ୍ଥାରେ ସିନ୍ଦୁର ଧାରା ଝଲମଲ କରୁଥିଲା । ରାଜାପୁଅର ନାମାଙ୍କିତ ମୁଦ୍ରିକା ଅନାମିକାରେ ଶୋଭା ପାଉଥିଲା । ପୁଅ ହାତରେ ମଧ୍ୟ ରଶ୍ମିରେଖାର ହୀରକ ମୁଦ୍ରିକା ଝଟକୁଥିଲା । ଉଆସର ସେହି ବୋହୂଟି ନିତିଦିନ ନିଶାର୍ଦ୍ଧରେ ଏଠିକୁ ଆସୁଥିଲା ଏବଂ ରାତି ଘଡ଼ିଏ ଥାଉଁ ଚାଲିଯାଉଥିଲା। ଏହି କଥା ବାହାରର କାହାରିକୁ ଜଣା ନ ଥିଲେ ମଧ୍ୟ ରାଜାରାଣୀଙ୍କୁ ଅଛପା ନ ଥିଲା। ରାଜାପୁଅ ମୁହଁରେ ଉଲ୍ଲାସର ଔଜଲ୍ୟ। ରଶ୍ମିରେଖା ତା ହୃଦୟକୁ ସୂକ୍ଷ୍ମ ରେଶମ ଡୋରିରେ ବାନ୍ଧି ସାରିଥିଲେ, ଗୋଟିପୋକ ପରି ଗୋଟି ପଣେ ।

ଏମିତି ବଡ଼ ଖୁସିରେ ବଡ଼ ଆନନ୍ଦରେ ଦିନ କଟି ଯାଉଥିଲା । ସେଦିନ ରାଜ୍ୟରେ ମହାରାଣୀଙ୍କର ମାନସିକ ପୂରଣର ଉତ୍ସବ ପାଳନ କରାଯାଇଥିଲା ସବୁ ମନ୍ଦିରରେ ଠାକୁର ଠାକୁରାଣୀଙ୍କୁ ପୂଜା ଅର୍ଚ୍ଚନା କରାଯାଉଥିଲା । ରାଜ୍ୟ ଲୋକେ ଭୁରିଭୋଜନ କଲେ । ଦରିଦ୍ର ଲୋକଙ୍କୁ ଅନ୍ନବସ୍ତ୍ର ପ୍ରଦାନ କରାଗଲା । ଯେଉଁ ବାର୍ତ୍ତା ରାଜାରାଣୀଙ୍କ ମନରେ ଅମୃତ ବର୍ଷା କଲା ସେଇ ଆନନ୍ଦ ସେ ନିଜ ଭିତରେ କିପରି ସମ୍ଭାଳି ରଖିପାରି ଥାଆନ୍ତେ? ଏମିତି ଖୁସି ଆନନ୍ଦରେ ସମୟ କଟିଯାଉଥିଲା ।

ହଠାତ୍ ଅନିବାର୍ଯ୍ୟ କାମ ପାଇଁ କୁମାରଙ୍କୁ ଦୁଇଦିନ ପାଇଁ ରାଜ୍ୟ ବାହାରକୁ ଯିବାକୁ ପଡ଼ିଲା । ସେଦିନ ବର୍ଷଣମୁଖର ନିଶାର୍ଦ୍ଧରେ ଦୁହେଁ ବସି ଢେର ସୁଖଦୁଃଖ ହେଲେ । ଦୁଇ ଦିନ ପାଇଁ ହେଉ

ପଛକେ ଆସନ୍ନ ବିଚ୍ଛେଦ ପାଇଁ ଦୁହିଁଙ୍କ ମନରେ ଅନେକ ଯନ୍ତ୍ରଣା । ବାହାରେ ବର୍ଷା । ଦୁହିଁଙ୍କ ଆଖିରୁ ଲୁହର ବର୍ଷା ହେଉଥିଲା, ସତେ ଅବା ଲୁହର ଝରଣାରେ ଦୁହେଁ ସ୍ନାନ କରୁଥିଲେ । ରାଜକୁମାର ତା ଉତ୍ତରୀୟଟି କାଢ଼ି ରଶ୍ମିରେଖାର ଲୁହ ପୋଛିବାର ବିଫଳ ପ୍ରୟାସ କରୁଥିଲା । ରଶ୍ମିରେଖା କହିଲା, "ତମେ ମୋ ଆଖିର ଆଢୁଆଳକୁ ଗଲେ ମୋତେ ନିଶ୍ଚୟ ଭୁଲିଯିବ ମୁଁ ଜାଣେ। ଅଗ୍ନି ସାକ୍ଷୀ ରଖି ସେଇ ଯେଉଁ ଅଭାଗିନୀ ରାଜକୁମାରୀଟିକୁ ବିଭା ହୋଇଥିଲ ତାକୁ ତ ତମେ ଭୁଲିଗଲ । କ୍ଷଣେ ହେଲେ ଚିନ୍ତା କରିନାହଁ ଆହା ବିଚାରୀ ଝିଅଟି କେମିତି ବଞ୍ଚିବ । ଯାହାର ତୁମ ବିନା ଅନ୍ୟ ଗତି ନାହିଁ, ଯାହାକୁ ତୁମେ ବିଭାହେଇ ଛାଡ଼ି ଆସିଚ । ସିଏ କେବେହେଲେ ଆଉ କାହାର ହୋଇପାରିବ ନାହିଁ । ହଉ, ଛାଡ଼ ସେ କଥା ।"

ସେ ଉଠି ଠିଆହେଲା । ରାଜକୁମାରଙ୍କ ନାମାଙ୍କିତ ସୁବର୍ଣ୍ଣ ମୁଦ୍ରିକା ସେ ପ୍ରଦୀପ ଶିଖାରେ ଦେଖାଇ ଉତ୍ତପ୍ତ କରି ରାଜକୁମାରଙ୍କୁ ରାଣ ଦେଇ କହିଲା, "ଯାକୁ ମୋ ଜାନୁରେ ଲଗାଇ ଦିଅ । ତା'ର ପୀଡ଼ା ଉପଶମ ହେଲେ ମଧ୍ୟ ପୋଡ଼ା ଚିହ୍ନ ଚିରଦିନ ପାଇଁ ରହିବ । କଦାଚ ଲିଭିବନାହିଁ । ଏହା ଆମର ଏକାନ୍ତ ନିଜସ୍ୱ, ଅନ୍ୟ କାହାର ଦୃଷ୍ଟିକୁ ଆସିବା ମଧ୍ୟ ସମ୍ଭବ ନୁହେଁ ।" ରାଜକୁମାର ତା'ର ଜାନୁରେ ଉତ୍ତପ୍ତ ମୁଦ୍ରିକା ଲଗାଇ ଦେଲେ ଏବଂ ଅନିଚ୍ଛା ସତ୍ତ୍ୱେ ଆପଣା ଜାନୁରେ ରଶ୍ମିରେଖାର ହାତ ଧରି ଚେଙ୍କା ଲଗାଇଲେ । ଏହା ସେମାନେ ଆନନ୍ଦରେ ପରସ୍ପରର ସନ୍ତକ ଭାବରେ ଗ୍ରହଣ କରିନେଲେ । ଧନ୍ୟ ସେ ପ୍ରେମ ମୋହନ ।

ରାଜା ପୁଅ ଦୁଇ ଦିନ ପାଇଁ ରାଜ୍ୟ ବାହାରକୁ ତ ଯାଇଥିଲେ କାର୍ଯ୍ୟ ଉପଲକ୍ଷ୍ୟେ । ତାଙ୍କୁ ଆଉ ଦୁଇ ଦିନ ପାଇଁ ସେଠାରେ ଅଟକି ରହିବାକୁ ପଡ଼ିଲା । ତାଙ୍କ ଦେହଟା ସେଠି ରହିଥିଲା, ମାତ୍ର ମନ ପ୍ରାଣ ସତେ ଯେମିତି ଏଠି ରହିଯାଇଛି । କାର୍ଯ୍ୟରେ ଫାଙ୍କେ ଫାଙ୍କେ, ନିଛାଟିଆ ଦି' ପ୍ରହରେ, ଅଳସ ଅପରାହ୍ନରେ, ଅବସନ୍ନ ତାରା ଭରା ନିଝୁମ ରାତିରେ ଲିଭିଲିଭି ଆସୁଥିବା ମଲାଜହ୍ନର ଛାଇ ଛାଇରେ ଉଦାସ ରାଜକୁମାର ତାଙ୍କର ସେଇ ପୋଡ଼ା ଚିହ୍ନ ଉପରେ ବାରମ୍ବାର ହାତ ସାଉଁଳୁ ଥିଲେ । ଦରଜ ଏତେ ବେଶି ନ ଥିଲା, ପୀଡ଼ା କମି କମି ଆସିଲାଣି । ଅନେକ ଆଶା ଅନେକ ଭଲପାଇବା ନେଇ ସେ ଯେତେବେଳେ ଗଡ଼ରେ ପହଞ୍ଚିଲେ ରଙ୍ଗମହଲ ଶୂନ୍ୟ ହେଇ ସାରିଥିଲା ।

ସେ ଯେଉଁଦିନ ଗଲେ ଠିକ୍ ସେଇ ଦିନ ସେଇ ଅନ୍ଧକାର ନିଶିର ନିଶବ୍ଦ ପ୍ରହରରେ ସୁନ୍ଦରୀ ବାଈଜୀ ତାଙ୍କ ସଖୀମାନଙ୍କ ସହିତ, ତାଙ୍କ ପରିଚାରିକାମାନଙ୍କ ସହିତ, ଯେମିତି ଆସିଥିଲେ ସେମିତି କୁଆଡ଼େ ଉଭାନ ହୋଇଗଲେ, କେହି ଜାଣିପାରି ନ ଥିଲେ । ସକାଳ ପର୍ଯ୍ୟନ୍ତ ଆଲୋକମାଳାରେ ସଜ୍ଜିତ ହୋଇ ରଙ୍ଗମହଲ ସେମିତି ହସୁଥିଲା । ରାଗରାଗିଣୀର ମୃଦୁଗୁଞ୍ଜନ ଶୁଣାଯାଉଥିଲା, ପରେ ଜଣାପଡ଼ିଲା ଯେ ତାହା ଥିଲା କଳଗାଉଣା । ରାଜାଙ୍କ ପାଖକୁ ଖବର ଗଲା, ରାଜା ନିଜେ ଆସି ତଦାରଖ କଲେ । ରାଜକୁମାର ଆସି ସମସ୍ତ କଥା ଶୁଣିଲେ, ତାଙ୍କ ମଥାରେ ସତେ ଅବା ବଜ୍ରପାତ ହେଲା । ପାଗଳ ପରି ସେ ରଙ୍ଗମହଲରେ ଘୂରି ବୁଲୁଥିଲେ। ଯାହା ଯୋଉଠି ଯେମିତି ଥିଲା ସବୁ ସେମିତି ଥିଲା, ମାତ୍ର କେହି ବି ମଣିଷ ନ ଥିଲେ ।

ରାଜକୁମାର ବିଷର୍ଣ୍ଣ ହେଇ ଫେରିଲେ । ମନ୍ଥର ଗତିରେ ଦିନ ପରେ ଦିନ ଗଡ଼ି ଯାଉଥିଲା । ତାଙ୍କର କୋଉଥିରେ ମନ ଲାଗୁ ନ ଥିଲା । ସେଇ ଦିନଠାରୁ ଆଜି ପର୍ଯ୍ୟନ୍ତ ସେ ଆଉ ରଶ୍ମିରେଖା

ନାଁର ଝିଅଟିର କୌଣସି ଖବର ପାଇ ନ ଥିଲେ । ଅନେକ ପ୍ରଯତ୍ନ, ଅନେକ ଚେଷ୍ଟା, ଅନେକ ଖୋଜଖବର ନେବା ପରେ ମଧ୍ୟ । ରାଜା ବି ଖୋଜାଖୋଜି ପାଇଁ କୌଣସି ତ୍ରୁଟି କରି ନ ଥିଲେ । ବନାରସର ସେ ଯେଉଁ ଠିକଣା ଦେଇଥିଲା ସେଠୁ ମଧ୍ୟ କିଛି ସନ୍ତୋଷଜନକ ଖବର ମିଳିଲା ନାହିଁ । ସେ ନାଁର ଝିଅଟିର କଥା ଦୂରେ ଥାଉ ସେଇ ଆକୃତିର ଝିଅଟି କଥା କେହି କହିପାରି ନ ଥିଲେ ।

କାର୍ଯ୍ୟର ଫାଙ୍କେ ଫାଙ୍କେ ନିଛାଟିଆ ଦ୍ୱିପ୍ରହରେ, ଅଳସ ଅପରାହ୍ନରେ, ଅବସନ୍ନତା ଭରା ନିଝୁମ ରାତ୍ରିରେ, ଲିଭିଲିଭି ଆସୁଥିବା ମଲାଜହ୍ନର ଛାଇଛାଇରେ, ପାହାନ୍ତି ପ୍ରହରରେ, ଉଦାସ ରାଜକୁମାର ତାଙ୍କର ସେଇ ପୋଡ଼ା ଚିହ୍ନ ଉପରେ ବାରମ୍ବାର ସ୍ପର୍ଶ କରୁଥିଲେ । ପହିଲି ପ୍ରଣୟର ପ୍ରଥମ ପ୍ରତିଶ୍ରୁତି ତାଙ୍କୁ ଆନମନା କରି ଦେଉଥିଲା । ସେଇ କେତୋଟି ଦିନର ପ୍ରତିଟି ମୁହୂର୍ତ୍ତ ତାଙ୍କ ଜୀବନରେ ଯେଉଁ ସ୍ୱପ୍ନମହଲ ଗଢ଼ିଥିଲା ତା' ଅକସ୍ମାତ ଝଡ଼ରେ ଏମିତି ଧୂଳିସାତ ହେଇଗଲା, ମାଟିରେ ମିଶିଗଲା । ତାଙ୍କର ସମସ୍ତ ଆଶା, ସମସ୍ତ ଆକାଂକ୍ଷା ଚିରଦିନ ପାଇଁ ଲୁପ୍ତ ହେଇଗଲା ପରି ଲାଗିଲା । ଆନନ୍ଦ ଉତ୍ସବ ଖୁସିରେ ଝଲମଲ ମୁହଁ ଉପରେ ସବୁବେଳେ ବିଷର୍ଣ୍ଣତାର କଳା ବାଦଲ ଢାଙ୍କି ହୋଇ ରହିଲା। ଯେମିତି ଦିନ କଟି ଯାଉଥିଲା, ସମୟ ତ କାହାରିକୁ ଅପେକ୍ଷା କରେନାହିଁ।

ସେଦିନ ମହାରାଣୀଙ୍କ ଡାକରା ପାଇ ରାଜକୁମାର ମନ୍ତ୍ରଣା କକ୍ଷରେ ପ୍ରବେଶ କଲେ । ରାଜା ବହୁତ ଗମ୍ଭୀର ଜଣାପଡୁଥିଲେ । ତାଙ୍କୁ ବସିବାକୁ ନିର୍ଦ୍ଦେଶ ଦେଇ ରାଜା ସେଇପରି ଗମ୍ଭୀର ଭାବରେ କହିଲେ, "ତୁମେ ଆମ୍ଭମାନଙ୍କୁ ଏପରି ଭାବରେ ଅପମାନିତ କଲ କାହିଁକି? ଯେଉଁପରି ଭାବରେ..."। ଏତିକି କହୁକହୁ ରାଜାଙ୍କ କଣ୍ଠ ରୁଦ୍ଧ ହୋଇଗଲା । ରାଜକୁମାର କିଛି ବୁଝି ନ ପାରି ଆଶ୍ଚର୍ଯ୍ୟ ହୋଇ ମାତାଙ୍କ ଆଡ଼କୁ ଚାହିଁଲେ । ରାଣୀ ମା' କହିଲେ, "ତୁମ ଶ୍ୱଶୁରଙ୍କ ରାଜ୍ୟରୁ ଏହି ମନ୍ତ୍ରୀ ମହାଶୟ ସୁସମାଚାର ନେଇ ଆସିଛନ୍ତି ଯେ ତୁମେ ଏକ ପୁତ୍ର ସନ୍ତାନ ଦ୍ୱାରା ଆଶୀର୍ବାଦିତ ହୋଇଚ । ସେମାନେ ପୂର୍ବର ସମସ୍ତ ଅପମାନ ଭୁଲି ଯାଇ ଆମର ପୁତ୍ରବଧୂ ଏବଂ କୁଳନନ୍ଦନକୁ ଏଠିକୁ ପଠାଇବାର ଅନୁମତି ପାଇଁ ପ୍ରାର୍ଥୀ ହୋଇଛନ୍ତି । ଆମେମାନେ ମଧ୍ୟ ମନ ପ୍ରାଣରେ ତାଙ୍କୁ ସ୍ୱାଗତ କରିବାକୁ ଚାହୁଁ ।"

ରାଜକୁମାର କ୍ରୋଧରେ ଅଗ୍ନିଶର୍ମା ହୋଇ ଠିଆ ହୋଇପଡ଼ିଲେ । ସହଜେ ସେ ତ ରଶ୍ମିରେଖା ସ୍ମୃତିରେ ଭିତରେ ଜଳୁଥିଲେ । ଏବେ ଭିତରର ସେଇ ଦୁଃଖଦାୟକ ଅଗ୍ନି ନାସା କର୍ଣ୍ଣ ଦେଇ ଉଦ୍‌ଗୀରଣ ହେଲା । ରଶ୍ମିରେଖା ସ୍ଥାନରେ ସେ ଆଉ କାହାକୁ କଳ୍ପନା ମଧ୍ୟ କରିପାରୁ ନ ଥିଲେ । ସବୁବେଳେ ଚୁପ୍ ଚୁପ୍ ରହୁଥିବା ସୁଧାର ରାଜକୁମାରଟି ଆଜି ବାହାର ରାଜ୍ୟର ଜଣେ ଗଣ୍ୟମାନ୍ୟ ଅତିଥିଙ୍କ ସମ୍ମୁଖରେ ମାତାପିତାଙ୍କ ପ୍ରତି କଠୋର ବାକ୍ୟ କହିବାକୁ କୁଣ୍ଠିତ ହେଲେନାହିଁ । ସେ ବଡ଼ ପାଟିରେ କହିଲେ, "ସେଇ ଉଦ୍ଧତ ଝିଅ ଏହା ହିଁ କରିପାରେ । ଅପ୍ରତ୍ୟାଶିତ ଭାବରେ ମୋ ଉପରେ ଲାଞ୍ଛନା ଲଗାଇବାର ଚେଷ୍ଟା କରିପାରେ । ମୁଁ ଯେ ତାକୁ ତ୍ୟାଗ କରି ଆସିଚି ଏହାର ସୁଯୋଗ ନେଇ ସେ ତା'ର ସମସ୍ତ କଳଙ୍କ ମୋ ଉପରେ ଢାଳିବାକୁ ଚାହିଁଚି । ତା'ର ସ୍ପର୍ଦ୍ଧା ତ କିଛି କମ୍ ନୁହେଁ । ଏପରି କୁତ୍ସିତ ମନଗଢ଼ା କାହାଣୀ ଉପସ୍ଥାପିତ କରି ସେ କ'ଣ ଚାହେଁ, ତା' ଆପଣମାନେ ହିଁ ବିଚାର କରନ୍ତୁ । ବିବାହ ଦିନଠାରୁ ତାଙ୍କ ରାଜ୍ୟକୁ ଥରଟିଏ ପାଇଁ ମଧ୍ୟ ମୁଁ ଯାଇନାହିଁ । ତାଙ୍କୁ କ୍ଷଣଟିଏ ପାଇଁ ମଧ୍ୟ ଚାହିଁନାହିଁ ।"

ତାଙ୍କ କଥାକୁ ସେଇଠି ରଖି ସେ ରାଜ୍ୟର ମନ୍ତ୍ରୀ କହିଲେ, "କିନ୍ତୁ ଆମମାନଙ୍କର ସମ୍ମାନନୀୟା ରାଜକୁମାରୀ ଦୃଢ଼ତାର ସହିତ କହୁଚନ୍ତି ଯେ ସେ ଆପଣଙ୍କର ସନ୍ତାନର ଜନନୀ। କାଲି ଭରା ରାଜସଭାରେ ସେ ଏହାର ପ୍ରମାଣ ଦେବେ। ଆପଣ ତାଙ୍କୁ ଗ୍ରହଣ କରିବାକୁ ବାଧ୍ୟ।" ତାଚ୍ଛଲ୍ୟର ହସ ହସି ରାଜକୁମାର କହିଲେ, "ଆଚ୍ଛା! ତାଙ୍କର ଠିକଣା ଜବାବ ଦେବାକୁ ମୁଁ ସେଇ ସମୟକୁ ଅପେକ୍ଷା କରୁଚି।" ଏହା କହି ରାଜକୁମାର ସେଇ କକ୍ଷରୁ ଝଡ଼ ବେଗରେ ବାହାରି ଚାଲିଗଲେ। ଯାଉଯାଉ ଶୁଣିଲେ ରାଜା କହୁଚନ୍ତି, "ଯଦି ରାଜକୁମାରୀ ଏହା ପ୍ରତିପାଦିତ କରିପାରନ୍ତି ତା'ହେଲେ ଭଲ କଥା। ଆମ ରାଜ ସଭାରେ କେହି ମୂର୍ଖ ଅବା ଅବିବେକୀ ନୁହଁନ୍ତି ଯେ ଉପରେ ଉପରେ ଭାସିଯିବେ। ମୁଁ ଏବେ ରାଜକୁମାରୀଙ୍କ ସହିତ ତାଙ୍କ ପିତାମାତାଙ୍କୁ ମଧ୍ୟ ନିମନ୍ତ୍ରଣ କରୁଚି।"

ଆଜି ଭରା ରାଜସଭା ଜମଜମାଟ ଥିଲା। ପାତ୍ରମନ୍ତ୍ରୀମାନଙ୍କ ସହ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଆପଣା ଆପଣା ଆସନ ଅଳଂକୃତ କରିଥିଲେ। ରାଜାରାଣୀ ତାଙ୍କ ପାଇଁ ଉଦ୍ଦିଷ୍ଟ ସିଂହାସନରେ ବିଜେ କରିଥିଲେ। ତାଙ୍କ ପାଖରେ ରାଜକୁମାର। ଏ ପାଖରେ ବିଶେଷ ଭାବରେ ସଜ୍ଜିତ ଦୁଇଟି ଆସନରେ ଉପବେଶନ କରିଥିଲେ କନ୍ୟାର ପିତାମାତା, ଯାହାଙ୍କୁ ବିପୁଳ ସମାରୋହରେ ରାଜାରାଣୀ ଦୁହେଁ ପାଛୋଟି ଆଣିଥିଲେ। ରାଜଦାଣ୍ଡରେ ରାଜକୁମାରୀ ସଖୀମାନଙ୍କ ଗହଣରେ ହାନ୍ଦୋଳାରୁ ଓହ୍ଲାଇ ରାଜା, ରାଣୀ ତଥା ସମସ୍ତଙ୍କୁ ମାନ୍ୟ କଲେ। ଝିଲିମିଲି ରେଶମୀ ଓଢ଼ଣାରେ ତାଙ୍କର ମୁଖ ଆବୃତ ଥିଲା। ରାଜକୁମାରୀ ସଖୀମାନଙ୍କ ଗହଣରେ ଯାଇ ଟେରା ବାଡ଼ ଭିତରେ ବସିଲେ।

ରାଜକୁମାର ତାଙ୍କ ଶାଶୂ ଶ୍ୱଶୁରଙ୍କୁ ମଥା ନୁଆଇଁ ପ୍ରଣାମ କଲେ ସତ, ମାତ୍ର ରାଣୀ କୁନି ପୁଅଟିକୁ ଅତି ଆଗ୍ରହରେ କୋଳରେ ଧରିଥିବା ଦେଖି ଘୃଣାରେ ତାଙ୍କ କପାଳ ନଇଁ ଯାଉଥିଲା। ରାଜକୁମାରୀ କାହା ପାପ ଆଣି ତାଙ୍କ ମଥାରେ ଥାପି ଦେବାର ବ୍ୟର୍ଥ ଚେଷ୍ଟା କରୁଛି। ସେ ତାକୁ ଉଚିତ୍ ଶିକ୍ଷା ଦେବା ପାଇଁ ମନ ସ୍ଥିର କରିସାରିଛନ୍ତି। ସାଧାରଣ ଶିଷ୍ଟାଚାର ବିନିମୟ ହୋଇ ସାରିବା ପରେ ପ୍ରକୃତ ଘଟଣାର ଅବତାରଣା କରାଗଲା। ରାଜକୁମାର ହିଁ କଥା ଆରମ୍ଭ କଲେ କ୍ଷମା ଯାଚଞ୍ଚା ସହ। ଶଶୁରଙ୍କ ଆଡ଼କୁ ସିଧା ଭାବରେ ଦୃଷ୍ଟି ଦେଇ କହିଲେ, "ମୁଁ ଭାବୁଚି ଏତେବେଳକୁ ଆଉ କେହି ଅବିଦିତ ନ ଥିବେ ଯେ ମୁଁ କାହିଁକି ଏମିତି ଭୁଲ କରିବାକୁ ଗଲି। ତା' ପରେ ମୁଁ କେବେହେଲେ ଆପଣଙ୍କ ରାଜ୍ୟକୁ ଥରଟିଏ ପାଇଁ ଯାଇଚି କି? ଆପଣଙ୍କ ରାଜକୁମାରୀଙ୍କ ସହ ମୋର କିଛି ସମ୍ପର୍କ ଥିଲା କି ଏତେଦିନ?"

ସେମାନେ ଅସମ୍ମତି ପ୍ରକାଶ କଲେ। ରାଜକୁମାର ରାଗ ଏବଂ ଘୃଣାରେ ପୁଣି କହିଲେ, "ତେବେ ଆଉ କାହାର ପାପ ଆଣି ମୋ ମଥାରେ ଚାପି ଦେବାର ହୀନ ପ୍ରଚେଷ୍ଟା ଆପଣମାନେ କଲେ କାହିଁକି? ରାଜକୁମାରୀଙ୍କର ପ୍ରରୋଚନାରେ? ସାଧାରଣ ଆତ୍ମସମ୍ମାନ ଜ୍ଞାନ ଏବଂ ସାମାନ୍ୟତମ ମୁଖଲଜ୍ଜା ଆପଣମାନଙ୍କର ରହିବା ଉଚିତ୍ ବୋଲି ଭାବିବା ମୋର କ'ଣ ଅପରାଧ?" ରାଜକୁମାର ରାଗରେ କୁହୁଳୁଥିଲେ। ଏ ପ୍ରଶ୍ନରେ ରାଜକୁମାରୀଙ୍କର ପିତା ମାତାଙ୍କ ମୁହଁରେ ଅନୁଶୋଚନା ଅଥବା ଲଜ୍ଜାର ଲେଶ ମାତ୍ର ଚିହ୍ନ ନ ଥିଲା। ମହାରାଜା ମହାରାଣୀ ମୁରୁକି ମୁରୁକି ହସୁଥିଲେ।

ମହାରାଜା ଟିକେ ଇଆଡ଼କୁ ଚାହିଁ ରାଜକୁମାରୀଙ୍କୁ ସମ୍ବୋଧନ କରି କହିଲେ, "ମାଆ, ରାଜକୁମାର ଯାହା ସବୁ କହିଲେ ତମେ ଶୁଣିପାରୁଚ ନିଶ୍ଚୟ। ତୁମର କିଛି କହିବାର ଅଛି?"

ରାଜସଭା ନିସ୍ତବ୍ଧ ହୋଇ ରହିଥିଲା – ଛୁଞ୍ଚି ପଡ଼ିଲେ ଶବ୍ଦ ହେବ। ରାଜକୁମାରୀ କ'ଣ କହିବେ ଶୁଣିବା ପାଇଁ ସମସ୍ତେ ଉତ୍କଣ୍ଠ ହୋଇ ଚାହିଁ ରହିଥିଲେ। ରାଜକୁମାରୀ କିଛି କହିଲେନି। ମାତ୍ର ତାଙ୍କର ଜଣେ ସଖୀ ଆସି ରାଣୀମାଆଙ୍କ କାନେ କାନେ କ'ଣ ସବୁ କହିଲା। ରାଣୀ ରାଜାଙ୍କୁ କିଛି କହିଲେ। ରାଜକୁମାରଙ୍କ ଆଡ଼କୁ ଦୃଷ୍ଟି ନିକ୍ଷେପ କରି କହିଲେ, "ତୁମେ ଯେ ତାଙ୍କ ସହିତ ସମ୍ପର୍କ ରଖିଥିଲ ତା'ର ପ୍ରମାଣ ତାଙ୍କ ପାଖରେ ଅଛି।" କୁମାର ଅତି ମାତ୍ରାରେ ରାଗିଯାଇ କହିଲେ, "ତା' ପ୍ରତିପାଦିତ କରିବାକୁ ଏତେ ଡେରି କରୁଚନ୍ତି କାହିଁକି?" ଉତ୍ତରରେ ରାଣୀମାତା କହିଲେ, "ତୁମ ପାଖରେ ମଧ୍ୟ ଅଛି। ତମେ ମୋ ସହିତ ଆସ।" ଏହା କହି କୁମାରକୁ ନେଇ ରାଣୀ ଦରବାର ସଂଲଗ୍ନ କୋଠରୀକୁ ଆସିଲେ ଏବଂ ତାଙ୍କ ଜାନୁର ବସ୍ତ୍ର ଉତ୍ତୋଳନ କରି ନାମାଙ୍କିତ ମୁଦ୍ରିକା ଦ୍ୱାରା ଅଙ୍କିତ ଚିହ୍ନ ଦେଖିଲେ।

ରାଣୀ ହସି ହସି କହିଲେ, "ତୁମ ସହିତ ତାଙ୍କର ଯଦି କୌଣସି ସମ୍ପର୍କ ନ ଥିଲା, ତା ହେଲେ ସେ ଏ ଚିହ୍ନ କଥା ଜାଣିଲେ କେମିତି?" ହର୍ଷବିଷାଦ ଏବଂ ବିସ୍ମୟରେ ରାଜକୁମାରଙ୍କର ବଚନ ସ୍ଫୁରୁ ନ ଥିଲା। ତାଙ୍କ ମନ ଭିତରେ ବିଭିନ୍ନ ପ୍ରଶ୍ନର ତରଙ୍ଗମାନେ ତରଙ୍ଗାୟିତ ହେଉଥିଲେ। ରଶ୍ମିରେଖା ସହିତ ଏଇ ରାଜକୁମାରୀର ପରିଚୟ ହୋଇଥାଇ ପାରେ...। ସେ ତାଙ୍କଠାରୁ ସମସ୍ତ ବିଷୟ ଅବଗତ ହୋଇ ପାରିଥା'ନ୍ତି। ସେ ଦ୍ୱିଧାରେ ପଡ଼ି ଦରବାରକୁ ଆସି ମୁଦୁସୁଲି ହାତରେ ଧରିଥିବା ତାଙ୍କ ଉତ୍ତରୀୟ ଏବଂ ନାମାଙ୍କିତ ମୁଦ୍ରିକା ଦେଖିଲେ। ଭାବିଲେ ଏସବୁ ରଶ୍ମିରେଖା ପାଖରୁ ସଂଗ୍ରହ କରାଯିବା କିଛି ଅସମ୍ଭବ ନୁହେଁ। ସେ ଯାହା ହଉ, ଏ ରାଜକୁମାରୀ ଠାରୁ ରଶ୍ମିରେଖାର ସମ୍ବାଦ ତ ମିଳିଯାଇ ପାରିବ।

ସେ କାହାରିକୁ କିଛି ନ କହି ଟେରା ବାଡ଼ ଭିତରକୁ ହଠାତ୍ ପଶି ଆସିଲେ। ରାଜକୁମାରୀ ଅପ୍ରସ୍ତୁତ ଭାବରେ ବସିଥିଲେ। ତାଙ୍କ ଓଢ଼ଣୀ ଖସି ପଡ଼ିଥିଲା। ଅତର୍କିତ ଭାବରେ ପ୍ରବେଶ କରିଥିବା ରାଜକୁମାରଙ୍କୁ ଚାହିଁ ଚମକି ପଡ଼ି ତାଙ୍କ ପାଦ ଛୁଇଁ ପ୍ରଣାମ କରିବାକୁ ଝୁଙ୍କି ପଡ଼ିଲେ ରାଜକୁମାରୀ। ରାଜକୁମାର ତାଙ୍କୁ ଟେକି ନେଇ ତାଙ୍କ ମୁହଁକୁ ଅଜସ୍ର ଗେଲରେ ଛାଇଦେଲେ। ସେଠି ଆଉ କିଏ ସବୁ ଅଛନ୍ତି ଏ କଥା ସେ ଭୁଲି ସାରିଥିଲେ। ମୃଦୁ ମୃଦୁ ହସୁଥିବା ରାଜକୁମାରୀଙ୍କ ମୁହଁକୁ ପୂର୍ଣ୍ଣ ଦୃଷ୍ଟିରେ ଚାହିଁ ଚାହିଁ ରାଜକୁମାର କହିଲେ, "ତା ହେଲେ ତମେ ଜିଣିଗଲ।" ରାଜକୁମାରୀ କିଛି ନ କହି କେବଳ ଅଳପ ଅଳପ ହସୁଥିଲେ। ଏତିକିବେଳେ ରାଣୀମାତା କୁନି କୁମାରଟିକୁ ଆଣି ରାଜକୁମାରଙ୍କର ହାତକୁ ବଢ଼ାଇ ଦେଲେ। ପରମ ଆହ୍ଲାଦରେ ସେ ତାଙ୍କୁ ଅତି ସତର୍କତାର ସହିତ ଛାତିରେ ଲଗାଇ ପିତୃତ୍ୱର ଗୌରବରେ ଗୌରବାନ୍ୱିତ ହେଲେ।



# ମଣିଚୂଳ ନାଗ କଥା

ବହୁତ ବହୁତ ପୁରୁଣା ଦିନ କଥା । ସାତ ପାହାଡ଼ ଆର ପାରେ, ସାତ ନଦୀର ମଝିଆମଝି ଗୋଟିଏ ଦ୍ୱୀପ ଥିଲା । ଲବଙ୍ଗ ଦ୍ୱୀପ । ସେଇଠି ଗୋଟିଏ ସୁନ୍ଦର ରାଜ୍ୟ । ରାଜା ମନ୍ତ୍ରୀ ଦୁହିଁଙ୍କୁ ଦୁହେଁ ବଳି ପ୍ରବୀଣ, ଦୁହିଁଙ୍କ ଭିତରେ ଅଭେଦ୍ୟ ପ୍ରୀତି । ଯେଉଁ କାମଟି କରନ୍ତି ଦୁହେଁ ବିଚାର ଆଲୋଚନା କରନ୍ତି । ରାଜ୍ୟ ବଡ଼ ସୁରୁଖୁରୁରେ ଚାଲୁଥାଏ ।

ରାଜା ମନ୍ତ୍ରୀଙ୍କର ସ୍ନେହ ଭାବ ଅତୁଟ ରହିବାରେ ଗୋଟିଏ କାରଣ ଅଛି । ଥରେ ରାଜା ମନ୍ତ୍ରୀପରିଷଦମାନଙ୍କ ସହିତ ନୌକା ବିହାରକୁ ଯାଇଥିଲେ । ବହୁତ ଆନନ୍ଦ ହସ କୋଳାହଳରେ ନୌକାରେ ମୌଜମସ୍ତି କରି ଚାଲିଛନ୍ତି । କେତେବେଳେ ପଶ୍ଚିମ ପଟୁ କଳାହାଣ୍ଡିଆ ମେଘ ଖଣ୍ଡିକ ଉଠି ସାରା ଆକାଶକୁ ଢାଙ୍କି ଦେଲାଣି । ହଠାତ୍ ଘଡ଼ଘଡ଼ି ସହିତ ପ୍ରବଳ ବର୍ଷା । ସତେ ଅବା ପ୍ରଳୟ ହୋଇଯିବ କି ଆଉ । ଏତେ କମ୍ ସମୟ ଭିତରେ ଏ ସବୁ ଘଟିଗଲା । କାହାକୁ କିଛି ବୁଦ୍ଧିବାଟ ଦେଖାଗଲାନି । ନୌକା ସେତେବେଳକୁ ନଦୀର ବହୁ ଭିତରକୁ ଚାଲିଯାଇଚି । ସହଜେ ତ ଜୁଆରିଆ ନଈ, ନାଉରିଆ ଭାରସାମ୍ୟ ରକ୍ଷା କରିପାରୁନି । ଥିଲାଥିଲା ନୌକାଟି ପବନ ତୋଡ଼ରେ ଓଲଟି ପଡ଼ିଲା । ସମସ୍ତେ ଏକା ସାଙ୍ଗରେ ଚିତ୍କାର କରି ଉଠିଲେ, କିଏ କୁଆଡ଼େ ଛିଟିକି ପଡିଲେ । ସମସ୍ତେ ନିଜ ନିଜ ଜୀବନ ବେଇବାକୁ ବ୍ୟାକୁଳ । କାହା କଥା କିଏ ପଚାରେ ।

ମନ୍ତ୍ରୀ କିନ୍ତୁ ଜାଣନ୍ତି ରାଜାଙ୍କୁ ପହଁରା ଆସେନାହିଁ । ଚକ୍ କରି ବିଜୁଳି ମାରିଦେଲା । ମନ୍ତ୍ରୀ ଚାହିଁଦିଅନ୍ତି ତ ରାଜା ବୁଡ଼ିବୁଡ଼ି ଯାଉଛନ୍ତି । ମନ୍ତ୍ରୀ ପହଁରିଯାଇ ରାଜାଙ୍କ ପଛ ପଟକୁ ଧରି ଟାଣିଆଣିଲେ । ସିଆଡୁ ଗୋଟାଏ କୁମ୍ଭୀର ମାଡ଼ିଆସୁଚି । ରାଜାଙ୍କୁ ଗୋଟିଏ ହାତରେ ପଛକୁ ଠେଲି ଧରି ଆର ହାତରେ ଖଣ୍ଡା କାଢ଼ି ଚାଲି ଆସୁଥିବା କୁମ୍ଭୀରକୁ ଆଘାତ ଉପରେ ଆଘାତ କରିବାକୁ ଲାଗିଲେ । ଭାଗ୍ୟ ଅନୁକୂଳ ଥିଲା । କୁମ୍ଭୀରଟା ବୁଲିପଡ଼ି ପଛକୁ ଚାଲିଗଲା । ମନ୍ତ୍ରୀ ରାଜାଙ୍କ ବେହୋସ ଶରୀରକୁ ସମ୍ଭାଳି ବହୁ କଷ୍ଟରେ ଭାସି ଆସୁଥିବା ଖଣ୍ଡେ ପଟାକୁ ଧରି ଧୀରେ ଧୀରେ ପହଁରିପହଁରି ଆସୁଥାନ୍ତି । ସିଆଡୁ ଖବର ପାଇ ଗଡ଼ ଆଡୁ ଗୋଟିଏ ଡଙ୍ଗା ସାହାଯ୍ୟ ପାଇଁ ଆସୁଥିଲା । ସେତେବେଳକୁ ମେଘ ବର୍ଷା ଥମିଥମି ଆସିଲାଣି । ପବନର ତାଉ କମିକମି ଆସିଲାଣି । ସାଥିରେ ଆସିଥିବା ଅନ୍ୟ ଲୋକମାନେ ଡଙ୍ଗାରେ ବୋଝେଇ ହୋଇ ସାରିଲେଣି । ମନ୍ତ୍ରୀ ରାଜାଙ୍କୁ ନେଇ ବହୁ କଷ୍ଟରେ ଡଙ୍ଗାକୁ ଉଠିଲେ । କୁମ୍ଭୀର ସାଥିରେ ଲଢ଼ିଲାବେଳେ ମନ୍ତ୍ରୀଙ୍କ ଦେହରେ କେଜାଣି କେତେ ଜାଗାରେ ଆଘାତ ଲାଗିଥିଲା । ରକ୍ତ ଝରୁଥିଲା, ହେଲେ ସେଥିକି ତାଙ୍କର ଧ୍ୟାନ ନାହିଁ । ରାଜାଙ୍କର ହୋସ ଆଣିବାକୁ ସେବାରେ ଲାଗିଥିଲେ ସିଏ ।

ଏତ ବହୁତ ଦିନ ତଳର କଥା । ସମସ୍ତେ ହୁଏତ ସେ ଦିନର ଏଇ ଆକସ୍ମିକ ଦୁର୍ଘଟଣାକୁ ଦୁଃସ୍ୱପ୍ନ ଭାବରେ ଗ୍ରହଣ କରି ନେଇଥାଇପାରନ୍ତି କିନ୍ତୁ ରାଜା ଏ ପର୍ଯ୍ୟନ୍ତ ଭୁଲିପାରି ନାହାଁନ୍ତି ନିଜ ଜୀବନକୁ ପାଣି ଛଡ଼ାଇ ତାଙ୍କ ଜୀବନ ବଞ୍ଚେଇଥିବା ମନ୍ତ୍ରୀଙ୍କୁ । ସେଇ ଦିନରୁ ରାଜା ମନ୍ତ୍ରୀ ଭେଦ ଭାବ ଦୂର ହୋଇଯାଇଛି । ଏକାଠି ଖାଇବା, ଏକାଠି ବସିବା, ଏକାଠି ହସିବା, ସବୁକଥା ଦୁହେଁ ଏକାଠି କରୁଥିଲେ । ସତେ ଅବା ମଣି କାଞ୍ଚନ ସଂଯୋଗ । ସେଥିପାଇଁ କାର୍ଯ୍ୟ ସୁରୁଖୁରୁରେ ଚାଲୁଥିଲା । ରାଣୀ ମନ୍ତ୍ରୀଆଣୀ ବାଲ୍ୟ ସଖୀ, ଦୁହେଁ ଏକା ଗଡ଼ରୁ ଆସିଥାନ୍ତି । ଏକା ବର୍ଷ ଏକା ମାସ ଆଉ ଏକା ଦିନରେ ଦୁହିଁଙ୍କର ବିଭାଘର ହୋଇଥିଲା । ଦୁହିଁଙ୍କ କୋଳ ଖାଲି । ପିଲାର ହସକାନ୍ଦ, କଳକୋଳାହଳ ପାଇଁ ଦୁହିଁଙ୍କ ମନ ବ୍ୟାକୁଳ ।

ଦୁଇ ସଖୀ ମାନସିକ କଲେ ସତ୍ୟ ନାରାୟଣ ପୂଜା କରିବେ । ଯେମିତି ମନକୁ ସେମିତି କାମ । ବଡ଼ ନିଷ୍ଠାରେ, ବଡ଼ ଜାକଜମକରେ ସତ୍ୟନାରାୟଣ ପୂଜା ଉଦ୍‌ଯାପନ ହେଲା । ଏକା ଦିନରେ ଦୁହେଁ ମୁକାମ ଖାଇଲେ ବଡ଼ ଭକ୍ତିରେ । ପ୍ରଭୁଙ୍କ କୃପାରୁ ଦୁହିଁଙ୍କର ଗୋଟିଏ ଗୋଟିଏ ପୁଅ ହେଲା । ଦୁହେଁ ଅତ୍ୟନ୍ତ ସୁଶୀଳ ଏବଂ ସୁଧାର । ଭାରି ସାଙ୍ଗ, ଦୁଇ ସଙ୍ଗାତ ଗୋଟିଏ ବୃନ୍ତର ଦୁଇଟି କଳିକା ପରି । ଜୀବନ ଦିଆଦେଇ ସାଙ୍ଗ । ପାଠପଢ଼ା ସରିଲା, ଦୁହେଁ ବଡ଼ ହେଲେ । ବିବାହ ବୟସ ହେଇଗଲା । କେତେ ଆଡୁ କେତେ ପ୍ରସ୍ତାବ ଆସିଲା । କେତେ ଚିତ୍ରପଟ, ହେଲେ ଜଣଙ୍କ ମନକୁ ଗଲେ ଆଉ ଜଣକ ମନକୁ ଯାଏନା । ଏମିତି ଏମିତି ସବୁ ଚିତ୍ରପଟ ନାକଚ ହେଲା । ମନ୍ତ୍ରୀପୁଅର ଯାହା ମନୋନୀତ ହେଲା, ସେ କହିଲା ସଙ୍ଗାତର ଆଗେ ହେଲେ ତା ପରେ ତା'ର ।

ରାଜା ମନ୍ତ୍ରୀ ଦିଗ୍‌ଦାର ହୋଇଗଲେ । ସେମାନେ କହିଲେ, "ତୁମେ ଦି ଜଣ ଦେଶ ଭ୍ରମଣରେ ଯାଅ, ତୁମର ମନ ଯେଉଁଠି ମାନିବ, ଆମକୁ ଜଣାଇଲେ ଆମେ ସବୁ ଆୟୋଜନ କରିବୁ ।" ଦୁଇ ସଙ୍ଗାତ ଖୁସିମନରେ ଦେଶ ଭ୍ରମଣରେ ବାହାରିଗଲେ । କେତେ ନଦୀ, ନାଳ, ବଣ, ପାହାଡ଼ ପାରି ହୋଇଗଲେ । କେତେକେତେ ସୁନ୍ଦରୀ ଝିଅ ତାଙ୍କ ଦୃଷ୍ଟିରେ ପଡ଼ିଲେ । ହେଲେ ତାଙ୍କ ମନ କାହାରିଠାରେ ଟଟିଲାନି ।

ଦିନେ ବାଟ ଭୁଲି ଗୋଟିଏ ଜଙ୍ଗଲରେ ପଶିଗଲେ । ସଞ୍ଜ ଗଡ଼ି ଆସୁଛି, ବାଟ ପାଉନାହାଁନ୍ତି । ଶୋଷ ବି ଭାରି ଲାଗିଲାଣି । ପାଣି କୋଉଠି ମିଳୁନି । ମନ୍ତ୍ରୀପୁଅ ଗଛରେ ଚଢ଼ି ଦେଖିଲା ପୂର୍ବ ଦିଗରେ ପକ୍ଷୀ ଉଡୁଛନ୍ତି । ସେ କହିଲା, "ସଙ୍ଗାତ ଚାଲ, ସେଇ ଦିଗରେ ନିଶ୍ଚେ ପାଣି ଅଛି ।" ଦୁହେଁ ସେଇଆଡ଼କୁ ଘୋଡ଼ା ଝପଟେଇଲେ । କିଛି ଦୂରରେ ସେମାନେ ଗୋଟିଏ ସୁରମ୍ୟ ତୋଟା ଦେଖିପାରିଲେ । ତା ମଝିରେ ଗୋଟିଏ ଘାଟବନ୍ଧା ପୋଖରୀ । କାଚକେନ୍ଦୁ ପରି ପାଣି । ପରିଷ୍କାର ପରିଚ୍ଛନ୍ନ, ସେମାନେ ପାହାଚରେ ଓହ୍ଲାଇ ପେଟେ ପେଟେ ପାଣି ପିଇଲେ । ଦେଖିଲେ ଏତେ ସୁନ୍ଦର ଶଙ୍ଖମଲମଲ ପାହାଚର ଗୋଟାଏ ଜାଗାରେ ମେଞ୍ଚାଏ ପଙ୍କ ନେସାହୋଇଛି । ତା ତଳେ କିଛି ଗୋଟାଏ ରେଖାଚିତ୍ର ଅଛି ନିଶ୍ଚୟ । ଯେଉଁଠି କାଦୁଅ ଟିକେ ପତଳା ହେଇଚି ସେଇଠି ଟିକିଏ ଦେଖାଯାଉଛି ।

ମନ୍ତ୍ରୀପୁଅ ଚାରିପା' ଆଞ୍ଜୁଳା ପାଣି ଆଣି କାଦୁଅ ଉପରେ ପକାଇ ପରିଷ୍କାର କଲା । ଏବେ ଜଣା ପଡ଼ିଲା ରେଖାଙ୍କିତ ଚିତ୍ରଟି ଗୋଟିଏ ସୁନ୍ଦରୀ କନ୍ୟାର । ରାଜାପୁଅ ତାକୁ ଏକ ଲୟରେ ଚାହିଁଚି

ତ ଚାହିଁଚି । ମନ୍ତ୍ରୀପୁଅ ତାକୁ ହଲେଇ ଦେଇ କହିଲା, "ଏଇ ଚିତ୍ରପଟଟି ଦେଖି, ତୋର ଆଖି ତ ରହିଲା ଲାଖି । ଜଣାଗଲା ତୋର କପାଳରେ ଆକୁ ବିଧାତା ଦେଇଚି ଲେଖି ।" ରାଜାପୁଅ ତା ହାତ ଧରିପକାଇ କହିଲା, "ଅଙ୍ଗେ ବଙ୍ଗେ ପୁଣି କଳିଙ୍ଗେ ମଗଧେ, ଦେଖିଚେ କେତେ ସୁନ୍ଦରୀ, ଏ ଯୋଷା ଚରଣ, ଘଷା ପଥରକୁ ନୋହିବେଟି କେହି ସରି । କିଛି କର ସଙ୍ଗାତ, ୟାକୁ ଯଦି ନପାଇବି ତେବେ ଜୀବନ ହାରିଦେବି ।" ମନ୍ତ୍ରୀପୁଅ ତ ଜାଣେ ରାଜାପୁଅର ଖୋଇ । ସେ କହିଲା, "ରହ ଥୟ ଧର, କିଛି କରିବାକୁ ତ ହେବ । ହେଲେ ଦେଖୁଚ ରାତି କେମିତି ମାଡ଼ି ଆସିଲାଣି । ସକାଳ ପାହୁ କାହାକୁ ପଚାରି ବୁଝିବା । ଏ ଘୋର ଜଙ୍ଗଲ ଭିତରେ କାହାକୁ ପାଇବା । ଭଗବାନଙ୍କର ନିଶ୍ଚୟ ମହତ ଉଦ୍ଦେଶ୍ୟ ଅଛି । ନ ହେଲେ ବାଟ ଭାଙ୍ଗି ଆମେ ଏ ବଣରେ ପଶିଥାନ୍ତେ କାହିଁକି?"

ରାଜାପୁଅମାନେ ଯେତେ ସୁନ୍ଦର ହେଲେ ବି ଟିକେ ଅବୁଝା ନୁହଁନ୍ତି କି? ମନ୍ତ୍ରୀପୁଅ ଅନେକ ବୁଝାବୁଝି କଲା । ଘୋଡ଼ାକୁ ଦୂରରେ, ହେଲେ ଆଖି ସାମ୍ନାରେ ବାନ୍ଧି ଦେଇ ଗୋଟିଏ ଉଚ୍ଚ ଗଛରେ ଚଢ଼ି ବସିଲେ । ରାତି ପାହିବାକୁ ଅପେକ୍ଷା କରି ରହିଲେ । ମୋଟା ଡାହି ଦେଖି ସେମାନେ ବସିଥିଲେ । ରାଜାପୁଅ ତ ଭାରି ସୁକୁମାରିଆ, ମନ୍ତ୍ରୀପୁଅ କୋଳରେ ମଥାରଖି ଶୋଇପଡ଼ିଲା । ବାର ହାତ ଖଣ୍ଡା ଧରି ମନ୍ତ୍ରୀପୁଅ ଉଜାଗର ହୋଇ ବସିରହିଲା ।

ରାତି ବଢ଼ିବଢ଼ି ଚାଲିଥାଏ । ନିଶା ଗରଜୁଥାଏ ସାଏଁ ସାଏଁ । ଏହି ସମୟରେ ପୋଖରୀ ଆଡ଼ୁ ବଡ଼ ଜୋରରେ ସୁ ସୁ ଗର୍ଜନ ଶୁଭିଲା । ମନ୍ତ୍ରୀପୁଅ କାନ ଠିଆ ହୋଇଗଲା । ସେ ସଜାଗ ହୋଇ ସିଆଡ଼କୁ ଚାହିଁଲା । ସେ ଚାହିଁଛି, ପୋଖରୀ ପାଣି ଦୁଇଭାଗ ହୋଇଗଲା । ବିରାଟ ଗୋଟିଏ ଉଜ୍ଜ୍ୱଳ ଆଲୋକ ପୋଖରୀ ଭିତରୁ ବାହାରି ଚାଲି ଆସୁଛି । ସେ ଆଲୁଅ ପାହାଚ ଦେଇ ଉପରକୁ ଉଠିଉଠି ଆସୁଛି । ସେ ଦେଖିଲା ମସ୍ତବଡ଼ ଏକ ମଣିନାଗ ସାପ । ତା ଫଣା ଗୋଟିଏ ବିରାଟ କୁଲାଠାରୁ ଆହୁରି ବଡ଼ । ଫଣା ଉପରେ ତାଟିଆ ପରି ସେହି ମଣିଟା ଯାହାର ଉଜ୍ଜ୍ୱଳତାରେ ଚାରିଆଡ଼ ଆଲୁଅରେ ଝଲମଲ କରୁଛି ।

ସେ ମଣିଟିକୁ ଧୀରେ ହୁଡ଼ା ଉପରେ ଥୋଇଲା । ତା ପରେ ମନ୍ତ୍ରୀପୁଅର ଆଖି ଆଗରେ ଗୋଟିଏ ଘୋଡ଼ାକୁ ଟକ୍ କିନା ଗିଳିଦେଲା । ସେତେବେଳକୁ ରାଜାପୁଅ ଉଠି ସାରିଲାଣି । ବଣ ରାଇଜ ଚାରିଆଡ଼ ଆଲୁଅରେ ଆଲୋକିତ । ସେ କିଛି ବୁଝିପାରୁନି । ମନ୍ତ୍ରୀପୁଅ ପାଟିରେ ଆଙ୍ଗୁଳି ରଖି ତାକୁ ଚୁପ୍ ରହିବାର ଇସାରା ଦେଲା । ଆଙ୍ଗୁଠି ଦେଖାଇଦେଲା ମଣିନାଗକୁ । ଏ ଜୀବନରେ ଏତେ ବଡ଼ ଜନ୍ତୁ ଦେଖିବା ଦୂରେ ଥାଉ ସେ କଳ୍ପନା ବି କରିପାରୁ ନ ଥିଲା । ସେତେବେଳକୁ ସେ ଆର ଘୋଡ଼ାକୁ ଧରି ଗିଳିବା ଆରମ୍ଭ କରିଦେଲାଣି । ହଲ ନାହିଁ କି ଚଲ ନାହିଁ । କାହାର ସତେ ଅବା ଦେହରେ ଜୀବନ ନାହିଁ । ମଣିନାଗ ତା କାମ ସାରି ପାଖରେ ଥିବା ଏକ ବିରାଟ ଗଛରେ ଗୁଡ଼େଇ ହୋଇ ମୋଡ଼ିମାଡ଼ି ହେଲା । ପେଟ ଭିତରେ ହାଡ଼ ସବୁ କଡ଼ କଡ଼ ମଡ଼ ମଡ଼ ହୋଇ ଭାଙ୍ଗି ଯାଉଛି କି? ଦୁଇ ସଙ୍ଗାତଙ୍କ ଦେହ ଶୀତେଇ ଉଠୁଛି ।

ସାପଟି ତଳେ କିଛି ସମୟ ଯାଏ ଗଡ଼ିଲା । ସୁ ସୁ ଶବ୍ଦରେ କାନ ଅତଡ଼ା ଫାଟିଯାଉଛି । ତା ପରେ ସେ ବନ୍ଧ ଉପରକୁ ଆସି ସେ ମଣି ଉପରେ ମୁଣ୍ଡ ରଖି ଏପଟ ସେପଟ କଲା । ସେ ବିରାଟ ମଣିଟା ତା ମୁଣ୍ଡ ଉପରେ ଲାଗିଗଲା । ପୂର୍ବ ପରି ସେ ପୋଖରୀ ପାଖକୁ ଆସିଲା । ପାଣି ଦି ଭାଗ

ହୋଇଗଲା । ସେ ସେଇ ବାଟ ଦେଇ କେଜାଣି କେତେ ଦୂରକୁ ଯାଇଥିବ । ଭିତରେ କୋଉଠି ରହୁଚି କେମିତି ରହୁଚି ତା ବିଧାତାଙ୍କୁ ଜଣା । ଦି ସଙ୍ଗାତ ଦୀର୍ଘ ନିଶ୍ୱାସ ମାରି ବର୍ତ୍ତିଗଲେ ବୋଲି ଭଗବାନଙ୍କୁ ଧନ୍ୟବାଦ ଦେଲେ । ଘୋଡ଼ାଙ୍କ ଅବସ୍ଥା ମନେପକାଇ କେତେ ଦୁଃଖିତ ହେଲେ । ଆହା କେତେ ଦୁଃଖସୁଖର ସାଥୀ ଆମର ।

ଯେମିତି ସେମିତି ରାତି ପାହିଲା । ପିଲାଏ ଧୀରେ ଧୀରେ ଗଛରୁ ଓହ୍ଲାଇଲେ । ଆଉ କିଛି ଘଟଣା କି ଦୁର୍ଘଟଣା ରାତିରେ ଘଟି ନ ଥିଲା । ଦିହେଁ ମୁହଁ ହାତ ଧୋଇ ନିଜ ନିଜ ମୁହଁକୁ ଚୁହାଁଚୁହିଁ ହେଲେ । ଘୋଡ଼ା ତ ନାହିଁ କେମିତି ଯିବେ, କୁଆଡ଼େ ଯିବେ । ସୂର୍ଯ୍ୟ ଉଦୟ ହୋଇ ସାରିଲାଣି । ନିତ୍ୟକର୍ମ ସାରି ଦି ସଙ୍ଗାତ ବାଟ ଚାଲିଚାଲି ଆସିଲେ । ଭାଗ୍ୟକୁ ହଜିଲା ରାସ୍ତା ମିଳିଗଲା । ଆଗକୁ ଛୋଟ ସହରଟିଏ, ବେଶ୍ ପରିଷ୍କାର ପରିଚ୍ଛନ୍ନ । ଲୋକମାନେ ଭବ୍ୟ ସୁଶୀଳ ମନେ ହେଉଚନ୍ତି । ଦୁଇ ସଙ୍ଗାତ ଗୋଟିଏ ଭଲ ଜଳଖିଆ ଦୋକାନରେ ବସି ଆଗେ ପେଟେ ଖାଇଲେ । ସେଠାକୁ ଆସିବାଯିବା ଲୋକଙ୍କୁ ପାହାଚ ଉପର ରେଖାଙ୍କିତ ଚିତ୍ରପଟ କଥା ପଚାରିଲେ । ଅନେକ ତ ହସି ଉଡ଼େଇ ଦେଲେ । ଆଉ କେତେକ କହିଲେ ଏହି ବିଦେଶୀ ଛୁଆ ଦି'ଟିଙ୍କୁ ବି ଘାରିଲାଣି ଏଇ ନିଶା । ଜଣେ କହିଲା, "ବାବୁ ଆପଣଙ୍କର କିଛି ଦୋଷ ନାହିଁ । କେତେ ରାଜା ମହାରାଜାଙ୍କଠୁ ଆରମ୍ଭ କରି ଯିଏ ସେ ଚିତ୍ର ଆଡ଼କୁ ଢଳିବ, ଏମିତି ବାଇଆ ହେବ, ଖୋଜିଖୋଜି ହାଲିଆ ହେବ । କେହି ତା'ର ପତା ପାଇନାହାଁନ୍ତି । ଥିଲେ ତ ପାଇବ ନା । ଆମେ ଆଖି ଉଠିଲା ଦିନରୁ ଦେଖୁଚୁ, ସେଇଟି ତ ସେଇମିତି ଅଙ୍କା ହେଇଚି । କିଏ କେବେ କେତେବେଳେ ଆଙ୍କୁ ଆଙ୍କିଚି ଜଣା ନାହିଁ ।"

ରାଜାପୁଅ ମନ ଫିକା ପଡ଼ିଗଲା । ସଙ୍ଗାତ ଆଉ ଏ ଜୀବନ ଧରି ଲାଭ କ'ଣ ? ମନ୍ତ୍ରୀପୁଅ କହିଲା, ରହ ଏମିତି ଅଥୟ ହେଲେ କ'ଣ ହବ । ରାଜାଙ୍କ ବୁଦ୍ଧିଠାରୁ ମନ୍ତ୍ରୀଙ୍କର ବୁଦ୍ଧି ଟିକେ ଅଧିକ ନୁହଁକି ? ସେମିତି ରାଜାପୁଅ ଭାରି ଜିଦିଆ, ହେଲେ ମନ୍ତ୍ରୀପୁଅ ପାମ୍ପଳାପାମ୍ପିଳି କରି ତାକୁ ବୁଝେଇ ଦବାର କ୍ଷମତା ରଖେ । ସେ କହିଲା, "ଶୁଣ ସଙ୍ଗାତ, ମୋର କାହିଁକି ମନେ ହେଉଛି ସେଇ ପୋଖରୀ ପାଖରେ କଥା ଅଛି ।" ଏମିତି ବିଚରାବିଚାରି ହୋଇ ଦିନସାରା ଇଆଡ଼େ ସିଆଡ଼େ ବୁଲାବୁଲି କରି ପୋଖରୀ ପାଖର ଗୋଟିଏ ଗଛରେ ଯାଇ ବସିଲେ । ମନ୍ତ୍ରୀପୁଅ କ'ଣ ଭାବି କେଜାଣି ଲେଣ୍ଡାଏ ଗୋବର ନେଇ କୂଳରେ ରଖିଥାଏ । ଦୁଇ ସଙ୍ଗାତ ସେଇ ଗଛରେ ବସି ପୋଖରୀ ଆଡ଼କୁ ଏକ ଲୟରେ ଚାହିଁ ରହିଥାନ୍ତି ।

ଠିକ୍ ରାତି ଅଧିଆଅଧି ସିଏ ସୁ ସୁ ହୋଇ ପବନ ଗର୍ଜନ କରି ପୋଖରୀରୁ ବାହାରିଲା । ମଣିଟିକୁ ହୁଡ଼ାରେ ରଖି ଚରିବାକୁ ଗଲା । ମନ୍ତ୍ରୀପୁଅ ଚାହିଁଥାଏ । ସାପ ଯେମିତି ଦୂରକୁ ଦୂରକୁ ଚାଲିଗଲା, ସେ ବାରହାତୀ ଖଣ୍ଡା ଧରି ତଳକୁ ଓହ୍ଲାଇଲା । ଯୋଉ ଗୋବର ଲେଣ୍ଡାକ ରଖିଥିଲା ତାକୁ ମଣି ଉପରକୁ ଛାଟିଦେଲା । ମଣି ଉଜ୍ଜ୍ୱଳରେ ଚଉଦିଗ ଆଲୁଅ ହେଉଥିଲା ସିନା ସେଇଟା ଘୋଡ଼ାଇ ହୋଇଯିବାରୁ ସବୁ ଅନ୍ଧାର ଗୁଁଜୁଗୁଁଜୁ ହୋଇଗଲା । ସିଆଡୁ ଫୁ ଫୁ କାର କରି ମଣୀନାଗ ଝପଟି ଆସିଲା । ମନ୍ତ୍ରୀପୁଅ କ'ଣ କଲା ନା, ବାରହାତୀ ଖଣ୍ଡାରେ ଚୋଟେ ମାଇଲା ଯେ, ଗଣ୍ଡି ମୁଣ୍ଡ ଅଲଗା । ଦି ସଙ୍ଗାତ ନିଶ୍ଚିନ୍ତ ହେଇ ମଣିଟିକୁ ଧୋଇବାକୁ ପୋଖରୀ ପାଖକୁ ଆସିଲେ । ତାକୁ ଯେମିତି ପାଣିରେ ଧୋଇବାକୁ ବୁଡ଼େଇ ଦେଇଚନ୍ତି ସେମିତି ପାଣି ଦି ଭାଗ ହୋଇଗଲା ।

ବଢ଼ିଆ ଚଉଡ଼ା ରାସ୍ତା ପଡ଼ିଚି ଭିତରକୁ ଭିତରକୁ। ସେଇ ରାସ୍ତା ଦେଇ ଦି ସଙ୍ଗାତ ଆଗେଇଲେ। କିଛି ବାଟ ଗଲା ପରେ ଦେଖିଲେ ଗୋଟିଏ ସୁନ୍ଦର ମହଲ। ପ୍ରବାଳ, ସ୍ଫଟିକ, ମଣିମାଣିକ୍ୟ ଆଉ କେତେ କ'ଣ ରତନ ଖଞ୍ଜା ଯାଇ ତିଆରି। ପଦ୍ମ ବାସନାରେ ଚଉଦିଗ ମହକୁଚି। ସେମାନେ ଆଉଜା ବିଚିତ୍ର କବାଟ ଠେଲି ଭିତରକୁ ପଶିଲେ। ଧାଡ଼ି ଧାଡ଼ି କୋଠରୀ ରହିଚି। ସେ ସବୁ ତାଲା ଦିଆ। ଗୋଟିଏ ଜାଲିକାମକରା ସୁନାର କବାଟ ଦରଆଉଜା। ଦି ସଙ୍ଗାତ ଭିତରକୁ ଯାଇ ଯାହା ଦେଖିଲେ, ଚକିତ ହୋଇ ଚାହିଁ ରହିଲେ। ରତ୍ନଖଚିତ କୋଟିକାମଭରା ହାତୀ ଦାନ୍ତର ପଲଙ୍କ ଉପରେ ଗୋଟିଏ ନାଲି ମନ୍ଦାର ମାଳ ଗଳାରେ ଲମ୍ବାଇ ଶୋଇ ରହିଛି ମାର୍ବଲ ପାହାଚ ଉପରେ ଅଙ୍କାଯାଇଥିବା ଚିତ୍ରପଟର ସେଇ ଅପୂର୍ବ ସୁନ୍ଦରୀ ଝିଅଟି।

କିଛି ସମୟଯାଏ ଦୁଇ ସଙ୍ଗାତ ମୁଗ୍ଧ ହୋଇ ଚାହିଁ ରହିଲେ। ମନ୍ତ୍ରୀପୁଅ ପ୍ରଥମେ ମୁହଁ ଖୋଲିଲା। କହିଲା, "ନିଅ ସଙ୍ଗାତ, ଏବେ ପାଇଗଲ ତ ଯାହା ପାଇଁ ଝୁରି ହଉଥିଲ।" ସେମାନେ ଶୋଇଲା ଝିଅଟି ପାଖକୁ ଆସିଲେ। ସଜ ସଜ ଅଧା ଫୁଟା ଫୁଲଟି ପରି ଝିଅଟିଏ ଆଖି ମୁଦି ଶୋଇ ରହିଚି। ରାଜାପୁଅ ତା କପାଳରେ ହାତ ଛୁଆଁଇ ପଡ଼ିଥିବା ଚୂନା ଚୂନା କେଶ ସବୁ ଉଠେଇ ଦେଲା। ତାକୁ ସାଉଁଳି ସାଉଁଳି ଉଠେଇବାକୁ ଚେଷ୍ଟା କଲା। ସେ ଉଠିଲାନି। ମନ୍ତ୍ରୀପୁଅ ମୁହଁ ପାଖରେ ତାଳିମାରି ଉଠାଇବାକୁ ଚେଷ୍ଟାକଲା। ସେ ସେମିତି ଶୋଇରହିଥିଲା। ରାଜାପୁଅ ମୁହଁ ଫିକା ପଡ଼ିଗଲା। ସେ ସଙ୍ଗାତ ମୁହଁକୁ ବିକଳ ହୋଇ ଚାହିଁଲା। ମନ୍ତ୍ରୀପୁଅ ଆଖିରେ ଆଖିରେ କହିଦେଲା, "ରହ ବ୍ୟସ୍ତ ହୁଅନା। କୋଉ ପାଣି କୁଆଡ଼େ ଯାଉଚି ଦେଖିବା।" ସେ ପୁଣି କହିଲା, "ସଙ୍ଗାତ ଏ ମନ୍ଦାର ମାଳଟିକୁ ତା ବେକରୁ କାଢ଼ିଦେଇ ଦେଖ।"

ରାଜାପୁଅ ଯେମିତି ମାଳାଟିକୁ କାଢ଼ିଦେଇଚି ସେମିତି ଝିଅଟି ଆଖିମଳି ଉଠି ବସିଲା। ଆଉ ଏମାନଙ୍କୁ ଦେଖି ଆଶ୍ଚର୍ଯ୍ୟ ଚକିତ ହୋଇ ଚାହିଁରହିଲା। ତା ପରେ ଧୀର ଭାବରେ ଉଠି ରାଜାପୁଅ ପାଦ ତଳେ ପ୍ରଣାମ କଲା, ସେ କହିଲା ତା ବାପା ତାକୁ କହିଥିଲେ ମୁଁ ମରିଗଲା ପରେ ଏ ଭିତରକୁ ଯିଏ ଆସି ତୋ ଗଳାରୁ ଲାଲ ମନ୍ଦାର ମାଳା ଖୋଲିଦେବ ସେ ହେବ ତୋର ପତି। ଆଜିଠାରୁ ଆପଣ ହିଁ ମୋର ସ୍ୱାମୀ। ଆଉ ମନ୍ତ୍ରୀପୁଅକୁ କହିଲା ଆପଣ ମୋର ଭାଇ। ସମସ୍ତେ ଭାରି ଖୁସି ହୋଇ ଢେର ବେଳଯାଏ ଗପସପ ହେଲେ। ସେ କହିଲା, ତା ବାପାର ଦେହାନ୍ତରେ ତାର କୌଣସି ଦୁଃଖ ନାହିଁ। କାରଣ ସେ ଆଜି ପର୍ଯ୍ୟନ୍ତ ଅଭିଶପ୍ତ ଜୀବନ ବିତାଉଥିଲେ। ଏବେ ସ୍ୱସ୍ଥାନ ପାତାଳ ପୁରୀକୁ ଚାଲିଯାଇଛନ୍ତି।

ତାହାପରେ ସେ ବନ୍ଦ ଘର ଖୋଲି ନାନା ପ୍ରକାର ଖାଦ୍ୟ ବାଢ଼ିଲା। ଯାହା ଏମାନେ କେବେ ବି ଜୀବନରେ ଖାଇ ନ ଥିଲେ। ହସ ଖୁସି ଆନନ୍ଦରେ ସେ ଦିନଟି ସରିଗଲା। ତା ପର ଦିନ ମନ୍ତ୍ରୀପୁଅ ଦେଶକୁ ବାହାରିଲା। ଘରେ ଖବର ଦେବ। ଯାନବାହନ ଧରି ଆସିଲେ ଏମାନଙ୍କୁ ନେଇକରି ଯିବ। ମହା ଉତ୍ସାହରେ ମଣିଟି ଧରି ମନ୍ତ୍ରୀପୁଅ ବାହାରିଲା। ମଣି ଲାଗି ପାଣି ଦୁଇଭାଗ ହୋଇଗଲା। ମନ୍ତ୍ରୀପୁଅ ଘୋଡ଼ାଟିଏ କିଣି, ସେହିଥିରେ ବସି, କଦମ ଚାଲି ପକାଇ, ସୁସୁରି ମାରିମାରି ଘର ମୁହାଁ ହେଲା। ତା ପରେ ଘୋଡ଼ା ଛୁଟିଲା ଯେ ଛୁଟିଲା ଯେ ଛୁଟିଲା। ଅନେକ ବାଟ ଗଲା ପରେ ସଞ୍ଜ ଢଳିଲା। ପୂରା ପଶ୍ଚିମ ଆକାଶକୁ ଲାଲ୍ କରି ସୂର୍ଯ୍ୟ ଦେବତା ମା କୋଳକୁ ଫେରିଲେ।

ଏବେ କୋଉଠି ଟିକେ ବିଶ୍ରାମ କରିବାକୁ ମନ୍ତ୍ରୀ ପୁଅ ବାଟ ଖୋଜିଲା। ପାଇଗଲା ମଧ୍ୟ। ଗାଁ ଶେଷରେ ଙ୍କାନ ଦେଇ ମାଲୁଣୀର ଘର। ତା'ର ଗୋଟିଏ ବାୟା ପୁଅ ଥାଏ। ପୁଅ ଦେହରେ ପାଉଁଶ ବୋଳି ହୋଇ ହାଡ଼ ହେଉକି କାଠ ହେଉ, ଦୁଇ ଖଣ୍ଡ ଧରି ବାଡ଼େଇ ବାଡ଼େଇ ହୁପ୍ ହୁପ୍ ଧୁପ୍ ଧୁପ୍ କହିକହି କୁଆଡ଼େ ବୁଲୁଥାଏ। ମନ ହେଲେ କେବେ ଘରକୁ ଫେରେ ତ କେବେ ନାଇଁ , ମାଲୁଣୀ ବୁଢ଼ୀ ଏକୁଟିଆ ରହୁଥାଏ। ମନ୍ତ୍ରୀ ପୁଅ ରାତିକ ପାଇଁ ଦୁଇଟା ସୁନା ମୋହର ଦେଲା। ମାଲୁଣି ବୁଢ଼ୀ ତା ପାଇଁ ଭଲ କରି ଉଷୁମ ପାଣି କରି ଗାଧୁଆପାଧୁଆ ପାଇଁ ବ୍ୟବସ୍ଥା କରି ଦେଲା। ଭଲମନ୍ଦ ରାନ୍ଧିବାଢ଼ି ଖୁଆଇଲା। କଁଅଳିଆ ବିଛଣା ପାରି ଦେଲା। ଗୋଡ଼ ହାତ ମୋଡ଼ି ଘଷି ଦେଇ କହିଲା, "ତୋରି ପରିକା ମୋର ପୁଅଟି କୁଆଡ଼େ ବାଇଆ ବାତୁଳା ହୋଇ ବୁଲୁଚି। ତୁ ତ ମୋର ପୁଅ।" ମନ୍ତ୍ରୀ ପୁଅ ଦିନ ତମାମ୍ ଘୋଡ଼ାରେ ବସି ବସି ଥକାନରେ ଚୁର୍ ଚୁର୍ ହୋଇଯାଇଥିଲା। ଏବେ ଏତେ ଆରାମ, ଏତେ ଆଦର, ଏତେ ମମତା ପାଇ ନିଶ୍ଚିନ୍ତରେ ଆରାମରେ ଶୋଇ ପଡ଼ିଲା।

ଖାଇଲାବେଳେ ଖିରୀରେ ବୁଢ଼ୀ କ'ଣ ଟିକେ ଜଡ଼ିବୁଟି ମିଶେଇ ଦେଇଛି, ମନ୍ତ୍ରୀପୁଅକୁ ଜଣାନାହିଁ। ସେ ତ ନିଦ ଯାଇଛି। ଏଣେ ବେଳ ଆସି ଅଧା ଚାଳ ହେଲାଣି। ନିଦ ଭାଙ୍ଗିଲା, ଧଡ଼ପଡ଼ ହୋଇ ଉଠିକରି କହିଲା, "ମାଉସୀ ମତେ ଟିକେ ସଅଳ ସଅଳ ଉଠେଇ ଦେଲୁନି। ମୁଁ ପୁଣି କେତେ ଦୂର ବାଟ ଯିବି ନା।" "ହଁ ମ ଯିବୁ ତ, ମାଉସୀ ପାଖରେ ଦି ମିନିଟ୍ ରହିଗଲେ ମୋ ମନଟି ଶୀତଳ ହେଇଯାଉଛି। ହଉ ମୁଁ ଉଷୁମ ପାଣି ରଖି ଦେଇଛି। ତୁ ଝଟ ଝଟ ହାତ ଦିହ ଧୋଇ ପକା। କ'ଣ ଦି'ଟା ମୁହଁରେ ଦେଇ ବାହାରିଯିବୁ।" ମନ୍ତ୍ରୀପୁଅ ଜଲଦି ଜଲଦି ବାହାରି ପଡ଼ିଲା। ଆହା ପରପୁରାଙ୍କୁ ପୁଣି ଏତେ ସ୍ନେହ ମିଳେ।

ମାଉସୀକୁ ଓଳଗି ହୋଇ ଘୋଡ଼ାରେ ବସିଲା। ଆସିଲାବେଳେ ମୁଣାକୁ ବାହାରୁ ବାହାରୁ ଦରାଣ୍ଡି ଦେଲା। ହାତକୁ ମଣି ଲାଗିଲା। ସେ ନିଶ୍ଚିନ୍ତରେ ସୁସୁରି ମାରି ମାରି ଘୋଡ଼ା ଝପଟେଇଲା। ଦି ପହର ସରିକି ଭାରି ଭୋକ କଲାଣି। ଘୋଡ଼ାକୁ ଗୋଟେ ବରଗଛ ଛାଇରେ ବାନ୍ଧି ଦୋକାନରୁ ପାଣି ଆଣି ପିଆଇଲା। ଘୋଡ଼ାର ଦାନା ବନ୍ଧାଥିଲା, ପାଣିରେ ମିଶାଇ ଖାଇବାକୁ ଦେଲା। ନିଜେ ଟିକେ ଖାଇବ ବୋଲି ମୁଣା ଖୋଲିଲା ବେଳକୁ ମୋହର ଥଳିଟି ନାହିଁ। ତା ବୁଦ୍ଧି ହଜିଗଲା। ଭାବିଲା ଥଳିଟି କୁଆଡ଼େ ଗଳିପଡ଼ିଛି ବୋଧହୁଏ। ପକେଟ ଅଣ୍ଡାଳିଲା ବେଳକୁ ଗୋଟିଏ ମୋହର ମିଳିଲା। ଏଣୁ ତେଣୁ କ'ଣ ଦି'ଟା ଖାଇଦେଇ ଘୋଡ଼ାରେ ଉଠିଲା। ମନେ ମନେ ଭାବିଲା ଯାହା ହେଉ ମଣିଟି ରହି ଯାଇଛି।

ରାତି ଅଧକ ବେଳକୁ ରାଜ୍ୟରେ ଯାଇ ପହଁଚିଲା। ବାପା ମା ପୁଅକୁ ଦେଖି କୋଟିନିଧି ପାଇଲା ପରି ମଣିଲେ। ରାଣୀ ରାଜାଙ୍କ ଖୁସି କହିଲେ ନସରେ। ସବୁ ଶୁଣି ଏଇନେ ଯିବାକୁ ବାହାରିଲେ। ସମସ୍ତେ। ରାଇଜର ଅଧେ ଲୋକ ବାହାରୁଛନ୍ତି ଯିବାକୁ। ମନ୍ତ୍ରୀପୁଅ ସମସ୍ତଙ୍କୁ ବୋଧବାଧ କଲା। ମନ୍ତ୍ରୀ କହିଲେ ଏଇଆଡ଼େ ପୁଣି ସବୁ ବ୍ୟବସ୍ଥା କରିବାକୁ ପଡ଼ିବ। ରାଜମହଲ, ରାଜସଭା, ସାରା ରାଜ୍ୟ ମଣ୍ଡଣି କରିବାକୁ ପଡ଼ିବ। ବିଭାଘର ପାଇଁ ମଣ୍ଡପ ସଜା ହେବ। ପୁଅବୋହୂଙ୍କ ସ୍ୱାଗତ ପାଇଁ ସବୁ ବ୍ୟବସ୍ଥା କରିବାକୁ ପଡ଼ିବ। ଟିକେ ଦୂରରେ ବାଜା, ବଡ଼କାଠ, ଯୋଡ଼ି ନାଗରା, ତୁରି ମହୁରି ସବୁ ସଜ ହୋଇଥିବ। ଖଣ୍ଡେ ଦୂରରୁ ବାଜଣା ଆରମ୍ଭ ହେବ।

ବଛାବଛା କେତେଜଣ ସୈନ୍ୟସାମନ୍ତ, ସବାରି ପାଲିଙ୍କି କାନ୍ଧୁଆ, କେତେ ବେହେରାଙ୍କୁ ଧରି ମନ୍ତ୍ରୀପୁଅ ବାହାରିଲେ । ଦି ଦିନ ଦି ରାତି ପରେ ମନ୍ତ୍ରୀପୁଅ ବୁଝିପାରିଲା ଯେ ସେ ଠିକ୍ ବାଟରେ ଆସିଛି । ପୋଖରୀଠାରୁ ଖଣ୍ଡେ ଦୂରରେ ସମସ୍ତଙ୍କୁ ଅଟକେଇ ସେ ଏକେଲା ଚାଲିଲା ପୋଖରୀ ପାଖକୁ । ମଣିଟି କାଢ଼ି ପାହାଚରେ ଓହ୍ଲେଇ ଓହ୍ଲେଇ ପାଣି ପାଖକୁ ଗଲା । ହେଲେ ସେ ଅବାକ୍ ହୋଇଗଲା । ଆଉ ହତାଶାରେ ତା'ର ଗୋଡ଼ରୁ ମୁଣ୍ଡ ଯାଏ ଥରିଗଲା । କାହିଁକି ନା ମଣିଟିକୁ ଯେତେ ପାଣି ଭିତରେ ବୁଡ଼େଇଲେ ମଧ୍ୟ ପାଣି ଦି ଭାଗ ହେଲାନି କି ବାଟ ଫିଟିଲାନି ପାଣି ଭିତରେ । ତା'ର ଆଉ ବୁଝିବାକୁ ବାକି ରହିଲାନି ଯେ ମଣିଟିକୁ ବଦଳେଇ ଦେଇଛି ସେଇ ଜ୍ଞାନଦେଇ ମାଲୁଣୀ । ଆଉ ମୋହର ଥଳିଟି ମଧ୍ୟ ସେ ହଡ଼ପ କରିଦେଇଛି । ଆଉ କାଳ ବିଳମ୍ବ ନକରି ସେ ଘୋଡ଼ା ଝପଟେଇଲା ସେଇ ମାଲୁଣୀ ଘର ଆଡ଼େ ।

ଘର ପାଖ ମଶାଣି ପାଖରେ ସେ ଦେଖିଲା । ତା'ରି ଟୋକାଟି ପାଉଁଶ ବୋଳି ହୋଇ ଦିଖଣ୍ଡ ହାଡ଼ ବାଡ଼େଇ ବାଡ଼େଇ ହୁପ୍ ହୁପ୍ ଧୁପ୍ ଧୁପ୍ ହୋଇ ନାଚୁଛି, ଯେମିତି ହେଉଥିଲା । ସେ ମଧ୍ୟ ଆଉ ଦି ଖଣ୍ଡ ହାଡ଼ ଧରି ତା ସାଙ୍ଗରେ ହୁପ୍ ହୁପ୍ ଧୁପ୍ ଧୁପ୍ ହୋଇ ନାଚି ଦୋସ୍ତି କରିଦେଲା । ତା ପରେ ତାକୁ ଘୋଡ଼ାରେ ବସାଇ ଆଣି ପାଖରେ ଥିବା ମଶାଣିର ଅମଡ଼ା ଘର ଭିତରେ ପୂରାଇ କବାଟ କିଳିଆଣିଲା । ସେତବେଳକୁ ରାତି ଦିଘଡ଼ି, ଘୋଡ଼ାକୁ ଖଣ୍ଡେ ଦୂରରେ ବାନ୍ଧି ନିଜେ ପାଉଁଶ ବୋଳିହୋଇ ଦିଖଣ୍ଡ କାଠ ଧରି ହୁପ୍ ହୁପ୍ ଧୁପ୍ ଧୁପ୍ କହି ମାଲୁଣୀ ପିଣ୍ଡାକୁ ଉଠିଲା । କିଏ ଦି ଜଣ ସ୍ତ୍ରୀ ଲୋକ ତାକୁ ଦେଖି କଥାହେଲେ, "ଆଲୋ ଆଜି ପାଗଳା ଆସିଲାଣି ଲୋ । ମାଉସୀକୁ କୁଆଡ଼େ ମେଞ୍ଚାଟେ ମିଳିଗଲା କି କ'ଣ, ମୁଣ୍ଡରେ ମୁଣ୍ଡେ ଗଣ୍ଠୁଲି ମୁଣ୍ଡେଇ ତା ଝିଅ ଘରକୁ ତ ଗଲା । ରାତିରେ ତ ଫେରିବନି । ଆହା ବିଚରା ପାଗଳାଟି କ'ଣ କରିବ?" ଆଉ ଜଣେ କହିଲା, "ତା କଥା କ'ଣ, ଯେମିତି ଆସିଚି ପୁଣି ସେମିତି ପଳେଇଯିବନି?" ଯିଏ ଯୁଆଡ଼େ ଗଲେ । ମନ୍ତ୍ରୀପୁଅ ପିଣ୍ଡାରେ ବସି ସେମିତି କହିକହି କାଠି ବାଡ଼େଇବାରେ ଲାଗିଛି । ଚାରିଆଡ଼ ନିଶୁନ ହେଇ ଆସିଲା । ସେ କୋଲପ ଭାଙ୍ଗି ଭିତରେ ପଶିଲା । ସବୁଆଡ଼ ଛିନ୍‌ଛତ୍ର କରି ଖୋଜି ପକେଇଲା । ପରେ ସଂଗା ଉପରେ ଥୁଆ ହୋଇଥିବା ପେଟେରା ଭିତରୁ, ସାତ ପରସ୍ତ ଗୁଡ଼ା ବସ୍ତାରୁ, ମଣି ଆଉ ମୋହର ଥଳି ପାଇଲା । ମୋହର କିଛି କମିଛି । ଛାଡ଼ ମ କିଏ ପଚାରେ କହି ଘୋଡ଼ା ଛୁଟେଇ ଦେଲା ।

ପାହାନ୍ତା ବେଳକୁ ପୋଖରୀ ପାଖରେ, ମଣି ଯେମିତି ପାଣିରେ ବୁଡ଼େଇଚି ସେମିତି ବାଟ ଖୋଲିଗଲା । ସେ ଭିତରକୁ ଆସିଲାବେଳକୁ ଦୁଇଜଣ ସାରା ଦୁଃଖ ଦୁଶ୍ଚିନ୍ତା ଆଶଙ୍କାରେ ମୁହଁଟିମାନ ଶୁଖାଇ ବସିଛନ୍ତି । ସେ ସଙ୍ଗାତ ବୋଲି ତାଙ୍କ ପାଖକୁ ଯାଇ କୁଣ୍ଢେଇ ପକାଇଲା । ରାଜାପୁଅ ପିଣ୍ଡରେ ପ୍ରାଣ ପଶିଗଲା ପରା । ଖୁସିରେ ପାଗଳ ହୋଇଗଲା ସେ । ଡ଼େରି ହବାର କାରଣ ସବୁ କଥା ବୁଝାଇ କହିଲା ମନ୍ତ୍ରୀପୁଅ । "ସତରେ ସଙ୍ଗାତ ତମ ଋଣ ଜନ୍ମ ଜନ୍ମାନ୍ତରେ ମୁଁ କ'ଣ ଶୁଝାଇ ପାରିବି?", ରାଜାପୁଅ କହିଲା । ମନ୍ତ୍ରୀପୁଅ ପାଟିରେ ହାତ ଦେଇ ଦେଲା । କହିଲା, "ସଙ୍ଗାତ ଆମର ସିନା ଦି'ଟା ଦେହ, ଗୋଟିଏ ଆତ୍ମା ପରା ।" ରାଜାପୁଅ ତାକୁ କୋଳେଇ ଧରିଲା । ତା ଆଖିରୁ ଝର୍‌ଝର୍ ଲୁହ ଝରି ପଡ଼ିଲା । ମନ୍ତ୍ରୀପୁଅ କହିଲା, “ସଙ୍ଗାତ ତମେ ହେଲେ ଦି ଟଙ୍କା ମୁଁ ତହିଁରେ ଦୁଇ, ତମେ ହେଲେ ମାଟିର ହୁଙ୍କା ମୁଁ ତହିରେ ଉଇ” । ଝିଅଟି ପାଖରେ ଠିଆ ହୋଇ ନିଜେ କାନ୍ଦିପକାଇଥିଲା । ମନ୍ତ୍ରୀପୁଅ

କହିଲା, "ହଉ ଉଠ ଉଠ ବାହାର । ତେଣେ ରାଇଜ ସାରା ତୁମବାଟ ଚାହିଁ ବସି ରହିଛନ୍ତି ।"

ନିମିଷକରେ ସାମାନ୍ୟ କିଛି ଅପୂର୍ବ ଚିଜ ସହିତ ସେମାନେ ଧରାଧରି ହୋଇ ପୋଖରୀରୁ ବାହାରି ଆସିଲେ । ମଣିଟିକୁ ଭଉଣୀ ହାତରେ ଦେଇ ସବାରିରେ ବସାଇ, ସଦଳବଳେ ରାଜ୍ୟ ଆଡ଼କୁ ମୁହାଁଇଲେ । ରାଜାପୁଅ ମନ୍ତ୍ରୀପୁଅ ସାଥିରେ ଘୋଡ଼ାରେ ବସିଲା, ରାତିରେ ସେମାନେ ଗୋଟିଏ ତୋଟାରେ ଡେରା ପକାଇଲେ । ଖିଆପିଆ ପରେ କିଏ କୁଆଡ଼େ ଶୋଇ ପଡ଼ିଲେଣି । ରାଣୀ ଫୁଲ ପରି ଜହ୍ନ ଆଲୁଅ ପଡ଼ିଛି । ମନ୍ତ୍ରୀପୁଅ ଏକାକୀ ବାର ହାତ ଖଣ୍ଡାଧରି ଜଗି ବସିଛି । ଗୋଟିଏ ବଡ଼ ଶିମିଳି ଗଛରେ ଶଙ୍ଖଚିଲଟିଏ ବସା ବାନ୍ଧିଥାଏ । ଶଙ୍ଖଚିଲ ଆଉ ତା ପିଲାଏ କଥା ହେଉଥା'ନ୍ତି । ଯୋଗକୁ ମନ୍ତ୍ରୀପୁଅ ପକ୍ଷୀମାନଙ୍କ ଭାଷା ବୁଝିପାରୁଥାଏ । ପିଲା ମା'କୁ କହୁଛନ୍ତି, "ମା ଲୋ ମା, କି ସୁନ୍ଦର ପୁଅ ଝିଅ ଯୋଡ଼ିଏ ଶୋଇଛନ୍ତି । ସେମାନେ ବରକନ୍ୟା ହେବେପରା ।" ମା କହୁଛି, "ହେଇଥିଲେ କେଡ଼େ ବଢ଼ିଆ ଯୋଡ଼ିଟିଏ ହୋଇଥା'ନ୍ତେ । ହେଇପାରୁଛନ୍ତି କୋଉଠି, ବାହାଘର ହେଇପାରିଲେ ତ ।"

ପିଲାଏ କହିଲେ, "ବାହାଘର ହେଇପାରିବନି କାହିଁକି ।" ମା କହିଲା, "ଶୁଣ ବିଭାଘର ପାଇଁ ବହୁତ ବାଧା । ଉଆସକୁ ଗଲା ବେଳକୁ ଏମାନଙ୍କ ବରଣ ପାଇଁ ଯେଉଁ ତୋରଣଟି ତିଆରି ହେଇଛି ସେ ଭାଙ୍ଗିଯାଇ ଆଙ୍କ ଉପରେ ପଡ଼ିଯିବ ଯେ ଏମାନେ ମରିଯିବେ ।" ପିଲାଏ କହିଲେ, "କିଏ ଯଦି ଆଗ ଯାଇ ଏ ତୋରଣ ଭାଙ୍ଗିଦିଏ ତେବେ ଏମାନେ ବର୍ତ୍ତିଯିବେ ତ!" ମା କହିଲା, "କିଏ ଜାଣିଛି ଯେ ଭାଙ୍ଗିବ । ଏବାର ଯଦି ବି ବଞ୍ଚିଯାନ୍ତି, ତେବେ ବି ବଞ୍ଚିବେନି । କାହିଁକି ନା ବିଭାମଣ୍ଡପରେ ପଞ୍ଚୁଗ୍ରାସୀ ଖୁଆଇଲା ବେଳେ ଗୁରୁମା ଦେହରେ ପିଶାଚୁଣି ପଶି ଅନ୍ନ ଥାଳିରେ ବିଷ ମିଶେଇ ଦେଇଥିବ । ତାକୁ ଖାଇଲେ ମରିବେ ।" ପିଲାଏ କହିଲେ, "କିଏ ଜାଣିବାର ହୋଇଥିବ ସେ ଥାଳିକ ଭାତ ଫୋପାଡ଼ି ଆଉ ଥାଳିକରେ ପଞ୍ଚୁଗ୍ରାସୀ କରାଇବ ତେବେ ବଞ୍ଚି ଯିବେ ତ?" "ତେବେ ବି ବଞ୍ଚିବେନି ମା କହିଲା । ମଧୁଶଯ୍ୟା ଘରେ ବରକନ୍ୟା ଶୋଇଲେ ଏ ନାଗକନ୍ୟା ନାକରୁ ନାଗ ବାହାରି ପୁଅକୁ ଦଂଶିବ । ତାକୁ ମାରି ପାତାଳକୁ ଯିବ ।"

ମା ପିଲା ସୁଁ ସୁଁ ହୋଇ ଦୁଃଖରେ କାନ୍ଦିଲେ । ଏମାନେ ଆଉ ବଞ୍ଚିବେ ନା ବର କନ୍ୟା ହେବେ । ନା ଘର କରିବେ । ପିଲାଏ କହିଲେ, "ହେ ପ୍ରଭୁ କିଏ ଯଦି ଶୁଣନ୍ତା କିଛି ପ୍ରତିକାର କରନ୍ତା ହେଲେ ।" ମା କହିଲା, "କିଏ ଯଦି ଶୁଣି କାହା ଆଗରେ ପ୍ରକାଶ କରିବ ତାହା ହେଲେ ପଥର ପାଲଟିଯିବ ।" ପିଲାଏ କହିଲେ, "ପଥରରୁ ମଣିଷ ହେବାର ଆଉ କ'ଣ ଉପାୟ ନାହିଁ ।" ମା କହିଲା, "ନାଇଁ କାହିଁକି ଅଛି । ଏଇ ବରକନ୍ୟାଙ୍କର ଯୋଉ ପ୍ରଥମ ପିଲାଟି ହେବ, ନାହି ନାଡ଼ ଲଗାଇ ତାକୁ ଯଦି ଆଣି ସେହି ପଥର ମୂର୍ତ୍ତି ଉପରେ ଛେଚି ଦେବେ ତାହାହେଲେ ତା ରକ୍ତ ଲାଗି ପଥର ମଣିଷ ପାଲଟି ଯିବ । ଏଡ଼େ ଗେଲବସର ପିଲାଟିକୁ ମଣିଷ ଜନ୍ମ ପାଇ କିଏ ମୁରୁଛିବ । ଏତେ ନିଷ୍ଠୁର କିଏ ହେବ ।" ଏତିକିରେ ଶଙ୍ଖଚିଲ ପିଲାଏ ଚୁପ ହୋଇଗଲେ । କଥା ଶୁଣି ଶୁଣି ହୁଏତ ଶୋଇଗଲେଣି ।

ଏଣେ ମନ୍ତ୍ରୀପୁଅର ଅକଲ ଗୁଡୁମ୍ ହୋଇଗଲାଣି । କାନ ଭାଁ ଭାଁ ଡାକିଲାଣି । ଛାତି ପଡୁଛି ଉଠୁଛି । ସେ ଠାକୁରଙ୍କୁ ପ୍ରଣାମ କଲା, ପାଣି ପିଇଲା, ସକାଳ ପାହିପାହି ଆସିଲାଣି । ବାହାରିବାକୁ ସମସ୍ତଙ୍କୁ ଉଠାଇ ସେ ଆଗେ ଆଗେ ଘୋଡ଼ା ଛୁଟାଇଲା । ରାଜାପୁଅକୁ ପାଲିଙ୍କିରେ ବସାଇଲା ।

ଯେତେ ଘୋଡ଼ାରେ ବସି ଆସିବାକୁ କହିଲା ରାଜାପୁଅ, ସେ ତାକୁ ଇଆଡୁ ସିଆଡୁ କହି ବୁଝେଇଦେଲା । ଆଗେ ଆଗେ ଚାଲିଛନ୍ତି ବାଜାବାଲାମାନେ, ବାଜା ବଜେଇବଜେଇ ବରକନ୍ୟାଙ୍କୁ ନେଇ ଆସୁଛନ୍ତି । ପଛେ ପଛେ ଅନ୍ୟମାନେ ଆସୁଛନ୍ତି । ସାରା ରାଜ୍ୟ ଦୁଲହନ ପରି ସଜାହୋଇଛି । ଉଆସ ପାଖେଇ ଆସିଲା । ମନ୍ତ୍ରୀପୁଅ କ'ଣ କଲା ନା ଘୋଡ଼ାକୁ ଜୋରରେ ଛୁଟେଇ ଆଣିଲା । ଘୋଡ଼ା ଏମିତି କୁଦା ମାରିଲା ଯେ ଏକା ଥରରେ ତୋରଣଟା ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଗଲା । ସାଙ୍ଗେ ସାଙ୍ଗେ ଲୋକମାନେ ସଫା କରିଦେଲେ ।

ବରକନ୍ୟା ଏବେ ବେଦିକୁ ଆସିଲେ । କନ୍ୟାର ରୂପ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ, ମୋହିତ ହେଇଗଲେ। ମୁଗ୍ଧ ହୋଇଗଲେ । ସମସ୍ତେ କହିଲେ, "ଏମିତି ସୁନ୍ଦରୀ ପୁଣି ଅଛନ୍ତି!" କେହି କେହି କବି ଗୀତରେ କହିଲେ, "ଆନ ନାରୀ ସିନା ମର୍ତ୍ତ୍ୟର କୁସୁମ, ଏ ତ ଗଗନର ତାରା, ଆନ ନାରୀ ସିନା ମର୍ତ୍ତ୍ୟର ତଟିନି, ଏ ତ ମନ୍ଦାକିନୀ ଧାରା ।" ସେ ଯାହାହେଉ ବାହାଘର ହେଲା । ବାହାଘର ସରିଲା ପଞ୍ଚୁଗ୍ରାସୀ ବେଳ ଆସିଗଲା । ଗୁରୁମା ଆସି ପଞ୍ଚୁଗ୍ରାସୀ ଥାଳି ଧରି ଗୁଣ୍ଡାଟିଏ ଖୁଆଇଲା ବେଳକୁ ମନ୍ତ୍ରୀପୁଅ କୁଆଡ଼େ ଥିଲା ବେଦି ଉପରକୁ ଉଠୁଉଠୁ ଝୁଣ୍ଟିପଡ଼ିଲା । ସେ ଥାଳି ଉପରେ ଖସି ପଡ଼ିଲା । ଥାଳିଆରୁ ସବୁ ତଳେ ପଡ଼ିଗଲା । ରାଜାପୁଅର ଭୃରୁ କୁଞ୍ଚିତ ହେଲା । ସାଙ୍ଗେ ସାଙ୍ଗେ ଆଉ ଗୋଟାଏ ଥାଳି ଆଣି ପଞ୍ଚୁଗ୍ରାସୀ କରାଗଲା । ରାଜାପୁଅର ମୁହଁ ଗମ୍ଭୀର ଦେଖାଗଲା ।

ମଧୁଶଯ୍ୟା ରାତି । ସେ ଘର ସଜା ହେଇଛି କାହିଁ କେତେ, ବରକନ୍ୟା ରତ୍ନ ପଲଙ୍କ ଉପରେ ପହୁଡ଼ିଛନ୍ତି । ଦିଜଣକୁ ଘୋର ନିଦ । ଠିକ୍ ରାତି ମଝିଆମଝି ବେଳକୁ ମନ୍ତ୍ରୀପୁଅ ମୁଣ୍ଡ ପାଖରେ ଖଣ୍ଡାଧରି ଠିଆ ହେଇଛି । ଏତିକିବେଳେ ଝିଅ ନାକରୁ ବାହାରିଲା ସୂତାପରି ସରୁ ନାଗ ସାପଟିଏ । ତା ପରେ ସିଏ ଫୁଲି ଫୁଲି ବିରାଟ ରୂପ ନେଲା । ସେ ଯେତେବେଳେ ଫଣାଟେକି ରାଜାପୁଅକୁ ଚୋଟ ମାରିବାକୁ ବାହାରିଲା, ମନ୍ତ୍ରୀପୁଅ ଖଣ୍ଡାରେ ଚୋଟେ ଦେଲା ଯେ ସେ ଦିଗଡ଼ ହୋଇ ତଳେ ପଡିଲା । ସେ ଖଣ୍ଡାରେ ଖଟ ତଳକୁ ପେଲିଦେଲା । ଧୀରେ ଉଠି ଚାଲି ଆସିଲା ବେଳକୁ ତା'ର ଦୃଷ୍ଟି ପଡ଼ିଗଲା । ଝିଅଟି ଗାଲରେ ଟୋପାଏ ନାଗ ରକ୍ତ ପଡ଼ିଯାଇଛି । ଏ ବିଷ କାଳେ ରାଜାପୁଅ ଓଠରେ ଲାଗିଯାଇପାରେ । ସେ କ'ଣ କଲାନା ତା ପଗଡ଼ି ଚିରି ଖଣ୍ଡାମୁନରେ ଗୁଡ଼ାଇ, ଦୂରରୁ ଝିଅଟି ଗାଲରୁ ରକ୍ତ ପୋଛି ଆଣିଲା ବେଳକୁ ଦୁଇଜଣଙ୍କ ନିଦ ଭାଙ୍ଗିଗଲା ।

ରାଜାପୁଅ ତା ହାତକୁ ଧରି ପକାଇଲା । କହିଲା, "ଛି ଛି ସଙ୍ଗାତ ତମ ମନରେ ଏତେ କଥା ଥିଲା ? ଲୋକଦେଖାଣିଆରେ ତମେ ମୋ ସାଥିରେ ବିଭାଘର ହେବାରେ ଏତେ ଖୁସି ହେଉଥିଲ, ଆମକୁ ଆଣିବାକୁ ଯିବାରେ ଏତେ ଡେରି ହେବାର କାରଣ ତମର ମନଗଢ଼ା କଥା । ତମ ମନରେ ଅନ୍ୟ କଥା ଥିଲା ମୁଁ ବର୍ତ୍ତମାନ ବୁଝିପାରୁଛି । ମୋ ଶୁଭ ଅନୁକୂଳ ତୋରଣ ତୁମେ ଜାଣିଜାଣି ଭାଙ୍ଗିଦେଇଛ । ମୋର ପ୍ରଥମ ପଞ୍ଚୁଗ୍ରାସୀ ଥାଳି ତୁମେ ଜାଣିଜାଣି ପକାଇଦେଇଛ । ଏ ଝିଅ ଉପରେ ତମର ପ୍ରଥମରୁ ହିଁ ନଜର । ତମେ ମୋତେ ମାରି ଏ ଝିଅକୁ..." ।

ମନ୍ତ୍ରୀପୁଅ ତା ପାଟିରେ ହାତ ଦେଇ ଆଉ କିଛି କୁହାଇ ଦେଲାନି । ନିଜେ କାନରେ ହାତ ରଖି କହିଲା, "ଓହୋଃ ବନ୍ଦ କର ବନ୍ଦ କର ଏହି କୁତ୍ସିତ କଥା । ସେ ମୋର ନିଜର ଭଉଣୀ । ଏପରି ଅପବାଦ ଦେଇ ପାପର ଭାର ବଢ଼େଇ ଦିଅନା । ତା ଗାଲରେ ସାପ ରକ୍ତ ପଡ଼ିଥିଲା ସେଥିପାଇଁ

ଦେଖ, ଏଇ ଖଣ୍ଡା ମୁନରେ ପଗଡ଼ି ଚିରି କନା ଗୁଡ଼େଇ ସେଇ ରକ୍ତ ମୁଁ ପୋଛି ଆଣିଚି।" ରାଜାପୁଅ ଦେଖିଲା, ସେଇ ଖଣ୍ଡା ମୁନରେ ଲାଗିଥିବା ପଗଡ଼ି କନାରେ ରକ୍ତ ଲାଗିଚି। ସେ ଆଶ୍ଚର୍ଯ୍ୟ ଓ ବିରକ୍ତ ହୋଇ କହିଲା, "ସାପ?"। ମନ୍ତ୍ରୀ ପୁଅ ତାକୁ ପଲଙ୍କରୁ ଟାଣିଆଣି ତଳେ ଦିଗଡ଼ ହେଇ ପଡିଥିବା ସାପ ଦେଖାଇଲା। ସେ ବ୍ୟଙ୍ଗ ହସ ହସି କହିଲା, "ନିଜକୁ ବଞ୍ଚାଇବାକୁ ଇଏ ତୁମର ଗୋଟିଏ ଚାଲ ହେଇପାରେ।" ମନ୍ତ୍ରୀପୁଅ କାନ୍ଦି କାନ୍ଦି କହିଲା, "ଏତେ ଦିନ ପରେ ତମେ ଏମିତି ଏ କଦର୍ଯ୍ୟ କଥା ଭାବିପାରିଲ? ମୁଁ ଯଦି ତୁମକୁ ସବୁ କଥା ଖୋଲି କହିପାରନ୍ତି ହେଲେ।" ରାଜାପୁଅ କହିଲା, "କୁହ କହି ପାରିବନି କାହିଁକି?" ମନ୍ତ୍ରୀ ପୁଅ କହିଲା, "ମୁଁ ଯଦି ସବୁକଥା କହିବି ତେବେ ପଥର ପାଲଟି ଯିବି।" ରାଜାପୁଅ ଠୋ ଠୋ ହସି କହିଲା, "ଓହୋ, ଇଏବି ତମର ମନଗଢ଼ା କାହାଣୀ।"

ମନ୍ତ୍ରୀପୁଅ ବିକଳରେ କହିଲା, "ତା ହେଲେ ତମେ ଶୁଣିବ ତ?" ରାଜାପୁଅ ବଡ଼ ପାଟିକରି କହିଲା, "ହଁ, ହଁ, ହଁ! ଆଉ କେତେଥର କହିବି?" "ମୁଁ ପଥର ହେବାରେ ତମର ଆପତ୍ତି ନାହିଁ ତ?", ମନ୍ତ୍ରୀପୁଅ ପୁଣିଥରେ କହିଲା। ରାଜାପୁଅ ରାଗରେ ସଙ୍ଗାତକୁ ହଲେଇ ଦେଇ କହିଲା, "ହୋଇଯାଅ, ତମ ପରି ପାପୀର ଏହା ହିଁ ଉପଯୁକ୍ତ ଦଣ୍ଡ।"

ମନ୍ତ୍ରୀପୁଅ ଶେଷଥର ପାଇଁ ରାଜାପୁଅକୁ ଭଲ କରି ଚାହିଁଲା। କହିଲା, "ତା ହେଲେ ଶୁଣ।" ସେ ଆପଣାର ଚିରା ପାଟ ପଗଡ଼ିକୁ ଆଣି, ଭଲକରି ଘୋଡ଼ାଇ ହୋଇ ପଡ଼ିଲା। ସେତେବେଳକୁ ରାଜା ରାଣୀ, ମନ୍ତ୍ରୀ ଆଉ ତାଙ୍କ ସ୍ତ୍ରୀ, ଉଆସର ଲୋକମାନେ ସେଠି ଆସି ଜମା ହେଇଗଲେଣି। ଝିଅଟି କାଠ ପିତୁଳା ପରି ଠିଆ ହୋଇ ରହିଚି। ମନ୍ତ୍ରୀପୁଅ ଦୀର୍ଘ ନିଶ୍ୱାସ ପକାଇ ଆରମ୍ଭ କଲା ସେ ଦିନ ରାତି କଥା। ସମସ୍ତେ ଯେତେବେଳେ ନିଘୋଡ଼ ନିଦରେ ଶୋଇଯାଇଥିଲେ ସେ ଏକାକୀ ଜଗି ରହିଥିଲା, ତା ଆଦରର ଭଉଣୀକୁ ଆଉ ପ୍ରାଣର ସଙ୍ଗାତକୁ। ସେତେବେଳେ ସେ ଶଙ୍ଖଚିଲ ଆଉ ତା ପିଲାଙ୍କ କଥା ଶୁଣିଲା। ଯେହେତୁ ସେ ପକ୍ଷୀମାନଙ୍କ ଭାଷା ବୁଝିବାକୁ ସାଧନା କରିଚି, ସେ ସବୁ ବୁଝି ଜାଣିଜାଣି ତୋରଣ ଭାଙ୍ଗିଚି, ନହେଲେ ଏମାନେ ବଞ୍ଚି ନ ଥା'ନ୍ତେ। ଠିକ୍ ଆସି ଏଠି ପହଞ୍ଚିଲା ବେଳକୁ ଏମାନଙ୍କ ଉପରେ ତୋରଣ ଭାଙ୍ଗି ପଡ଼ିଥାଆନ୍ତା। ସେତେବେଳକୁ ତା'ର ଆଣ୍ଠୁ ପର୍ଯ୍ୟନ୍ତ ପଥର ହେଇ ସାରିଲାଣି ପଗଡ଼ି ତଳେ ତଳେ।

ତା ପରେ ସେ ପଞ୍ଚୁଗ୍ରାସୀ ଥାଳି ବିଛାଡ଼ି ଫୋପାଡ଼ି ଦେଇଚି ଜାଣି ଜାଣି। "ଯଦି ବା କୌଣସି କାରଣରୁ ଏ ବଞ୍ଚିଥା'ନ୍ତେ, ତେବେ ଏ ପଞ୍ଚୁଗ୍ରାସୀ ବ୍ୟଞ୍ଜନ ଖାଇଥିଲେ ମରିଥା'ନ୍ତେ। ପଚାରି ବୁଝ, ସେଇ ବିଷ ମିଶା ଖାଦ୍ୟ ଖାଇ ବିରାଡ଼ି ପାରା ଆଉ ବଣି ମରିଛନ୍ତି କି ନାହିଁ। କୁକୁର ଖାଇ ମରିଚିକି ନାହିଁ।" ଉଆସର ଦୁଇଜଣ ପରିଚାରିକା କହିଲେ, "ଇଏ ସତକଥା।" ସେତେବେଳକୁ ମନ୍ତ୍ରୀପୁଅର ଛାତି ପର୍ଯ୍ୟନ୍ତ ପଥର ହୋଇ ସାରିଲାଣି।

ମନ୍ତ୍ରୀପୁଅ କହିଲା, "ସମସ୍ତେ ଚାହିଁ ଦେଖ, ମୋ ଭଉଣୀ ପରି ଅପୂର୍ବ ସୁନ୍ଦରୀ ଏଇ ପୃଥିବୀରେ ବିରଳ। ଏ ନାଗକନ୍ୟା। ଇୟା ନାକରୁ ସୂତା ପରି ସରୁ ନାଗ ବାହାରି ଫୁଲି ଫୁଲି ଏତେ ବଡ଼ ହେଇଚି। ସେ ତୁମକୁ ଦଂଶନ କରି ତାକୁ ଦଂଶି ପୁଣି ପାତାଳପୁରୀ ନାଗଲୋକକୁ ଚାଲିଯାଇ ଥାଆନ୍ତା। ଆଉ ତୁମର କିଛି ଭୟ ନାହିଁ।"

ହଠାତ୍ ଝିଅଟି ଭାଇ ଭାଇ ଡାକି, ଚେତନା ହରାଇ ସେଇଠି ପଡ଼ିଗଲା, ରାଜାପୁଅ ଚମକି

ପଡ଼ିଲା । ସେତେବେଳକୁ ମନ୍ତ୍ରୀପୁଅର ଗଳା ପର୍ଯ୍ୟନ୍ତ ପଥର ହେଇ ସାରିଚି । ରାଜାପୁଅ ପଥରରେ ମୁଣ୍ଡ କଚାଡ଼ି କାନ୍ଦି କାନ୍ଦି କହୁଛି, "ମୁଁ ଚାଣ୍ଡାଳ କ'ଣ ନ କଲି । ଆଉ ଏ ଜୀବନ ଧରିବା ବୃଥା । ମୁଁ ମହା ପାତକୀ । ଆଉ ଏ ସଂସାରରୁ ବିଶ୍ୱାସ, ସ୍ନେହ, ବନ୍ଧୁତା ଚିରଦିନ ପାଇଁ ଲୋପ ପାଇଗଲା ।" ତା ମୁଣ୍ଡରୁ ଧାର ଧାର ରକ୍ତ ନିଗିଡ଼ି ପଥର ଓଦା ହେଇଯାଇଛି । ରାଜା ରାଣୀ ମନ୍ତ୍ରୀ ସମସ୍ତେ ଧରି ପାରୁନାହାଁନ୍ତି ରାଜାପୁଅକୁ ।

ମନ୍ତ୍ରୀପୁଅ ବଡ଼ ପାଟିରେ ପୁଣି କହିଲା, "ଶୁଣ ସଙ୍ଗାତ ତୁମକୁ ବଞ୍ଚିବାକୁ ହେବ, ନ ହେଲେ ମୋର ସମସ୍ତ ତପସ୍ୟା ବୃଥା ହୋଇଯିବ । ତମର ପ୍ରଥମ ସନ୍ତାନଟିକୁ ଫୁଲନାଡ଼ ଲାଗି ଦୁଇଜଣ ଯଦି ଏଇ ଶିଳାମୂର୍ତ୍ତି ଉପରେ କଚାଡ଼ି ଦେଇପାରିବ ତେବେ ମୁଁ ପୁଣି ବଞ୍ଚିବି ।" ମନ୍ତ୍ରୀପୁଅ ଚୁପ୍ ହେଇଗଲା । ସେ ପୂରାପୂରି ପଥର ମୂର୍ତ୍ତି ହୋଇ ସାରିଥିଲା ।

ଅନେକ ମନସ୍ତାପ... ଅନେକ ଆତ୍ମଗ୍ଲାନି... । ଅନେକ ଲୁହ ଢାଳି ଢାଳି ରାଜାପୁଅ ସତେ ଅବା ମୂକ ପାଲଟି ଯାଇଚି । ସମସ୍ତଙ୍କ ହସ ଲିଭି ଯାଇଛି । ଆପଣା ଶୋଇଲା ଘରେ, ରତ୍ନ ସିଂହାସନରେ ମୂର୍ତ୍ତିଟି ସ୍ଥାପନ କରି ନିତିଦିନ ଫୁଲଚନ୍ଦନ ଧୂପଦୀପ ଦେଇ ଦୁହେଁ ପୂଜା କରନ୍ତି । ଝିଅଟି ଆଗରୁ ତା କାନି ପଣତରେ ମୂର୍ତ୍ତିଟିକୁ ପୋଛି ପୋଛି ନିର୍ମଳ କରି ଦେଉଥାଏ ନିତିଦିନ । ଏମିତି ସମୟ ତା ବାଟରେ ଚାଲିଥାଏ । ଝିଅଟି ଗର୍ଭବତୀ ହେଲା । ସମସ୍ତେ ଅପେକ୍ଷା କରି ରହିଥାନ୍ତି । ଅନେକ ଆଶା ଆକୁଳତା ନେଇ ଠିକ୍ ସମୟରେ ରାଜାପୁଅର ଗୋଟିଏ କୁନୁକୁନିଆ ପୁଅ ହେଲା ।

ରାଜମହଲ ସାରା ଆନନ୍ଦ କୋଳାହଳରେ ମୁଖରିତ ହେଲା । ତା'ର ପଦ୍ମଫୁଲ ପରି କଅଁଳ ଛନଛନିଆ ଗୁଲୁଗୁଲିଆ ମୁହଁକୁ ବଇରି ଛ' ଘଡ଼ି ଚାହିଁବ । କିନ୍ତୁ ରାଜାପୁଅ ଆଉ ସେ ଝିଅଟି ମନରେ କୌଣସି ଭାବାନ୍ତର ନାହିଁ । ସେମାନେ ସେଇ ପୁଅଟିକୁ ଥରେ ମାତ୍ର ନଚାହିଁ ଆଣି ସେଇ ମୂର୍ତ୍ତି ଉପରେ କଚାଡ଼ି ଦେଲେ । ରକ୍ତ ଧାର ଧାର ହୋଇ ନିଗିଡ଼ି ପଡୁଛି । ନିଦରୁ ଉଠିଲା ପରି ମନ୍ତ୍ରୀପୁଅ ଚାହିଁ ଦେଇ ତା କୋଳ ଉପରେ ପଡିଥିବା ରକ୍ତ ଜୁଡୁବୁଡୁ ଛୁଆକୁ ଉଠେଇ ଆଣି ଛାତିରେ ଚାପି ଧରିଲା । ହଠାତ୍ ପିଲାଟି କୁଆଁ କୁଆଁ ରାବ କରି ଉଠିଲା ।

ରାଜାପୁଅ ମନ୍ତ୍ରୀପୁଅ ପରସ୍ପରକୁ ଜାବୁଡ଼େଇ ଧରି ଗୋଟିଏ ଦିହ ହେଇଯାଇଛନ୍ତି କି ଆଉ । ଝିଅଟି ମନ୍ତ୍ରୀପୁଅର ପାଦରେ ମଥାରଖି କଇଁ କଇଁ ହୋଇ କାନ୍ଦୁଛି । ମନ୍ତ୍ରୀପୁଅ ପରମ ସ୍ନେହରେ ତା ମଥାରେ ହାତ ରଖିଲା । ସମସ୍ତଙ୍କ ଆଖିରେ ଲୁହ ଓଠରେ ହସ । ଲୋକ ଯେ ଲୋକ, ଥାଟ ପଙ୍ଗାଳି ଭାଙ୍ଗୁଚି । ହଠାତ୍ ରାଣୀ ତଳେ ପଡ଼ି କୁଆଁ କୁଆଁ ହେଉଥିବା ଛୁଆଟିକୁ ଉଠେଇ ନେଇ ତା ଗାଲ, ମୁହଁ ଦିହ ହାତକୁ ଗେଲରେ ଗେଲରେ ଛାଇ ଦେଲେ । ତାହାର କୋଉଠି ହେଲେ ଆଘାତର ଚିହ୍ନ ମାତ୍ର କିଛି ନ ଥିଲା । ମନ୍ତ୍ରୀ ଆଉ ମନ୍ତ୍ରୀପୁଅର ମା ଦୁଇଜଣ ତାଙ୍କ ପୁଅକୁ ଦୁଇ ପାଖରୁ କୋଳରେ ଧରି ରଖିଥିଲେ । ରଙ୍କ ପରି ରାଣୀଙ୍କ ପାଖରେ ହାତ ପତେଇ ରାଜା କହିଲେ ମତେ ଟିକିଏ ଦିଅ ମ, ମତେ ଟିକେ ଦିଅ ।



# କଳାରାଜନ କଥା

ଗୋଟିଏ ରାଇଜରେ ଜଣେ ରାଜା ଥିଲେ । ତାଙ୍କର ଗୋଟିଏ ବୋଲି ପୁଅ ଯେ, ତା ନା କଳାରାଜନ । କଳାରାଜନ ଦେଖିବାକୁ ଯେମିତି ସୁନ୍ଦର ସେମିତି ବୁଦ୍ଧିମନ୍ତ । ସାରା ରାଇଜର ଲୋକେ ତାକୁ ବହୁତ ଭଲ ପାଉଥିଲେ । ହେଲେ କ'ଣ ହବ, ପିଲାଦିନରୁ ତା ମାଆ ମରିଯାଇଥିଲେ । ଯୋଉ ସାବତ ମାଆ ଆସିଲା, ସେ ତାକୁ ଦି ଆଖିରେ ଦେଖିପାରେ ନାହିଁ । ରାଜାଙ୍କୁ କି ଗୁଣୀ କଲା କେଜାଣି ତା'ରି କଥାରେ ଉଠ ବସ ହେଲେ । ରାଜ୍ୟ କଥା କି ପୁଅ କଥା ବୁଝିବାରେ ମନ ନାହିଁ । ରାଣୀ ରାଜ୍ୟ ଚଳାଇବାର ଦାୟିତ୍ୱ ଆପଣା ହାତକୁ ନେଲା । ମନ ଇଚ୍ଛା ଶାସନ ଚଳେଇଲା । ଦିନେ ଦେଖାଗଲା କଳାରାଜନ ରାଜବାଟିରେ ନାହିଁ, କୁଆଡ଼େ ଚାଲିଯାଇଚି । ପ୍ରକୃତରେ କଳାରାଜନ କୁଆଡ଼େ ଚାଲିଯାଇ ନ ଥିଲା । ତା ମାମୁଘରୁ ଆସିଥିବା ତା ମାଆଙ୍କ ବିଶ୍ୱାସୀ ପରିଜନ ଜଣେ ତାକୁ ନେଇ ବହୁ ଦୂରଦୂରାନ୍ତରେ ଥିବା ଗୁରୁଗୃହରେ ଛାଡ଼ି ଆସିଥିଲା ।

ଏ କଥା କେହି ଜାଣି ନ ଥିଲେ । ରାଣୀ ଉପର ଠାଉରିଆରେ ଖୋଜାଖୋଜି କଲେ, କାରଣ ରାଜ୍ୟ ଲୋକେ ତାଙ୍କୁ କାଇଲି କରିଦେବେ । ଦିନେ ଖବର ମିଳିଲା ଯେ, ଘନ ଜଙ୍ଗଲରେ ଖଣ୍ଡିଆଖାବରା ହୋଇ ଗୋଟିଏ ଶବ ମିଳିଛି । ତାକୁ କିଏ ଅଧାଅଧି ଖାଇଦେଇଛି । ଚିହ୍ନି ହେଉନି । କିନ୍ତୁ ରାଜାପୁଅର ପିନ୍ଧା ଜାମାପଟାର କିଛି ଚିରା ଅଂଶ ଏବଂ କିଛି ଗହଣା ସେଠି ପଡ଼ିଥିଲା । ତେଣୁ ରାଣୀ ନିଧଡ଼କ ହେଲା ଯେ ଯାହା ହଉ ତା'ର କଣ୍ଟା ଗଲା । ଏଣିକି ସେ ନିଷ୍କଣ୍ଟକ ରାଜ୍ୟର ଏକଛତ୍ର ଅଧିକାରିଣୀ, ଏକାଙ୍ଗ ଚକ୍ରବର୍ତ୍ତୀ ।

କିନ୍ତୁ ତା'ର ସୁଖ ସ୍ୱପ୍ନ ହଠାତ୍ ଦିନେ ଉଭେଇ ଯାଉଚି, ଅନୁଭବ କଲା ସିଏ । ସକାଳୁ ସକାଳୁ ସେ ଦିନ ଗୋଟିଏ ସୁଦର୍ଶନ ଯୁବକ ବିରାଟ ଧଳାଘୋଡ଼ାରେ ଚଢ଼ି ଉଆସରେ ପହଁଚି ନିଜକୁ କଳାରାଜନ ବୋଲି ଘୋଷଣା କଲା । ରକ୍ତ ରକ୍ତକୁ ଚିହ୍ନିଲା । ରାଜା କଳାରାଜନକୁ ଦେଖି ତାଙ୍କ ମନ ଭିତରେ ଏମିତି ଆନନ୍ଦର ଜୁଆର ଉଠୁଥିଲା ଯେ ସେ କେବଳ ଅନୁଭବ କରୁଥିଲେ । ମୁହଁ ଖୋଲି କିଛି କହିପାରୁ ନ ଥିଲେ । ସେ ନିଶ୍ଚିତ ରୂପେ ବୁଝିପାରୁଥିଲେ, ସେ ହିଁ ତାଙ୍କର ହଜିଯାଇଥିବା ଏକମାତ୍ର ଶଙ୍ଖାଳୀ । ଯାହାର ଡାହାଣ ଜଙ୍ଘରେ ବଂଶାନୁକ୍ରମିକ ତିଳ ଚିହ୍ନ ଥିଲା । ଯାହା ତାଙ୍କ ବ୍ୟତୀତ ଅନ୍ୟ ସମସ୍ତଙ୍କର ଅଜଣା ଥିଲା ।

ରାଣୀ କିନ୍ତୁ କଳାରାଜନକୁ ଯୁବରାଜ ହୋଇଥାଇପାରେ ବୋଲି ମାନୁ ନ ଥିଲା । ସଭାସଦ୍‌ମାନଙ୍କୁ ସେ ବିପୁଳ ବିଭବ, ପ୍ରତିପତି ଏବଂ ଉଚ୍ଚ ଆସନ ଦେଇ ଆପଣାର ଅକ୍ତିଆରରେ ରଖିଥିଲା । ସେମାନଙ୍କ ଜରିଆରେ ପ୍ରଜାମାନଙ୍କୁ ବୁଝାଇଥିଲା ଯେ ଏଇ ବିଦେଶୀ ଟୋକା ଖଣ୍ଡକ

ରାଜ୍ୟ ଲୋଭରେ କୁଆଡୁ ଆସି ନିଜକୁ ପ୍ରତିପାଦିତ କରିବାକୁ ଚାହୁଁଛି ଯୁବରାଜ ଭାବରେ । ତେଣୁ ତାକୁ ଏକ ପରୀକ୍ଷାର ସମ୍ମୁଖୀନ ହେବାକୁ ହେବ । ସେଥିରେ ସେ ଯଦି କୃତକାର୍ଯ୍ୟ ହୁଏ, ତେବେ ତାକୁ ଏ ରାଜ୍ୟର ଉତ୍ତରାଧିକାରୀ ଭାବରେ ସମସ୍ତେ ମାନିନେବେ ।

ପ୍ରଜାମାନେ କିନ୍ତୁ ଏହି ସୌମ୍ୟଦର୍ଶନ ଯୁବକର ଶ୍ରୀ, ଧୀ, ସୌର୍ଯ୍ୟବନ୍ତ ଚେହେରା ଦେଖି ବୁଝିପାରୁଥିଲେ ଏ ନିଶ୍ଚୟ କଳାରାଜନ । ସବୁପ୍ରକାର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସେମାନଙ୍କୁ ରାଣୀର ମନମାନୀ ଅତ୍ୟାଚାରରୁ ଉଦ୍ଧାର କରିପାରିବ । ରାଣୀ କିନ୍ତୁ ଭଲ ଭାବରେ ଜାଣିଥିଲା, କଳାରାଜନକୁ ସେ ଯୋଉଠିକି ପଠାଉଚି ସେଠାକୁ ତ ସେ କେବେ ଯାଇପାରିବ ନାହିଁ । କାରଣ ସେ ଅଞ୍ଚଳ ଅତ୍ୟନ୍ତ ଦୁର୍ଗମ, ସେଠାକୁ କେହି କେବେ ହେଲେ ଯାଇନାହିଁ । ଯଦି ବା କିଏ ଯାଇଥିବ, ତେବେ ସେ ଫେରିନାହିଁ । ଏ ବିଦେଶୀ ମଧ୍ୟ ଫେରିବନାହିଁ । ଗଲା ପୁତ୍ର ବାହୁଡ଼ି ନ ଅଇଲା ।

ଏ ଦୃଢ଼ ବିଶ୍ୱାସ ରଖି ସେ କଳାରାଜନକୁ କହିଲା, "ଏ ସାତ ପାହାଡ଼ ଆର ପାରିରେ ଗୋଟିଏ କିଲ୍ଲା ଅଛି । ସେଠି ମୋର ମାମୁ ଘର, ମୋ ମା ଆଉ ଦୁଇ ଭଉଣୀ ସେଠି ଅଛନ୍ତି । ପିଲାଦିନେ ମତେ ଗୋଟେ କଠିନ ବେମାରି ହୋଇଥିଲା । ଆଉ ଭଲ ହେବାର ଆଶା ନ ଥିଲା । ଜଣେ ସନ୍ୟାସୀ ମତେ 'ଜବରଣ ଶବରଣ ଉଲ୍ଲୀକାଡି ବଚ୍ଛାରଣ' ଦେଇଥିଲେ । ସେଥିରେ ମୁଁ ସମ୍ପୂର୍ଣ୍ଣ ଆରୋଗ୍ୟ ହୋଇଥିଲି । ମୁଁ ଏବେ ଅନୁଭବ କରୁଚି, ସେଇ ରୋଗ ଆଉ ଥରେ ମୋ ଦିହକୁ ଆସିଲାଣି । ଏ ଯୁବକ ଯଦି ମୋ ପାଖକୁ ସେ ଔଷଧ ଆଣିପାରିବ, ତେବେ ସେ ମୋ ପୁତ୍ର ଭାବରେ ଏ ରାଜ୍ୟ ପାଇବ ।"

ସବୁ ପାରିଷଦ ଏଥିରେ ହଁ ଭରିଲେ, ଖାଲି ରାଜାଙ୍କ ମନଟି ବିକଳ ହେଲା । କଳାରାଜନ ବଡ଼ ଉତ୍ସାହର ସହିତ ରାଜି ହୋଇଗଲା । ତା'ର ଗଭୀର ଆତ୍ମବିଶ୍ୱାସ ଥିଲା, ଆଉ ସବୁଠୁଁ ବଡ଼ ଭରସା ଥିଲା ସର୍ବଜୟ ଘୋଡ଼ା ଉପରେ । ଯାହା ଗୁରୁଦେବ ତାକୁ କଲ୍ୟାଣ ଭାବରେ ଦେଇ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ଆଉ ଗୋଟିଏ ଘଟଣା ଘଟିଥିଲା ଯାହା ତା'ର ମନର ବଳକୁ ଦ୍ୱିଗୁଣିତ କରିଦେଇଥିଲା । ଗୁରୁକୂଳରେ ଥିଲାବେଳେ ଜଣେ ମହାଋଷି ହିମାଳୟରୁ ଚର୍ତୁମାସ୍ୟା ବ୍ରତପାଳନ କରିବାକୁ ଆଶ୍ରମକୁ ଆସିଥିଲେ । କଳାରାଜନ ତାଙ୍କୁ ମନ ପ୍ରାଣ ଲଗାଇ ବହୁତ ସେବା କରିଥିଲା । ଅନେକ କଲ୍ୟାଣ କରି ବ୍ରତ ଉଦ୍‌ଯାପନ ପରେ ସେ ବାହୁଡ଼ିଲେ ।

ସେଇଦିନ ହୋମ ପାଇଁ କାଠ ସଂଗ୍ରହ କରିବାକୁ କଳାରାଜନ ମଧ୍ୟ ଜଙ୍ଗଲ ଆଡ଼କୁ ଗଲା । ଯାଉଯାଉ ସେ ଜଙ୍ଗଲର ବହୁତ ଭିତରକୁ ଚାଲିଗଲା । ତା'ର ମନେହେଲା ସତେ ଯେମିତି ତାକୁ କେହି ବାଟ କଢ଼େଇ କଢ଼େଇ ନେଇଯାଉଚି । ସେ ଦେଖିଲା ଗୋଟିଏ ପରିଷ୍କାର ଜାଗାରେ ଗଛ ମୂଳେ ସେଇ ଋଷି ଧ୍ୟାନରେ ବସିଛନ୍ତି । ପାଖରେ ଗୋଟିଏ କୋଦାଳ ପଡ଼ିଛି । ସେ ସେଠି ପହଞ୍ଚି ଆଭୂମୀ ପ୍ରଣାମ କଲା । ଋଷି ଆଶୀର୍ବାଦ କରି କହିଲେ, "ମୁଁ ତୁମକୁ ହିଁ ଅପେକ୍ଷା କରିଥିଲି । ମୋର ଶେଷ ସମୟ ଆସି ଉପଗତ ହେଲାଣି, ମୁଁ ଆଉ ଅଧିକ କ୍ଷଣ ବଞ୍ଚିବି ନାହିଁ । ଏଇ କୋଦାଳ ନେଇ ଗୋଟିଏ ଗାତ ଖୋଳ । ମୋର ଅନ୍ତିମ ସଂସ୍କାର ଏଇଠି କରିବ ।"

ଏହା କହି ସେଇ ମହାଋଷି ତାକୁ ଗୋଟିଏ କରାଟ ଦେଇ କହିଲେ, "ଏହାକୁ ଯତ୍ନର ସହିତ ରଖ । ଏହା ମୋର ସାରା ତପସ୍ୟାର ଫଳ । ଏଥିରେ କିଛି ବିଭୂତି ଅଛି । ଗୋଟିଏ ଛୁଞ୍ଚି ମୁନରେ

ମୁନେ ନେଇ କପାଳରେ ଲଗାଇଲେ ତୁମେ ଅଦୃଶ୍ୟ ହୋଇଯିବ । ତୁମକୁ କେହି ଦେଖିପାରିବେନି । ଏହା ତୁମର ବହୁତ କାମରେ ଆସିବ ମୁଁ ଜାଣି ପାରୁଚି ଏବଂ ଏହା ଦ୍ୱାରା ତୁମେ ଲୋକମାନଙ୍କର ବହୁ ଉପକାର କରିବ । ଆଉ ଶୁଣ, ଏଇ କମଣ୍ଡଳୁରେ ଗଙ୍ଗାଜଳ ଅଛି । ତାକୁ ମୋ ପାଟିରେ ଦିଅ । ଆଉ କିଛି ସେଇ ଗାତ ଏବଂ ମୋ ଦେହରେ ଛିଞ୍ଚି ଦିଅ । ତା ପୂର୍ବରୁ ତୁମେ ନିଜ ଉପରେ ଛିଞ୍ଚି ହୋଇପଡ଼ ।"

କଳାରାଜନ ତାହା ହିଁ କଲା। ଚାହିଁଲା ବେଳକୁ ଋଷି ଦେହ ଛାଡ଼ି ସାରିଥିଲେ । ସେ ପାଖରେ ପଡ଼ିଥିବା କୋଦାଳ ସାହାଯ୍ୟରେ ଗୋଟିଏ ବଡ଼ ଗାଡ଼ ଖୋଳିଲା । ତା ଭିତରେ କିଛି କଅଁଳିଆ ପତ୍ର ବିଛାଇ ଋଷିଙ୍କୁ ରଖିଲା ଏବଂ ଫୁଲ ତୋଳି ସେଥିରେ ଘୋଡ଼ାଇ ତା ଉପରେ ମାଟି ଭରି ଦେଲା । ସେଠି ଆଭୂମି ପ୍ରଣାମ ଜଣାଇ, ଝରଣାରେ ସ୍ନାନ ତର୍ପଣ କରି ଏବଂ ଋଷିଙ୍କୁ ଜଳାଞ୍ଜଳି ଦେଇ, କାଠ ଧରି ଆଶ୍ରମକୁ ଫେରିଲା । ଗୁରୁଦେବଙ୍କୁ କରାଟଟି ଦେଇ, ଯାହା ଘଟି ଯାଇଚି ତା'ର ସମସ୍ତ ବିବରଣୀ ଦେବାକୁ ବସିଲା । କୁରୁଦେବ ତାଙ୍କୁ ବାରଣ କରି କହିଲେ ସେ ସମସ୍ତ ବୃତ୍ତାନ୍ତ ଜାଣନ୍ତି ଏବଂ କରାଟ ଫେରାଇ ଦେଇ କହିଲେ ଏହା ତୁମରି ପାଇଁ ଉଦ୍ଦିଷ୍ଟ । ସେଇ କରାଟଟି ତା ପାଖରେ ଅତ୍ୟନ୍ତ ଯତ୍ନର ସହିତ ରହିଚି । ଏଇଥି ପାଇଁ ସେ ନିର୍ଭୟ ଚିତ୍ତରେ ପିତାଙ୍କୁ ଆଶ୍ୱାସନା ଏବଂ ଫେରିବାର ନିର୍ଭର ପ୍ରତିଶ୍ରୁତି ଦେଇ, ସର୍ବଜୟ ଘୋଡ଼ାରେ ବସି 'ଜବରଣ ଶବରଣ ଉଲ୍ଲୀକାତି ବଚ୍ଛାରଣ' ଆଣିବାକୁ ବାହାରି ପଡ଼ିଲା ।

ଗଡ଼ ସୀମାରେ ତାଙ୍କର ଇଷ୍ଟ ଦେବୀଙ୍କ ମନ୍ଦିରରେ ଘୋଡ଼ାରୁ ଓହ୍ଲାଇ ଦର୍ଶନ କରିବାକୁ ଗଲା । ସେଠାରେ ସେ ତାଙ୍କ ମାଆଙ୍କର ପୁରାତନ ବିଶ୍ୱାସୀ ସେବକ, ଯିଏ ତାଙ୍କୁ ପିଲାଦିନରୁ ଗୁରୁକୁଳରେ ଛାଡ଼ିଥିଲେ, ଯାହାଙ୍କୁ କଳାରାଜନ 'ଅଜା' ଡାକୁଥଲା, ତାଙ୍କୁ ଭେଟିଲା । ସେଠାରେ ସେ କଳାରାଜନ ପାଇଁ ବହୁ ଆଗରୁ ପୂଜା କରୁଥିଲେ । କଳାରାଜନ ଦେବୀଙ୍କୁ ଏବଂ ତାଙ୍କୁ ପ୍ରଣାମ ନିବେଦନ କଲା । ଦେବୀଙ୍କ ଗଭାରୁ ଫୁଲ ଖସିଲା । ଫୁଲ ସହିତ ଅଜା ତାଙ୍କୁ ଗୋଟିଏ ଭୋକ ଲଡୁ ଓ ଗୋଟିଏ ଶୋଷ ଲଡୁ ଦେଲେ । ସେ କହିଲେ ଏଠିକୁ ଫେରିବା ପର୍ଯ୍ୟନ୍ତ ତାଙ୍କୁ ଭୋକ କିମ୍ବା ଶୋଷ ଲାଗିବନି । କଳାରାଜନ ଆନନ୍ଦରେ ଲଡୁରୁ କିଛି ଖାଇଲା ଓ ସର୍ବଜୟ ଘୋଡ଼ାକୁ ଖୁଆଇଲା । ଦେବୀ ଆଉ ଅଜାଙ୍କୁ ଆଉ ଥରେ ପ୍ରଣାମ କରି ସେ ମନ ଖୁସିରେ ଆଗକୁ ଆଗକୁ ଘୋଡ଼ା ଝପଟେଇଲା ।

କେତେ ଦେଶ – କେତେ ନଦୀ – ନାଳ, ପାହାଡ଼ – ପର୍ବତ ଘଞ୍ଚଜଙ୍ଗଲ ପାରି ହୋଇ ସେ ଯୋଉଠି ପହଞ୍ଚିଲା, ସେଠି ଆଉ ଆଗକୁ ଯିବାକୁ ବାଟ ନ ଥିଲା। ମେଘନାଦ ପାଚିରି ପରି ତମ୍ବାର ଗୋଟିଏ ବିରାଟ ପାଚିରି ଠିଆହୋଇଥିଲା। ସୂର୍ଯ୍ୟକିରଣରେ ତାହା ଦାଉଦାଉ କରୁଥିଲା। ଭିତରକୁ ଯିବାକୁ ବାଟ ନ ଥିଲା, କିନ୍ତୁ ପାଚିରି ଉପରୁ ଆରପଟରେ ଜୀବଜଗତର ସନ୍ଦେଶ ଜଣାପଡୁଥିଲା । ସେ ଘୋଡ଼ାରେ ପାଚିରି କରେ କରେ ବହୁଦୂର ପର୍ଯ୍ୟନ୍ତ ଯାଇ ନିରୂପାୟ ହୋଇ ଠିଆ ହୋଇଗଲା । ନିଜକୁ ନିଜେ ପଚାରିଲା, "କଅଣ କରିବି ଏବେ?" ଘୋଡ଼ାକୁ ଥାପୁଡ଼ାଇ କହିଲା, "କିରେ ନିରାଶରେ କ'ଣ ଫେରିଯିବା?" ସର୍ବଜୟ ମଥା ହଲାଇଲା, ତା ପରେ ଦୁଇ ଗୋଡ଼କୁ ଉପରକୁ ଟେକି ଜୋରରେ ଝାଡ଼ି ହେଇପଡ଼ିଲା। ଜିନ୍ ତଳୁ ସୁନା ବେଣ୍ଟ ଥିବା ଗୋଟିଏ ଚାବୁକ ଖସି ପଡ଼ିଲା । ଘୋଡ଼ା ସେଇଟାକୁ କାମୁଡ଼ି ତଳୁ ଉଠାଇ କଳାରାଜନକୁ ଦେଲା ।

ତା'ର ଆନନ୍ଦ ଆଉ ଦେଖେ କିଏ। ସିଏ ମନ ଖୁସିରେ ସର୍ବଜୟ ଉପରକୁ ଡେଇଁ ପଡ଼ି ମାରିଲା ଛାଟେ। ଘୋଡ଼ା ବିଜୁଳି ବେଗରେ ଦଉଡ଼ି, ମାରିଲା ଗୋଟିଏ କୁଦା ଯେ ଏକାଥରକେ ପାଚିରି ଡେଇଁ ସେ ପାଖରେ। ତିନି ଗାର କାଟି ବସିଥିବା ପାରା ରାଜାଝିଅ ସେପଟେ। ଏଣେ କ'ଣ ହେଇଚି ନା ପାରା ରାଜାଝିଅ ତିନି ଗାର କାଟି ମାନସିକ କରି ବସିଚି, ଯିଏ ଏ ତିନି ଗାରକୁ ଏକାଥରକେ ଡେଇଁ ଯିବ ସେ ତାକୁ ବାହାହେବ। ପାରା ରାଜ୍ୟର ଶୋଭା ଅତୁଳନୀୟ। ଗାଆଣ ଗାଇବାକୁ ଚାହିଁଲେ ବି ପାରିବନି, ଥକି ଯିବ।

ଏମିତି ସୁନ୍ଦର ରାଜ୍ୟରେ ପହଞ୍ଚି କଳାରାଜନ ଖାଲି ଜଳକା ପରି ଚାରିଆଡ଼କୁ ଚାହିଁଚି ତ ଚାହିଁଚି। କୁଆଡୁ ହଠାତ୍ ବାଜା ବଜନ୍ତରୀ ବିଗୁଲ ବାଜି ଉଠିଲା। ତା'ପରେ ଅସଂଖ୍ୟ, ପଞ୍ଝା ପଞ୍ଝା କେତେ କେତେ ସୁନ୍ଦର ପାରା ଆସି ନାଚିନାଚି ତାକୁ ଘେରି ଘେରି ନେଇ ପାରାରାଜା ଝିଅ ପାଖରେ ପହଞ୍ଚାଇ ଦେଲେ। ସେଠି ଏମିତି ଅପୂର୍ବ ସୁନ୍ଦରୀ ଝିଅଟିଏ ବରଣ ମାଳା ଧରି ବସିଥିଲା। ଆଉ ଗୋଟିଏ କଡ଼କୁ ଚନ୍ଦନ କାଠର ଜୁଇଟିଏ ଜଳୁଥିଲା। ବୀଣାଜିଣା କଣ୍ଠରେ ସେ ଝିଅଟି କଳାରାଜନକୁ କହିଲା, "ଅନେକ ଦିନରୁ ମୁଁ ଏଠି ତିନି ଗାର ଟାଣି ବସିଚି। ଏ ଗାର ଯିଏ ଏକା ଥରରେ ଡେଇଁଯିବ ମୁଁ ତାଙ୍କୁ ବରଣ ମାଳା ଦେବି, ଏହା ହିଁ ଆମ ଇଷ୍ଟଦେବୀଙ୍କ ନିର୍ଦ୍ଦେଶ। ଆଉ ଯଦି ଆପଣ ମତେ ଅସ୍ୱୀକାର କରନ୍ତି, ତା ହେଲେ ଏଇ ଜୁଇକୁ ମୁଁ ଡେଇଁ ଆତ୍ମହତ୍ୟା କରିବି। ଆଉ ଆପଣ ମଧ୍ୟ ଏହି ରାଜ୍ୟର ସୀମା ଡେଇଁ କାହିଁ ଯାଇପାରିବେନି। ଏହା ଏଇ ଦେଶର ନିୟମ।"

ସେ ଯେ ନିଜେ ଏଠୁ ବର୍ତ୍ତି ଯାଇପାରିବନି, ଏଇ କଥାଟା କଳାରାଜନ ପାଇଁ ମୁଖ୍ୟ କଥା ନ ଥିଲା। ମୁଖ୍ୟ କଥା ଥିଲା ସେ ଜୀବନରେ ପ୍ରଥମ ଥର ପାଇଁ ଦେଖିଥିବା ଏଇ ଅପରୂପା ଅନୁପମା ଝିଅଟି ଆତ୍ମହତ୍ୟା କରିବ। ସେ କିଛି କହିବା ପୂର୍ବରୁ ଅପେକ୍ଷାରତ ବିରାଟ ଗୋଟିଏ ଶ୍ୱେତ ହସ୍ତୀ ଉପରେ ଏବଂ ଗୁଡ଼ିଏ ଚିତ୍ର ବିଚିତ୍ର ଅପୂର୍ବ ପାରାମାନଙ୍କ ସହିତ ପାରାରାଜା ସେଠି ପହଞ୍ଚି ସାରିଥିଲେ। ସେମାନଙ୍କ ବସ୍ତ୍ର ଆଭୂଷଣରୁ ସେମାନଙ୍କ ପଦମର୍ଯ୍ୟାଦା ଜଣାପଡ଼ି ଯାଉଥିଲା। ମହାର୍ଘ ଶ୍ୱେତ ବସ୍ତ୍ର ପରିହିତ ରାଜାଙ୍କର ମଣି ରତ୍ନଖଚିତ ମୁକୁଟ ଥିଲା। ଶ୍ୱେତ ଛତ୍ର ଟେକା ହୋଇଥିଲା, ଶ୍ୱେତ ଆଲଟ ଚାମର ସହିତ।

କଳାରାଜନ କହିଲା, "ଦେଖନ୍ତୁ ଏ ବିବାହରେ ମୋର କୌଣସି ଆପତ୍ତି ନାହିଁ। ମୁଁ ଯୋଉ ପ୍ରତିଜ୍ଞା କରିଚି ପୂରଣ ନ ହେଲା ପର୍ଯ୍ୟନ୍ତ କିପରି ବିବାହ କରିପାରିବି? ମୁଁ ଯଦି ମୋର ଉପଯୁକ୍ତ କର୍ତ୍ତବ୍ୟ ପାଳନ ନ କରିବି, ତେବେ ଏ ସୁନ୍ଦର କନ୍ୟାଟି ପ୍ରତି ଅବିଚାର ହବ ନାହିଁ କି?" ରାଜା କହିଲେ, "ଠିକ୍ ଅଛି। ଆପଣଙ୍କ ପରି ବିଚାରବନ୍ତ ଜାମାତା ପାଇ ମୁଁ ଏବଂ ଆମ ରାଜ୍ୟ ଧନ୍ୟ ହୋଇଚୁ। ଆପଣ ବିବାହ କରି କନ୍ୟାକୁ ଛାଡ଼ି ଯାଆନ୍ତୁ। ଲେଉଟାଣି ବାଟରେ କନ୍ୟାକୁ ନେଇ ଫେରିବେ।" କଳାରାଜନର ଅରାଜି ହେବାର କୌଣସି କାରଣ ନ ଥିଲା।

ବଡ଼ ଜାକଜମକରେ ବିବାହ ସମାପନ ହେଲା ପରେ ଗୋଟିଏ ଅତ୍ୟନ୍ତ ସୁନ୍ଦର ଶ୍ୱେତ ପାରା ଆସି କଳାରାଜନ କାନ୍ଧରେ ବସିଲା। କଳାରାଜନ ତାକୁ ହାତକୁ ଆଣି ଢେର ଗେହ୍ଲା କଲା। ଶ୍ୱେତ ପାରା ତା ଗାଲରେ ଥଣ୍ଟଟି ରଖି ତା କାନରେ ତୁନି ତୁନି କହିଲା, "ତମେ ଫେରିବା ଯାଏ, ମୁଁ ତୁମ ବାଟ ଚାହିଁ ବସିଛି।" ସମସ୍ତଙ୍କଠୁଁ ବିଦାବିଦି ହୋଇ କଳାରାଜନ ତା ବାଟରେ ଚାଲିଲା ସତ, କିନ୍ତୁ

ତାକୁ ଲାଗିଲା ତା ମନଟି ଯେମିତି ଏଇଠି ବନ୍ଧାପଡ଼ି ରହିଗଲା । ଘୋଡ଼ା ଝପଟେଇ ସେ ଚାଲିଲା ଅନେକ ଦୂରଯାଏ । ଅନେକ ଅନେକ ରଙ୍ଗର, ଅନେକ ପ୍ରକାରର ପାରା ସବୁ ତା ଆଗରେ ପଛରେ ଦିପାଖରେ ଉଡ଼ିଉଡ଼ି ଫୁଲ ବୁଣିବୁଣି ଆସୁଥିଲେ । ନିର୍ଦ୍ଦିଷ୍ଟ ସୀମାରୁ ସେମାନେ ଫେରିଲେ ।

କେତେ ଘର, କେତେ ମହଲ, ଦେଉଳ, ଅଟ୍ଟାଳୀ, ଫୁଲବନ, ଘନ ଜଙ୍ଗଲ ସବୁ ପାରି ହୋଇ ଘୋଡ଼ା ଛୁଟୁଥିଲା । ସେ ସବୁ ତମ୍ବାର ଥିଲା । ଗଛ, ପାହାଡ଼, ଡଙ୍ଗର ସବୁ ତମ୍ବା ରଙ୍ଗର ଥିଲା । ତାକୁ ଅଦ୍ଭୁତ ଅନୁଭବ ହେଉଥିଲା । ଘୋଡ଼ା ତା'ର ଛୁଟୁଥିଲା । ଅନେକ ଅନେକ ରାସ୍ତା ପାରି ହୋଇ ସେ ଯୋଉଠି ଆସି ପହଞ୍ଚିଲା, ସେଠି ଆଉ ଆଗକୁ ଯିବାକୁ ବାଟ ନ ଥିଲା । ତା ଆଗରେ ରୁପାରେ ଗୋଟିଏ ବିରାଟ ପାଚିରି ଠିଆ ହୋଇ ରହିଥିଲା । ଏ ପାଖରୁ ସେପାଖ ଯାଏ ଆଖି ପାଉ ନ ଥିଲା । ତମ୍ବା ପାଚିରିଠାରୁ ଆହୁରି ଉଚ୍ଚ ଆହୁରି ଶକ୍ତ । କିନ୍ତୁ ପାଚିରି ଉପରୁ ସେ ପାଖର ଆଲୋକ ଏବଂ ଗହଳ ଚହଳ ଅସ୍ପଷ୍ଟ ଦେଖାଶୁଣା ଯାଉଥିଲା ।

ସେ ଘୋଡ଼ାରୁ ଓହ୍ଲାଇ କିଛି ସମୟ ବିଶ୍ରାମ କଲା ପରେ ତା କାନ ପାଖରେ କିଏ ଯେପରି ଫୁସ୍‌ଫୁସ୍ କରି କହିଲା, ଚାଲ ବେଟା ରେଡ଼ି ହୋଇଯା, ଏଠି ତତେ ପୁଣି କସରତ କରିବାକୁ ପଡ଼ିବ । ଘୋଡ଼ା କାନ ହଲେଇ ତା କାନ୍ଧରେ ମୁହଁ ରଖିଲା । କଳାରାଜନ ତା'ର ପିଠି ଉପରେ ବସି ପଡ଼ି, ସୁନା ଛାଟରେ ମାଇଲା ଛାଟେ । ସର୍ବଜୟ ଘୋଡ଼ା ସତେ ଯେମିତି ପବନରେ ପହଁରିପହଁରି ଯାଇ ଆରପଟେ। ପାରା ଝିଅ ପରି ତିନି ଗାର ଟାଣି ବସିଥିବା ବାର୍‌ହା ରାଜାଝିଅର ତିନିଗାର ସେ ଡେଇଁଗଲା । ପାରା ରାଜ୍ୟରେ କଳାରାଜନକୁ ଯାହାସବୁ ସାମନା କରିବାକୁ ପଡ଼ିଥିଲା ଏଠି ମଧ୍ୟ ସେଇ ଏକା ଘଟଣା ଘଟିଲା । ଏ ଝିଅଟି ମଧ୍ୟ ଅସାମାନ୍ୟ ରୂପବତୀ ଥିଲା । ଫେରିବା ବାଟରେ ନେଇଯିବାର ପ୍ରତିଶ୍ରୁତି ଦେଇ କଳାରାଜନ ଇଚ୍ଛା ବିରୁଦ୍ଧରେ ସେଠାରୁ ବିଦାୟ ନେଲା । ସେଇ ରାଜ୍ୟର ଘର, ନଅର, ଦେଉଳ, ଅଟ୍ଟାଳୀ, ଗଛପତ୍ର ସବୁ ରୁପା ତାରକସିରେ ତିଆରି ପରି ମନେ ହେଉଥିଲା । ସୂର୍ଯ୍ୟକିରଣରେ ସବୁଆଡ଼ ଝଲସୁଥିଲା । କଳାରାଜନ ଆଶ୍ଚର୍ଯ୍ୟ ଚକିତ ହୋଇ ଖାଲି ଚାହିଁଚାହିଁ ଦେଖୁଥିଲା ।

ସର୍ବଜୟ ତା'ର ତା ମନେ ମନେ ଚାଲୁଥିଲା । କୁଆଡ଼େ ନଉଚି କୁଆଡ଼େ ଚାଲୁଚି କଳାରାଜନକୁ ଜଣା ନ ଥିଲା, କିନ୍ତୁ ସର୍ବଜୟ ଉପରେ ତା'ର ଭରସା ଥିଲା । ଝଲମଲିଆ ଦୃଶ୍ୟ ସବୁ ଦେଖି ଦେଖି ସେ ଆସି କେତେବେଳେ ସେ ରାଜ୍ୟର ସୀମା ପାଖରେ ପହଞ୍ଚିଲାଣି ତାକୁ ଜଣାଗଲା ନାହିଁ । ଏଠି ଯା ଦେଖିଲା ସେ ଆହୁରି ବିଭୋର, ଆହୁରି ଆଚମ୍ବିତ ହୋଇ ଚାହିଁ ରହିଲା । ତା'ର ଯିବାର ରାସ୍ତା ବନ୍ଦ କରି ଯୋଉ ସୁନାର ପାଚିରିଟି ଠିଆ ହୋଇଚି, ଆଉ ତା ଉପରେ ସୂର୍ଯ୍ୟ କିରଣ ପଡ଼ି ଯୋଉ ଅପରୂପ ଅନୁପମ ସୌନ୍ଦର୍ଯ୍ୟ ପ୍ରତିଫଳିତ ହେଉଥିଲା, ତାକୁ ଦେଖି ମୋହିତ ହୋଇ କ୍ଷଣକ ପାଇଁ ସେ ସ୍ତବ୍ଧ ହୋଇ ରହିଗଲା । ଘୋଡ଼ାରୁ ଓହ୍ଲାଇ କିଛି ସମୟ ଏପଟରୁ ସେପଟ ଚାହିଁ ଚାହିଁ ସେ ଜମାରୁ ଭାବିପାରିଲାନି ପ୍ରକୃତରେ ସର୍ବଜୟ ଏତେ ଉଚ୍ଚା ପାଚିରି ଡେଇଁ ପାରିବ । ତା'ର ଆର ପାଖରେ କ'ଣ ସବୁ ଆଉ ଅଛି ଭାବିଭାବି ସେ ସର୍ବଜୟ ପାଖକୁ ଆସି ତାକୁ ଢେର ଗେଲ କଲା । ତା ପିଠି ଥାପୁଡ଼ାଇ କ'ଣ କ'ଣ ସବୁ ତା କାନରେ କହିଲା । ସର୍ବଜୟ ତା ଦେହରେ ମୁଣ୍ଡ ଘଷି, କାନ ହଲେଇ, ଲାଞ୍ଜକୁ ଚାମର ଢାଳିଲା ପରି କରି, ସତେ ଯେମିତି କହିଲା, "କିଛି ଭୟ ନାହିଁ । ମୁଁ

ସଦା ସର୍ବଦା ପ୍ରସ୍ତୁତ।" କଳାରାଜନ ତା ପିଠି ଉପରକୁ ଉଠିଆସି ଇଷ୍ଟ ଦେବୀ ସ୍ମରଣ କରି ମାଇଲା ଛାଟେ ଯେ, ସର୍ବଜୟ ଆସି ପାଚିରି ଆରପଟ ତିନି ଗାରକୁ ଡେଇଁଗଲା।

କଳାରାଜନ ଏପଟକୁ ଆସି ଯାହା ଦେଖିଲା ସେଥିରେ ତା ପିଳେହି ପାଣି ହୋଇଗଲା। ଏପଟେ ଖାଲି ଛୋଟରୁ ବଡ଼ ଯାଏ, ପଣ ପଣ ବାଘ। ଏଠି ବାଘରାଜା ଝିଅ ସେମିତି ତିନି ଗାର ଟାଣି ବସିଥିଲା। ପୂର୍ବ ପରି ବାଘ ରାଜାଝିଅ ସହିତ ମଧ୍ୟ ତା'ର ବିବାହ ସମ୍ପନ୍ନ ହେଲା। ଝିଅଟି ମଧ୍ୟ ସେମିତି ଶ୍ରୀମଣ୍ଡିତା ସୁନ୍ଦରୀ ଥିଲା। ଅଲଗା ଦେଖିଲେ ମନେହବ ସେ ତହୁଁ ବଳି ତହୁଁ ବଳି ସୁନ୍ଦରୀ। କିନ୍ତୁ ଏକାଠି ଦେଖିଲେ କେହି କାହାଠାରୁ ଊଣାଧିକ ନୁହନ୍ତି। ବାଘ ରାଜାଝିଅ ଯେତେବେଳେ କଳାରାଜନର ଆସିବାର କାରଣ ଜାଣିଲା ସେତେବେଳେ ସେ ପ୍ରମାଦ ଗଣିଲା। କାରଣ, ସେ ଶୁଣିଥିଲା ଯେ ସେ ରାଜ୍ୟର ସୀମା ସରହଦ ଡେଇଁଲେ ଆଉ କେହି ଜନମାନବ ନାହାନ୍ତି। ମାତ୍ର ଗୋଟିଏ ଇଲାକା ଥିବାର ସେ ଶୁଣିଚି ଯେଉଁଠି କେବଳ ଅସୁର, ଅସୁରୁଣୀମାନେ ଅଛନ୍ତି। ସେଇଠି 'ଜବରଣ ଶବରଣ ଉଲ୍ଲୀକାତି ବଚ୍ଛାରଣ' ଅଛି ବୋଲି ସେ ଶୁଣିଚି।

ଯାହା ହେଉ କଳାରାଜନ ଏବେ ଏ ବିଷୟରେ କିଛି ହେଲେ ସନ୍ଦେଶ ତ ପାଇଲା। କିନ୍ତୁ ଝିଅଠାରୁ ଯେତେବେଳେ ସେ ଶୁଣିଲା ଯେ ସେଠିକୁ କେବେହେଲେ କେହି ଯାଆନ୍ତି ନାହିଁ କିମ୍ବା ଯଦି କେହି ଯାଇଥିବ ତେବେ ଆଉ ଫେରିନାହିଁ। କଳାରାଜନ ନିରାଶ ହେଲା ନାହିଁ ତଥାପି। ବାଘରାଜା ଝିଅ ଯେତେବେଳେ ଜାଣିଲା ଯେ କଳାରାଜନ ନିଶ୍ଚୟ ଯିବ ସେତେବେଳେ ସେ ତାଙ୍କ ପୁରୋହିତଙ୍କୁ ଡାକିଲା। ସେ ଅତ୍ୟନ୍ତ ବୃଦ୍ଧ ଥିଲେ। ତାଙ୍କର ଗୋଟିଏ ବି ଦାନ୍ତ ନ ଥିଲା। ବୟସ ଭାରରେ ସେ ଥରୁଥିଲେ। ଚାଲୁଚାଲୁ ପଡ଼ି ଯାଉଥିଲେ। ତାଙ୍କୁ ସମସ୍ତେ ବହୁତ ସମ୍ମାନ କଲେ। କଳାରାଜନ ତାଙ୍କ ପାଦ ତଳେ ପଡ଼ି ପ୍ରଣାମ କଲା। ବାଘ ପୁରୋହିତ ମୁଣ୍ଡ ସାଉଁଳେଇ ତାକୁ ବହୁତ କଲ୍ୟାଣ କଲେ। କହିଲେ, "ଦେଖ ବାପା, ମୁଁ ତତେ କେବଳ ସେ ପାଖରେ ପହଁଚିବା କଥା କହିଦେବି। ଆଉ ସେପାଖରେ କ'ଣ କରିବାକୁ ହବ ତୁ ଜାଣୁ।" କଳାରାଜନ ରାଜି ହେଲା। ସେ ତାଙ୍କୁ ମନ୍ତ୍ରଟିଏ ଦେଇ କହିଲେ ଇଷ୍ଟଦେବୀ ସ୍ମରି ଏ ମନ୍ତ୍ରଟି ଉଚ୍ଚାରଣ କଲେ ଆର ପାଖରେ ପହଁଚିଯିବୁ। ରାଜ୍ୟର ସମସ୍ତେ ବଡ଼ କଷ୍ଟରେ ତାକୁ ବିଦାୟ ଦେଲେ। ବାଘ ରାଜାଝିଅ ଅଖଣ୍ଡ ଦୀପ ଜଳାଇ ହଳଦି ପାଣିରେ ହାତ ଶଙ୍ଖା ବୁଡ଼େଇ କଳାରାଜନ ଫେରିବା ବାଟକୁ ଚାହିଁ ବସି ରହିଲା।

ଚାରିଆଡ଼େ ସୁନା ଝଲମଲ ସୁବର୍ଣ୍ଣପୁରୀ। ସେ ସବୁକୁ ଚାହିଁ ଚାହିଁ କଳାରାଜନ ଏତେ ମଜ୍ଜି ଯାଇଥିଲା ଯେ ସେ ଭୁଲି ଯାଇଥିଲା, କେତେବଡ଼ କଠିନ କାମ ସେ କରିବାକୁ ଯାଉଚି। ଏ ଭିତରେ କେତେ ସମୟ ବିତିଗଲାଣି ତା'ର ଖିଆଲ ରହିନାହିଁ। ଯେତେବେଳେ ଆସି ନିଆଁଧାସ ତା ମୁହଁରେ ଦେହରେ ଲାଗିଲା ସେ ସ୍ତବ୍ଧ ରହିଗଲା। ହଠାତ୍ ସର୍ବଜୟ ହ୍ରେସାରବ କରି ଅଗ୍ନିର ପାଚିରି ପାଖରେ ଠିଆ ହୋଇଚି। ଶିଖା ସବୁ ଆକାଶକୁ ଛୁଉଁଚି। ଆର ପାଖର କୌଣସି ଚିହ୍ନ, ବର୍ଣ୍ଣ କିମ୍ବା ସଂକେତ ନାହିଁ। ସ୍ଫୁଲିଙ୍ଗ ସବୁ ଚାରିଦିଗକୁ ଛିଟିକି ଛିଟିକି ପଡୁଚି। କିଛି ସମୟ ପାଇଁ ସେ ସ୍ତବ୍ଧ ହୋଇ ଅଗ୍ନି ପାଚିରିକୁ ଚାହିଁ ରହିଲା। ପ୍ରକୃତରେ ସେ ଆରପାଖକୁ ଯାଇପାରିବ ନାହିଁ। ତା ହେଲେ କ'ଣ ସେ ହତାସ ହୋଇ ଏଉଠୁ ଫେରିଯିବ? ହେଲେ ଫେରିବାର ପ୍ରଶ୍ନ ଉଠୁଛି କୋଉଠୁ? ଏତିକିବେଳକୁ ତା'ର ମନେ ପଡ଼ିଗଲା:

ମଣିଷ ଜୀବନ ନୁହଁଇ କେବଳ ବର୍ଷ ମାସ ଦିନ ଦଣ୍ଡ,
କର୍ମେ ଜୀଏଁ ନର, କର୍ମ ଏକା ତା'ର ଜୀବନର ମାନଦଣ୍ଡ।

ହଠାତ୍ ତା ମନରେ ବିଜୁଳି ପରି ବାଘରାଜା ରାଜ୍ୟର ପୁରୋହିତଙ୍କ କଥା ମନେ ପଡ଼ିଗଲା। ତାଙ୍କ ମନ୍ତ୍ର କଥା ମନେ ପଡ଼ିଯିବାରୁ ତା ଦେହରେ ଶତ ସିଂହର ବଳ ଆସିଗଲା। ମନରେ ଅସୀମ ଆତ୍ମବିଶ୍ୱାସ ଭରିଗଲା, ସେ ନିଜେ ଗୁରୁଦେବଙ୍କୁ ସୁମରଣା କରି ମନ୍ତ୍ର ଗାନ କଲା। ତା ପରେ ଘୋଡ଼ା ଉପରେ ବସି ଇଷ୍ଟ ଦେବୀଙ୍କୁ ସୁମରଣା କରି ପୁରୋହିତ ଦେଇଥିବା ମନ୍ତ୍ରଟି ଉଚ୍ଚାରଣ କଲା। "ଅଲକତ ମଲକତ ସୁଁ, ଅନଳ ପାଚିରି ଡେଇଁଯିବି ମୁଁ। ଶୀତଳ ଚାନ୍ଦୁଆ ଦେଇ ଘୋଡ଼ାଇ, ମା ଇଷ୍ଟଦେବୀ ନେବୁ ଉଡ଼େଇ।" ଏ ମନ୍ତ୍ର କହି ଛାଟେକ ମାଇଲା, ଅଶ୍ୱ ଏ ପାଖରୁ ଯାଇ ସେ ପାଖେ ପାଇଲା। କଳାରାଜନ ଜମା ବୁଝିପାରିଲାନି ଯେ, ସେ କେମିତି ଏ ନିଆଁର ପାଚିରି ଡେଇଁ ଏ ପାଖରେ ଆସି ପହଁଚିଛି। ତା ଦେହରେ ଟିକିଏ ଧାସ ବି ଲାଗିନି। ସତେ ଅବା ଶୀତଳ ଚାନ୍ଦୁଆ ଘୋଡ଼େଇ ମା ତାକୁ ଉଡ଼େଇ ଆଣିଛନ୍ତି! ମା'ଙ୍କ ଉଦ୍ଦେଶ୍ୟରେ ଭକ୍ତି ଗଦଗଦ ହୋଇ ପ୍ରଣାମ ଜଣାଇଲା କଳାରାଜନ।

ଏବେ ସେ ଚାରି ଦିଗକୁ ଚାହିଁଲା। ତା ଦେହରେ ଯେପରି ଶୀତ କଣ୍ଟା ମାରିଗଲା। ଏଠି ସେଠି ଗଦାଗଦା ହାଡ଼ କୁଡ଼ା ହୋଇଛି। ଚମଡ଼ା, ଦାନ୍ତ, ଖପୁରି ସବୁ ଗଦା ହୋଇଛି। ଜନମାନବର ଚିହ୍ନବର୍ଣ୍ଣ ନାହିଁ। ଗଛବୁରୁଛ ଗୋଟିଏ ହେଲେ ନାହିଁ। ଚାରିଆଡ଼ ଖାଁ ଖାଁ ଟାଙ୍ଗରା ଭୂଇଁ। ଗୋଟା ଗୋଟା ବଡ଼ ମାଙ୍କଡ଼ା ପଥର ଦାନ୍ତ ନିକୁଟି ଚାହିଁ ରହିଛନ୍ତି। ଖଣ୍ଡେ ଦୂରରେ ହାଡ଼ ଖପୁରିରେ ତିଆରି ଗୋଟିଏ ବିରାଟ ଗୁମ୍ଫା ଦେଖା ଯାଉଚି। ଦୁଆର ମୁହଁଟା ଗୋଟିଏ ବିରାଟ ଦାନବ ଆଁ କରି ଗିଳି ପକେଇବାକୁ ଚାହିଁ ରହିଲା ପରି ଲାଗୁଛି। ସେ ସିଦ୍ଧଦତ୍ତ ବିଭୂତି ବାହାର କରି ନିଜ କପାଳରେ ଆଉ ସର୍ବଜୟ କପାଳରେ ଲଗାଇଲା। ପ୍ରଣାମ କଲା। ସର୍ବଜୟକୁ ଗୋଟିଏ ପଥର ଆଢୁଆଳରେ ଠିଆ କରିଦେଇ ନିଜେ ଇଷ୍ଟଦେବୀ ସୁମରଣା କରି ଧୀରେ ଧୀରେ ଗୁମ୍ଫା ମୁହଁ ପାଖକୁ ଆଗେଇ ଆସିଲା।

ଭିତରକୁ ଚାହିଁଲା ଗୁମ୍ଫା ଭିତରଟା ବେଶ ପ୍ରଶସ୍ତ ତାକୁ ଲାଗୁଚି। ଚାରିଟା ହଲ ମିଶିଲେ ଯେତିକି ବଡ଼ ହୁଅନ୍ତା ତାଠୁଁ ବେଶି। ଆଉ ତା ଭିତରେ ସେ ଯାହା ଦେଖିଲା ନା ସେଇଠି ତା'ର ଚେତା ବୁଡ଼ିଯିବା ପରି ମନେ ହେଲା। ଏଡ଼େ ଏଡ଼େ ବିରାଟ ବିରାଟ ତିନିଟା ସ୍ତ୍ରୀ ଲୋକ। ଏଇମାନେ ତା ହେଲେ ଅସୁରୁଣୀ! ସେ ନିଜକୁ ସମ୍ଭାଳି ନେଲା। ଏଇଠି, ଏଇମାନଙ୍କ ପାଖରେ ତା ହେଲେ ତା'ର ଇପ୍ସିତ ଜିନିଷଟି ରହିଚି। ତା ମୁହଁରେ ଆଶାର ଆଲୋକ ଦେଖାଗଲା।

ସେ ଦେଖିଲା ଝୋଟ ପରି ବେତାରେ ବେତାଏ ପାଚିଲା ବାଳଥିବା ଧାନଉସୁଁଆ ହାଣ୍ଡି ପରି ମୁଣ୍ଡ, ଗୋଟିଏ ବୁଢ଼ୀ ତା ବାଆଁ ଗୋଡ଼କୁ ଗୋଟିଏ ଚୁଲି ଭିତରେ ପୂରାଇ ଜଳଉଚି। ହୁତହୁତ ହୋଇ ନିଆଁ ଜଳୁଚି। ଚୁଲି ଉପରେ ଗୋଟିଏ ମସ୍ତବଡ଼ ତମ୍ବା ହଣ୍ଡାରେ, ମଇଁଷିଟାଏ ଗଡ଼ ଗଡ଼ ହୋଇ କଡ଼ କଡ଼ ଶବ୍ଦ କରି ଫୁଟୁଛି। ହଣ୍ଡାରୁ ଗରମ ରକ୍ତ ସବୁ ଉଛୁଳି ନିଆଁକୁ ଉତୁରି ପଡ଼ି ସେଁ ସେଁ ଡାକ ଦଉଚି। ମୁଣ୍ଡ ବାଳରେ କେତେ ଛୋଟ ବଡ଼ ସାପ ଲହଲହ ହେଉଛନ୍ତି। ଆଉ ଗୋଟେ କଦାକାର ବୁଢ଼ୀ, ଓଳିଆ ପରି ଅନ୍ତଲ ପେଟକୁ କାଢ଼ି, ଏଡେ ମୋଟା ଦି'ଟା ଶଗଡ଼ ଦଣ୍ଡା ପରି ଗୋଡ଼କୁ ଲମ୍ବେଇ ବୁଢ଼ୀ ପାଖରେ ବସିଛି। ଗୋଟିଏ ଦନ୍ତରା କାଙ୍କ ଧରି ଭୂତ ପରି ଠିଆ ଠିଆ

ବାଳକୁ ରାମ୍ପି ଲାଗିଚି । ମୂଷା ପରି ଉକୁଣୀ ତଳେ ପଡୁଛନ୍ତି । ସେ ତାକୁ ଧରି ପାଟିରେ ପୂରେଇ ଦେଉଛି । ତୃତୀୟ ବୁଢ଼ୀଟି ବାଉଁଶ ଅଗି ପରି ପତଳା ନକନକ । ତା ଦେହରୁ ସରୁ ସରୁ ଗୋଡ଼ ହାତ ବାହାରି ନଡ଼ ନଡ଼ ହେଉଚି । ଏଡେ ବଡ଼ ବିରାଟ ଟାଙ୍ଗରା ମୁଣ୍ଡ । ପେଟ ଖାଙ୍କର, ପିଠି କୁଜ । ମଣିଷ ବାସ୍ନା ପାଇଲା କି କ'ଣ ଖାଲି ସୁଁ ସୁଁ ହଉଚି ।

ଏ ବିଭଙ୍ଗ ଦେଖି କଳାରାଜନକୁ ହସ ମାଡ଼ିଲା, ସେ ଖିଁ କରି ହସି ପକେଇଲା । କିଏ କିଏ ବୋଲି ସେମାନେ ଏକା ସାଙ୍ଗରେ ମେଘ ଗର୍ଜିବା ପରି ଡକା ପାରିଲେ । କଳାରାଜନକୁ ତା କାନ ପରଦା ଫାଟିଗଲା ପରି ଲାଗିଲା, ସେ କାନରେ ହାତ ଦେଇଦେଲା । ସେମାନେ ମୂଳା ପରି ଏଡ଼େ ଏଡ଼େ ହାଡ଼ ଚୋବାଇ ଏତେ ବଡ଼ ନାଲିଆ ଜିଭ ଲହ ଲହ କରି ଘର ମଝିରେ ଟଙ୍ଗା ହୋଇଥିବା ଗୋଟିଏ ଶିକାକୁ ଉହୁଁକୁଥିଲେ । ତା ଉପରେ ଟମ୍ ଟମ୍ କରୁଥିବା ଗୋଟିଏ ବିରାଟ ଆଖି ଥିଲା । ସମସ୍ତେ ଏକା ସାଙ୍ଗରେ ସେ ଆଖିକୁ ଆଣିବାକୁ ଧାଇଁବାରୁ ପେଲାପେଲି ହୋଇ ଦୁଲଦାଲ ପଡୁଥିଲେ । କଳାରାଜନ ସେଇ ଆଖିଟିକୁ ଆୟତ୍ତକୁ ଆଣି ସାରିଥିଲା ସେତେବେଳକୁ ।

ସେ ଅସୁରୁଣୀମାନଙ୍କର ଆଖି ନ ଥିଲା। କପାଳ ଉପରେ ଗୋଟିଏ ଗୋଟିଏ ଗାତ ଥିଲା, ସେ ଗାତରେ ସେମାନେ ପାଳି କରି ଆଖିଟିକୁ ଲଗାଉଥିଲେ । ଏଇନେ ଆଖିଟି ନ ପାଇ ସେମାନେ ବାଉଳି ହୋଇଗଲେ । ମଣିଷ ବାସ୍ନା ପାଇ ନାକ ସୁଁ ସୁଁ, ଜିଭ ଲହ ଲହ କରି, ଓଠ ଚାଟି ଖାଲି ଦରାଣ୍ଡି ହେଉଥିଲେ । ଜଣେ ଆଉ ଜଣଙ୍କୁ ଦୋଷ ଦେଉଥିଲା କିଛି ମଣିଷ ମାଉଁସ ଲୁଚେଇ ଲୁଚେଇ, କାହାକୁ ନ ଦେଇ ଖାଇ ଯାଉଚି ବୋଲି । ସେମାନଙ୍କର ସନ୍ଦେହ କେହି ଜଣେ ଆଖିଟିକୁ ନେଇଯାଇ ଏମିତି ସବୁ କାଣ୍ଡ କରୁଚି । ସେମାନେ ନିଜ ନିଜ ଭିତରେ ରାମ୍ପୁଡ଼ା ବିଦରା ଆରମ୍ଭ କରିଦେଲେ ।

ଏଇ ସମୟରେ କଳାରାଜନ ମୁହଁ ଖୋଲିଲା, "ଜବରଣ–ଶବରଣ–ଉଲ୍ଲୀକାତି–ବଚ୍ଛାରଣ" । ମନ୍ତ୍ରମୁଗ୍ଧ ପରି ସେମାନେ ସ୍ଥିର ହୋଇଗଲେ । ତା ପରେ ସମସ୍ତେ ଏକ ସ୍ୱରରେ କହିପକାଇଲେ, "ଆରେ, ତୁ କିଏ? ତୁ କିଏ?" ବୁଢ଼ୀ କହିଲା, "ଏଇ କଥା ତୁ କେମିତି ଜାଣିଲୁ ରେ? ଏ କଥା ତ ମୋ ସାନ ଝିଅକୁ ମିଶାଇ ଆମ ଚାରିଜଣଙ୍କ ଛଡ଼ା ଆଉ କାହାରିକୁ ଜଣା ନାହିଁ।"

କଳାରାଜନର ଆଉ ଜାଣିବାକୁ ବାକି ରହିଲାନି ଯେ ତା'ର ମାଆ ବୋଲାଉଥିବା ସେ ସ୍ତ୍ରୀ ଲୋକ ଜଣକ ଏଇ ଅସୁରୁଣୀର ସାନ ଝିଅ । ଅସୁରୁଣୀ ମାୟାରେ ନିଜ ରୂପ ବଦଳେଇ ରାଜାଙ୍କୁ ସମ୍ମୋହିତ କରି ରଖିଛି । ଉଆସରୁ, ଗଡ଼ରୁ ଜୀବଜନ୍ତୁଙ୍କର ଉଭାନ ହେବାର ରହସ୍ୟ ଏବେ ତା'ର ଆଉ ଅଜଣା ରହିଲାନି । ସେ ମଧ୍ୟ ଛଳନା କରି କହିଲା, "ମୋ ଆଇଲୋ, ମୋ ମାଉସୀମାନେ ଲୋ ଜୁହାର ଜୁହାର । ମୋ ମାଆ ପରା ତୁମେମାନେ କେମିତି ଅଛ ଦେଖିବାକୁ ପଠେଇଚି ମତେ । ନ ହେଲେ ଏ ମନ୍ତ୍ର ମୁଁ କେମିତି ଜାଣନ୍ତି? ଏତେ ଦିନ ପରେ ତୁମମାନଙ୍କୁ ଦେଖି ମୋତେ ରଙ୍କ ପରି ଲାଗୁଚି । ତୁମମାନଙ୍କ ପାଖରେ ଗେଲ ହେବାକୁ, କାଖ ହେବାକୁ ମୋର ଯେତେ ମନ ହେଉଚି । ହେଲେ ଡର ମାଡୁଚି, କାଳେ ମୋତେ ଖାଇଦବ । ମୋ ମାଆର ଗୋଟିଏ ବୋଲି ମୁଁ ସେରନ୍ତା । ମୋ ମାଆ କହିଚି ମୁଁ ମାମୁ ଘର କୁଳ ଉଜ୍ଜ୍ୱଳ କରିବି ।"

ସମସ୍ତେ ଜିଭ କାମୁଡ଼ି ପକାଇ କାନ ଧରି ପକାଇଲେ । ଆମେ ଯେମିତି ଭଗବାନଙ୍କ ନାଁ ଧରୁ ସେମାନେ ସେମିତି ତାଙ୍କ ଭଗବାନଙ୍କୁ ସଇତାନ ସଇତାନ ବୋଲି ଡାକ ଦେଲେ । ବୁଢ଼ୀ କହିଲା,

"ସଇତାନଙ୍କ ରାଣ। ତୁ ମୋ ନାତି। ମାଉସୀମାନଙ୍କ ପୁତୁରା। ଆମେ ତତେ ଖାଇବୁ? ଖାଇବା ଦୂରେ ଥାଉ, ସେମିତିଆ କଥା ମନରେ ଆଣିପାରିବୁ ନାହିଁ। ଆମ ଅସୁର ଅସୁରୁଣୀଙ୍କର ନିୟମ ଅଛି ଯଦି ପିଲାଙ୍କୁ ଲୋଭେଇବୁ ତେବେ ତକ୍ଷଣେ ମୂର୍ଦ୍ଧଣା ଫାଟି ଯିବ। ଆମେ ମରିଯିବୁ। ନ ହେଲେ ତ ଆମେ ଜାଣ ଅମର। ମୋ ସୁନାରେ, ଗଣ୍ଠି ଧନରେ, ମୁଁ ତତେ ଟିକିଏ ଦେଖିବିରେ। ଆଲୋ, କିଏ କୁଆଡ଼େ ଅଛ। ମୋ ଆଖି ଦିଅ। ମୁଁ ମୋ ନାତିଆକୁ ଟିକିଏ ଦେଖି ପବିତ୍ର ହୁଏ।"

ସାଙ୍ଗେ ସାଙ୍ଗେ କଳାରାଜନ ମୋ ଆଇ କି ଲୋ କହି ବୁଢ଼ୀ ପିଠିରେ ନାଉ ହୋଇ ପଡ଼ିଲା, ମାଉସୀମାନଙ୍କ ପିଠିରେ ନାଉ ହୋଇପଡ଼ିଲା। ଭୁରୁକୁଟିଆ ଗନ୍ଧରେ ତା ନାକ ଫାଟି ଯାଉଥିଲେ ବି ସେ ବାଘ ରାଜ୍ୟରୁ ଆଣିଥିବା କଖାରୁ ପରି ଏଡ଼େ ଏଡ଼େ ରସଗୋଲା, ଶିଳ ପୁଆ ପରି ପାନତୁଆ, ବେତା ପରି ଲଡୁ ସବୁ, ଆମ ରାଇଜର ଫଳ କହି ଖୁଆଇ ଦେଲା। ଅସୁରୁଣୀମାନେ ତ କୋମଳ ହୋଇଗଲେ। ସେଠୁ ସେମାନେ ବିକଳ ହେଲେ, ଆମ ଆଖି କାହିଁଗଲା, ଆମେ ଟିକିଏ ଆମ ନନ୍ଦନକୁ ଦେଖନ୍ତୁ। ଏତେବେଳକୁ କଳାରାଜନ କପାଳରୁ ବିଭୂତି ପୋଛି ସାରିଲାଣି। ଆଖି ଆଣି ବୁଢ଼ୀ କପାଳରେ ଲଗାଇ ଦେଲା। ବୀର ବେଶରେ ଥିବା କଳାରାଜନକୁ ବୁଢ଼ୀ ଦେଖି, ଛୋଟ ପିଲା କୁଣ୍ଢେଇଟିଏ ଧରି ନଚେଇଲା ପରି, ଟେକି ନେଇ ମୁଣ୍ଡ ଉପରକୁ ଉଠେଇ ନଚେଇଲା ନଚେଇଲା, ମୋ ନାତିଲୋ ମୋ ନାତି କିଲୋ କହି କହି। କଳାରାଜନ ଭୟରେ ଆଖି ବୁଜି ପକେଇଲା। ତା ପରେ ଆଉମାନେ ଚିତ୍କାର କରି ଆଖିଟିକୁ ଛଡ଼ାଛଡ଼ି କଲେ।

କଳାରାଜନ ଜଣକ ପରେ ଜଣକୁ ଆଖି ଦେଲା। ସେମାନେ ଭଉଣୀର ପୁଅଟିକୁ କେତେ ଗେହ୍ଲାକଲେ, କେତେ ଆଦର କଲେ, କେତେ ଭଲ ପାଇଲେ। ସାନ ମାଉସୀ ମଣିଷ ଖପୁରିରେ ସେମାନଙ୍କର ପ୍ରିୟ ଖାଦ୍ୟ – ମଣିଷ କଲିଜା, ଭଜା ଆଖି ଆଉ ଜିଭ ଆଣି ଖାଇବାକୁ ପରଷି ଦେଲା। ତାକୁ ଦେଖୁ ଦେଖୁ କଳାରାଜନର ଅଇ ଉଠିଲା। ସେ ବାନ୍ତି କରିପକାଇଲା। ତାକୁ ସେ ଯୋଉ ବାଟେ ବାଟେ ଆଣିଥିଲା, ସେଇ ବାଟେ ବାଟେ ଫେରାଇନେଲା। ତା ପରେ ସେମାନେ ତା ମା କଥା, ତା ଦେଶ କଥା, ପଚାରି କେତେ ଦୁଃଖ ସୁଖ ହେଲେ। ଏଥର ସେମାନେ ଚରିବାକୁ ଯିବାକୁ ସଜବାଜ ହେଲେ, କଳାରାଜନକୁ ଏଇନେ ସମ୍ଭାଳେ କିଏ? ସେ ଭେଁ ଭେଁ ରଡ଼ି କରି ଭୂଇଁରେ ଗଡ଼ିଲାଣି। କହୁଥାଏ, "ଏତେ ଦିନେ ମୋ ଆଇକୁ, ମାଉସୀମାନଙ୍କୁ ପାଇଚି, ଆଉ ଛାଡ଼ିବିନି। ତୁମକୁ କାଳେ କିଏ ମାରିଦେବ। ମୁଁ କଅଣ କରିବିଟି। କେତେ କଷ୍ଟରେ ତମ ସଇତାନ ଠାକୁର ଦୟାରୁ ତୁମକୁ ସବୁ ପାଇଛି।"

ଏକଥା ଶୁଣି ସେମାନେ ଏକା ସାଙ୍ଗରେ ଠୋ ଠୋ ହସିଲେ ଯେ ତା କାନ ତାବ୍‌ଦା ହୋଇ ଗଲା ପରି ଲାଗିଲା। ସେ ଝଅଟ ତା କାନରେ ଆଙ୍ଗୁଳି ଦେଇଦେଲା। ବୁଢ଼ୀ କହିଲା, "ଆରେ ନାତିଆ, ତୁ କଅଣ ପାଗଳା ହୋଇଗଲୁ କି? ଆମେ କ'ଣ ତୁମ ମଣିଷମାନଙ୍କ ପରି ହେଇଚୁ ଯେ ଯିଏ ପାରିଲା ଯେତେବେଳେ ଚାହିଁଲା ମାରିଦେବ? ତୁ ସିନା ତୋ ମାଠୁଁ ମନ୍ତ୍ର ପାଇଥିଲୁ ବୋଲି ଏଠିକୁ ଆସିପାରିଲୁ ଆଉ ବର୍ତ୍ତିଗଲୁ। କିଏ ଆଉ ଆସିପାରିବ ଯେ ଆମକୁ ହାନି କରିବ। ଆ ଆ ଆମ ଜୀବନ ନାଟିକା ଦେଖିବୁ, ଆ।" ପାତଳୀ ମାଉସୀଟି ତା ସରୁ ସରୁ ହାତରେ ସାପ ପରି ତାକୁ ଗୁଡ଼େଇଧରି କାଖେଇଲା। ବାଟ ସାରା ତାକୁ ଶୁଙ୍ଘି ଶୁଙ୍ଘି ନେଉଥାଏ।

ଗୁମ୍ଫା ଭିତରେ ଭିତରେ କେଜାଣି କେତେ ଦୂର ଯିବା ପରେ ଆଉ ଗୋଟିଏ ସାନ ଗୁମ୍ଫା ପଡ଼ିଲା । ତା ଭିତରେ ହାଡ଼ ଖପୁରିରେ ଗୋଟିଏ ସିଂହାସନ ପରି ହୋଇଛି । ତା ଉପରେ ସିଂହର କେଶର ବହଳ ହୋଇ ବିଛା ହୋଇଚି । ତା ଉପରେ ବିରାଟ ଗୋଟିଏ ନାଉ ତା ଠାରୁ ଆଉ ଗୋଟିଏ ସାନ, ଆଉ ଟିକିଏ ସାନ, ଏଇମିତି ତିନୋଟି ନାଉ ରଖାଯାଇଛି । ତା ପାଖରେ ସୁନାପଞ୍ଜୁରୀରେ ଗୋଟିଏ ଶୁଆ । ବୁଢ଼ୀ ପଞ୍ଜୁରୀଟିକୁ ଦେଖାଇ କହିଲା, "ଜାଣିଲୁ ନାତିଆ, ଏଇଟି ତୋ ମା'ର ଜୀବନ ନାଟିକା 'ବଛାରଣ' । ବଡ଼ ନାଉରୁ ସାନ ନାଉଯାଏ ଗୋଟିଏ ଗୋଟିଏରେ ଆଙ୍ଗୁଠି ରଖି ଚିହ୍ନେଇଲା । ଏଇ ବଡ଼ଟି ମୋର 'ଜବରଣ', ଏଇଟି ତୋ ବଡ଼ ମାଉସୀର 'ସବରଣ', ଏଇଟି ତା ତଳର 'ଉଲ୍ଲିକାତି', ଆଉ ଏଇଟା ତ ସବା ସାନ, ତୋ ମାଆର 'ବଛାରଣ' । ବୁଝିଲୁ ତୁ ନାତିଆ ? ଏଥର ଶାନ୍ତ ହ । ଏଠିକୁ କିଏ ଆସିପାରିବ ନା ଆମକୁ ମାରିବ, ନା ଆମେ ମରିବୁ ? ଏଥର ତୁ ଅଚିନ୍ତା ହୋଇ ଆରାମ କର । ଆମେ ସବୁ ଝଅଟ ପକେଇ ଆସିବୁ ଯେ । ତତେ କ'ଣ ଛାଡ଼ି ଆମେମାନେ ବେଶି ଡେରି ଯାଏଁ ରହିପାରିବୁ ?

ତା ପରେ ବୁଢ଼ୀ ଆଉଗୋଟେ କଣରେ ଗଦା ହୋଇଥିବା ହୀରା, ନୀଳା, ମୋତି, ମାଣିକ, ହାରମାଳ କେତେ କ'ଣ ଦେଖାଇ କହିଲା, "ଏସବୁ ତୋର, ଆମର ଏଗୁଡ଼ା କ'ଣ ହେବ ଯେ ? ଯେତେ ସବୁ ରାଜାରାଜୁଡ଼ା ଖାଇଚୁ ସବୁ ତାଙ୍କର, କୋଉ କାଳରୁ ଗଦା ହୋଇ ଫିମ୍ପି ମାରିଲାଣି । ଏଇଆ କହି ସେ ବାହାରିଲେ । କଳାରାଜନ ସେମାନେ ଯେ ମରିବେନି ଶୁଣି ଯେମିତି ଭାରି ଖୁସି ହେଇଯାଇଚି ବୋଲି ବାହାନା କରି ଆଈ ମାଉସୀଙ୍କୁ ଢେର ଢେର ଚାପୁଲୁସି କଥା କହି ମନ କିଣି ପକେଇଲା । ଶେଷରେ ତମେ ସବୁ ଆସିଲାଯାଏ ମୁଁ ଏଇଠି ଏଇମିତି ଏଇ ଦୁଆର ପାଖରେ ବସିରହିଥିବି କହି ଦୁଆରଯାଏ ବଳେଇ ଦେବାକୁ ଆସିଲା । ଅସୁରୁଣୀମାନେ କଳାରାଜନକୁ ସାଉଁଳେଇ ପାଉଁଳେଇ, ପଛକୁ ବାରବାର ଫେରି ଚାହିଁଚାହିଁ, କୋଶକ ବାଟକୁ ପାହୁଣ୍ଡେ କରି ନିମିଷକେ କୁଆଡ଼େ ଉଭାନ ହେଇଗଲେ ।

କଳାରାଜନ ଦଣ୍ଡେ ଅପେକ୍ଷା କଲା, ତା ପରେ ସେଇ ଭିତର ପୁରକୁ ଯାଇ ନାଉ ଆଉ ପଞ୍ଜୁରିଟି ଧରି ବାହାରକୁ ଆସିଗଲା । ବଡ଼ ନାଉଟିକୁ ଧରି 'ଜବରଣ' କହି ଦେଲା କଚାଡ଼ି । ତା ପଛକୁ ଆଉ ଗୋଟିଏ, ତା ପଛକୁ ଆଉ ଗୋଟିଏ । ନାଉଟିମାନ ଛତ୍ରଛାନ ହେଇ ଭାଙ୍ଗି ଖିନିଭିନି ହେଇଗଲେ । ଦେଖିଲା ବେଳକୁ ତିନି ଅସୁରୁଣୀ ମରଣାନ୍ତକ ରଡ଼ି କରି ଗୁମ୍ଫା ଦୁଆରେ ଛେଚେରା ହେଇ ମରିପଡ଼ିଛନ୍ତି । କଳାରାଜନ ଶୁଆର ପଞ୍ଜୁରିଟିକୁ ଧରି ସର୍ବଜୟ ଉପରେ ବସି ମାରିଲା ଛାଟେ ଯେ ଆସି ବାଘ ରାଜ୍ୟର ସୁନା ପାଚିରି ଡେଉଁ ଆର ପାଖରେ ପହଞ୍ଚିଗଲା । ଗୁମ୍ଫାକୁ ଆଉ ଥରେ ଫେରି ବି ଚାହିଁନାହିଁ । ସେ ଅଷ୍ଟ ଅଳଙ୍କାର ନବରତ୍ନ ସବୁ ଯିଏ ଯୋଉଠି ଥିଲା ସେଇଠି ସେମିତି ପଡ଼ି ରହିଲା । ଅସୁରୁଣୀମାନେ ମରିବା ପରେ ସେ ଅନଳ ପାଚିରି କୁଆଡ଼େ ଲିଭି ସାରିଥିଲା ।

ତାକୁ ଦେଖି ବାଘ ରାଜକନ୍ୟା ହଳଦିପାଣିରୁ ହାତ କାଢ଼ି ଆଣି ଓଳଗି ହେଲା । ଜୋଇଁକୁ ଦେଖି ସମସ୍ତେ ଆନନ୍ଦିତ ହେଲେ । ପୁରୋହିତ ଆସି ଆଶୀର୍ବାଦ ଦୁବ ଚାଉଳ, ଫୁଲ ମଥାରେ ପକାଇଲେ । ତାଙ୍କ ଲାଗି ଜାଣ କଳାରାଜନ ଗଡ଼ ଜୟ କରି ଜୀବନ ଧରି ଫେରି ଆସିପାରିଛି । ବହୁ ଭକ୍ତିରେ ସେ ତାଙ୍କର ପାଦତଳେ ଗଡ଼ିଯାଇ ଶୋଇଲା, ପାଦ ଛୁଇଁ ପାଦଧୂଳି ମଥାରେ ମାରିଲା ।

ଶଙ୍ଖ ହୁଳହୁଳି ବାଜା ବାଜଣାରେ ଉଆସକୁ ଗଲା । କାନ କୁଣ୍ଡଉ କୁଣ୍ଡଉ ବଡ଼ ଆନନ୍ଦରେ ସାତ ଦିନ ବିତିଗଲାଣି । ତା କନ୍ୟାକୁ ନେଇ ସେ ବାହୁଡ଼ିଲା ।

ରାଜା ଯେତେ ଜାନି ଯଉତୁକ ଦେଲେ ସେ କିଛି ହେଲେ ଆଣିଲାନି । ବାଘ ରାଜାଝିଅ ତାକୁ ଶିଖେଇଥିଲା ଯେ ଯଉତୁକ ହିସାବରେ ଛୋଟୀ ବାଘଟିକୁ ଆଣିବ । ସେଇ ଛୋଟୀ ବାଘଟିକୁ ନେଇ ସେମାନେ ବାଘରାଜା ଘରୁ ବିଦାହେଲେ । ତା ପରେ ପଡ଼ିଲା ବାର୍‌ହା ରାଜା ଘର । ବାଘ ରାଜାଝିଅ ଆଗରୁ ସବୁକଥା ଜାଣିଥିଲା । ସିଏ ଆନନ୍ଦରେ ସାତଦିନ କଟାଇ ବାର୍‌ହା ରାଜାଝିଅକୁ ନିଉଛାଳିଲା । ବାର୍‌ହା ରାଜାଝିଅ ମଧ୍ଯ ତାକୁ ସାଦରେ ସ୍ୱାଗତ କଲା । ସେଇଠି ସେମାନେ ଆନନ୍ଦରେ ସାତଦିନ କଟାଇ ଛୋଟୀ ବାର୍‌ହାଟିକୁ ସାଙ୍ଗରେ ଆଣି ବିଦାହୋଇ ଆସିଲେ । ପାରା ରାଇଜରେ ସେଇମିତି ସାତଦିନ କଟିଗଲା । ଛୋଟୀ ପାରାଟିକୁ ସାଥିରେ ଧରି ସେମାନେ ସମସ୍ତେ ନିଜ ରାଇଜକୁ ବାହୁଡ଼ିଲେ । ଏ ସମସ୍ତେ କଳାରାଜନକୁ ଦେଖୁ ଦେଖୁ ମଣିଷ ହୋଇ ଯାଇଥିଲେ । ଉଆସ ଛାଡ଼ି ଆସିଲା ବେଳକୁ ସେମାନେ ପୁଣି ତାଙ୍କ ପରି ହେଇଗଲେ ।

କଳାରାଜନ ବାହା ହୋଇ କନ୍ୟାମାନଙ୍କୁ ସାଥିରେ ଧରି ଲେଉଟି ଆସୁଛି ଶୁଣି ରାଜ୍ୟଲୋକେ ବହୁତ ଆନନ୍ଦ ଉତ୍ସବ କଲେ । ହେଲେ ରାଣୀ ତାଙ୍କୁ ଉଆସ ବାହାର ଖଞ୍ଜାରେ ରଖିଲା । ସେ କହିଲା ଆହୁରି ପରୀକ୍ଷା ବାକି ଅଛି । ରାଣୀ କଥାରେ ପ୍ରତିବାଦ କରିବାକୁ କାହାରି ସାହସ ନ ଥିଲା । ସେ ଘୋଷଣା କଲା ସାତ ଶଗଡ଼ ସୋରିଷ ଉଆସ ଅଗଣାରେ ବିଛେଇ ଦିଆଯିବ । ରାତି ପାହିଲା ବେଳକୁ ଯଦି ଗୋଟିକରୁ ଗୋଟିଏ ଗୋଟାଇ ଦେଇପାରିବ ତେବେ କଳାରାଜନ ଜିତିବ ।

ବୋହୂମାନଙ୍କ ଭିତରେ ସଲାପରାମର୍ଶ ହୋଇ ଖୁସି ଖୁସି ଠିକଣା ହୋଇଥାଏ । କଳାରାଜନ ସବୁରି ଘରକୁ ପାଳିକରି ଯିବ । ପ୍ରଥମ ଦିନ ପାରା ରାଜାଝିଅର ପାଳି । ରାଜାପୁଅ ମନ ଶୁଖେଇ ପାରା ରାଜାଝିଅ ଘରେ ପହଞ୍ଚିଲା । ଝିଅ ତାକୁ କାହିଁକି ମୁହଁ ଶୁଖିଛି ବୋଲି ପଚାରିଲାରୁ ତାକୁ କଳାରାଜନ ଶୋରିଷ ବୁଣା ହୋଇଥିବା କଥା କହିଲା । ଝିଅ କହିଲା ଏ ସାମାନ୍ୟ କଥାକୁ ଏତେ ଚିନ୍ତା । ତୁମେ ଖାଇପିଇ ଆରାମରେ ଶୁଅ, ଆଉ ସବୁ କଥା ମୋ ଉପରେ ଛାଡ଼ିଦିଅ । ଛପନ ପ୍ରକାରର ରାନ୍ଧଣା କରିଥିଲା ପାରା ବୋହୂଟି । ସେ ମନ ଖୁସିରେ ଖାଇଲା ଆନନ୍ଦରେ ରାତି କଟାଇ ଉଠିଲା ବେଳକୁ ଚାରିଆଡ଼ କୋଳାହଳ । ରାଣୀର ଲୋକେ ଯେତେ ନିରିଖି ଦେଖିଲେ ମଧ୍ଯ ଗୋଟିଏ ହେଲେ ଶୋରିଷ କୋଉଠି ପଡ଼ିନାହିଁ । ଏଣେ କ'ଣ ହୋଇଚିନା ରାଜାପୁଅ ତ ଖାଇ ପିଇ ମହାମଉଜରେ ପହୁଡ଼ୁଚି । ପାରା ବୋହୂଟି ଛୋଟୀ ପାରାଟିକୁ ତା ରାଇଜକୁ ପଠାଇ ଦେଇଛି । ରାଜ୍ୟର ସବୁ ପାରା ଆସି ଶୋରିଷ ସବୁ ଖୁଣ୍ଟି ଦେଇଛନ୍ତି । କଳାରାଜନ ତ ଜିତିଗଲା । ତା ଆନନ୍ଦ କହିଲେ ନ ସରେ, ସେ ଜାଣେ ଏ କାମ ସେଇ ଅତି ସୁନ୍ଦରୀ ରାଜକୁମାରୀର । ସେ ତାକୁ ଟେକି ଧରି ଚାରିପାଖ ଘିରିଘିରି ହୋଇ ବୁଲିଗଲା ।

ରାଣୀର କିନ୍ତୁ ଭାରି ମନ ଦୁଃଖ । ସେ କହିଲେ ଆଜି ରାତି ପାହିଲା ବେଳକୁ ବାରି ପାଖରେ ଗୋଟିଏ ପୋଖରୀ ଯଦି ଖୋଳା ହୋଇ ନ ଥିବ ତେବେ କଳାରାଜନ ଶୂଳିରେ ବସିବ । ସେଦିନ ବାର୍‌ହା ରାଜାଝିଅର ପାଳି, ରାଜାପୁଅର ଶୁଖିଲା ମୁହଁକୁ ଦେଖି ତା ମନ କ'ଣ ହୋଇଗଲା । ସେ ତାକୁ ବୋଧ ଦେଇ ଚଉଷଠି ବ୍ୟଞ୍ଜନ ଖୁଆଇ ପିଆଇ ଖୁସିବାସିରେ ଶୁଆଇ ପକାଇ ଛୋଟୀ

ବାର୍‌ହାକୁ ରାଜ୍ୟକୁ ପଠାଇ ଦେଲା । ରାତି ରାତି ରାଜ୍ୟରୁ ବାର୍‌ହାମାନେ ଆସି ବଢ଼ିଆ ପୋଖରୀଟିଏ ଖୋଳିଦେଲେ । ସେଥିରେ ଦୀପଦଣ୍ଡି, ନାନା ରଙ୍ଗର ପଦ୍ମ ଫୁଟିଛି, ହଂସ ଖେଳୁଛନ୍ତି । ସକାଳୁ ସକାଳୁ ରାଣୀ ଉଠି ଧାଇଁଚି ଦେଖିବାକୁ । ଏ ସବୁ ଦେଖି ତ ସେ ଏକବାରେ ଥ । ରାଜ୍ୟ ଲୋକେ ସମସ୍ତେ ଦେଖି କାବା । ନିଜେ କଳାରାଜନ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲା । ତା ସୁନ୍ଦରୀ ସ୍ତ୍ରୀକୁ କେତେ ଯେ ଗେହ୍ଲାକଲା କହିବାର ନାହିଁ ।

କିନ୍ତୁ ରାଣୀ ଖାଲି ରାଗରେ ଗରଗର ହୋଇ ଫୁଟୁଥାଏ । ଏଥର ସେ ବିଛଣାରେ ପଡ଼ିଗଲା । ରାଜାଙ୍କ ସହ ସମସ୍ତେ କ'ଣ ହେଲା କ'ଣ ହେଲା ହୁରୀ ପକାଇଲେ । ସେ ଧକେଇ ଧକେଇ କହିଲା ଆମ ଘରେ ଥରେ ମତେ ଏମିତି ରୋଗ ହେଇଥିଲା । ବାଘକ୍ଷୀରରେ ଗାଧୋଇଲେ ମୋ ଦେହ ଭଲ ହେବ । କଳାରାଜନର ଏ ଶେଷ ପରୀକ୍ଷା । କଳାରାଜନ ବିଚରା କରିବ କ'ଣ? ସେ ଦିନ ବାଘ ରାଜାଝିଅର ପାଳି । ଆଉ ବୋହୂମାନେ ତା'ର ଏତେ ସବୁ ସମସ୍ୟାର ସମାଧାନ କରିଦେଇଛନ୍ତି ବୋଲି ସେ ବାଘ ରାଜାଝିଅ ଉପରେ ଭରସା କରିଥାଏ । ତା ଛାତି ଆଉ ଧଡ଼ପଡ଼ ହେଉନଥାଏ । ସେ ହସି ହସି ବାଘ ରାଜାଝିଅ ଉଆସକୁ ଆସିଲା । ସମସ୍ତଙ୍କ ପରି ସେ ମଧ୍ୟ ତାକୁ ବହୁତ ଆଦରରେ ସ୍ୱାଗତ କରି ଫୁଲବିଛା ମଖମଲି ପଲଙ୍କରେ ବସାଇଲା । ଚଉରାଶି ପ୍ରକାରର ସୁମିଷ୍ଟ ବ୍ୟଞ୍ଜନ ଖୁଆଇ ପିଆଇ ମଧୁରିଆ କଥାଭାଷା ହେଲା । ପାରା ରାଜାଝିଅ, ବାର୍‌ହା ରାଜାଝିଅ କଥା ପଚାରିଲା । ସୋରିଷ କଥା, ପୋଖରୀ କଥା ତ ଆଗରୁ ଶୁଣିଥିଲା । ଏବେ ତା ପାଇଁ କ'ଣ ସୁଯୋଗ ଆସୁଚି ସେଇକଥା ପଚାରିଲା । ରାଜାପୁଅ ସବୁ କଥା ତାକୁ ଖୋଲି ଶୁଣାଇଲା । ବାଘ ରାଜାଝିଅ ଏଇ ସାମାନ୍ୟ କଥା ପାଇଁ କୌଣସି କଥା ମନକୁ ନେବାକୁ ବାରଣ କଲା । ହସଖୁସି ବେଳ କେଉଁବାଟେ କଟିଗଲା ଜଣା ପଡ଼ିଲାନି ।

ରାଜାପୁଅ ଶୋଇ ପଡ଼ିଲା ପରେ ବାଘ ରାଜାଝିଅ ତାଙ୍କ ରାଇଜକୁ ଛୋଟୀ ବାଘଟିକୁ ପଠେଇ ଦେଲା । ରାତି ପାହି ପାହି ଆସୁଥାଏ । ଭଲକରି ପାହି ନାହିଁ । ଫୁକିଆ ତାରା ଆସୁଛନ୍ତି । ଜଙ୍ଗଲରୁ ମାଡ଼ିଆସୁଛନ୍ତି ପଲ ପଲ ବାଘବାଘୁଣୀ । ତାଙ୍କ ଭିତରେ ବେଶି ବାଘୁଣୀ । ଆଗରେ ବିରାଟ ବିରାଟ ମହାବଳ ବାଘମାନେ, ତାଙ୍କ ପଛକୁ ବାଘୁଣୀ ଆଉ ଛୁଆ । ଶେଷକୁ ଆଉ ପଲେ ମହାବଳ ବାଘ । ହେଣ୍ଟାଳରେ କାନ ଅତଡ଼ା ପଡ଼ିଯାଉଛି । ତାଙ୍କ ଆଖି ମୁରାଟ, ନିଶଫୁଲା, ଲାଙ୍ଗୁଡ଼ ବାଡ଼ିଆ ଦେଖି ରାଜ୍ୟବାସୀଙ୍କ ପିଳେହିପାଣି । ଡାଟି କବାଟ ପଡ଼ିଗଲା । ରାଜାଙ୍କ ଉଆସକୁ ଘେରି ରହିଥିବା ବାଘମାନଙ୍କୁ ଦେଖି ସମସ୍ତେ ତ ତାଟକା । ରାଣୀ ମୁହଁମାଡ଼ି ବିଛଣାରେ ପଡ଼ିରହିଚି । ଛୋଟୀ ବାଘ କ'ଣ କଲା ନା ଦାନ୍ତରେ କାମୁଡ଼ି ସାତଟା ବଡ଼ ବାଲ୍‌ଟି ଆଣି ବାଘୁଣୀମାନଙ୍କ ପେଟତଳେ ରଖିଦେଲା । ତାଙ୍କ ଚିରରୁ ଗଦଗଦ ହୋଇ କ୍ଷୀରସବୁ ଝରି ଆସିଲା । ବାଲ୍‌ଟି ପୂରିଗଲା ପରେ ଛୋଟୀ କ'ଣ କଲା କେଜାଣି ପଲକ ଯାକ ଶହ ଶହ ସଂଖ୍ୟାରେ ଯୋଉ ବାଟେ ଆସିଥିଲେ ସେଇ ବାଟେ ଫେରିଗଲେ ।

ଗଡ଼ଲୋକେ ସତେ ଯେମିତି ଜୀବନ ଫେରିପାଇଲେ । ତାଙ୍କ ପିଣ୍ଡରେ ପ୍ରାଣ ପଶିଲା, ଶାନ୍ତିରେ ନିଶ୍ୱାସ ମାରିଲେ, ରାଣୀ ବିଛଣାରୁ ଉଠି ବସିପଡ଼ିଲା । କଳାରାଜନ କାହାରି କଥା ନ ଶୁଣି ଲୋକ ଲଗେଇ ସାତ ବାଲ୍‌ଟି ବାଘ ଦୁଧ ସେଇଠି ତା ମୁଣ୍ଡରେ ଢାଳିଦେଲା । ବାଘମାନେ ଚାଲିଗଲା ପରେ ଗଡ଼ ଲୋକମାନେ ଆସି ସେଠି ଜମି ଗଲେଣି । ଲୋକ ଯେ ଲୋକ, ଥାଟପଟାଳ ଲୋକ ।

କଳାରାଜନ ସମସ୍ତଙ୍କୁ ଦରବାରରେ ଥଇଥାପନ କରି ରାଜାଙ୍କୁ ଆଣି ସିଂହାସନରେ ବସାଇଲା । ଏତେଦିନ ପରେ ରାଜା ପୁଣି ସିଂହାସନରେ ବସିଲେ । କାରଣ ଆଜିଯାଏ ରାଣୀ ଏଇ ସିଂହାସନରେ ବସୁଥିଲା । କଳାରାଜନ ରାଣୀଙ୍କୁ ଭିଡ଼ିଆଣି ରାଜାଙ୍କ ଗୋଡ଼ତଳେ କଚାଡ଼ି ଦେଲା । ସେ କିଛି ପାଟି କରି ଆସୁଥିଲା । କଳାରାଜନ ତାକୁ ମାରିଲା ଏକ ବ୍ରହ୍ମ ଚାପୁଡ଼ା ଯେ, ସେ ସେତିକିରେ ଥଣ୍ଡା । ଆଉ ମୁହଁ ଖୋଲିବାକୁ ସାହସ କରିନି ।

କଳାରାଜନ ତା'ପରେ ସୁନା ପଞ୍ଜୁରିରୁ ଶୁଆଟିକୁ ଆଣି ହାତରେ ଧରିଲା । ତାକୁ ଦେଖି ରାଣୀ ଖାଲି ଠକ ଠକ ଥରୁଛି । କେତେ ମିନତୀ କରି ଶୁଆଟିକୁ ମାଗିଲା । କଳାରାଜନ ପ୍ରଜାମାନଙ୍କୁ ଚାହିଁ କହିଲା, "ଏଇଟା ରାଣୀ ନୁହଁ ଗୋଟିଏ ରାକ୍ଷାସୁଣୀ । ମୋ ମା'କୁ ଖାଇଛି । ରାଜ୍ୟର ଯେତେ ଜୀବଜନ୍ତୁ ହାତୀ ଘୋଡ଼ା ଗାଈବଳଦ ସବୁ ଏଇ ଖାଇଛି ।" ଏମିତି କହି ଶୁଆର ଗୋଡ଼ଟିଏ ମୋଡ଼ିଦେଲା । ସେଠୁଁ ରାଣୀ ମରିଗଲି ମରିଗଲି ମୋ ଗୋଡ଼ ଗଲା, ମୋ ଗୋଡ଼ କହି ରଡ଼ି ଛାଡ଼ିଲା । ସେତବେଳକୁ ତା ଗୋଡ଼ ଭାଙ୍ଗି ନଡ଼ ନଡ଼ ହଉଚି । କଳାରାଜନ କହିଲା, "ଯା ସବୁ ଖାଇଚୁ ବାନ୍ତି କର, ବାନ୍ତି କର ।" ରାଣୀ ସବୁ ଗଳଗଳକରି ବାନ୍ତି କରି ପକେଇଲା । ସେଥିରେ କେତେ ପିଲା, କେତେ ମଣିଷ, କେତେ ଜୀବଜନ୍ତୁ ସବୁ ବାହାରିଲେ । ସତସତିକା ରାଣୀ କଳାରାଜନର ମାଆ ମଧ୍ୟ । କଳାରାଜନ କହିଲା, "ସମସ୍ତଙ୍କୁ ଜୀବଦାନ ଦେ ଅସୁରୁଣୀ ।" ଚାହୁଁଚାହୁଁ ଦଣ୍ଡକରେ ସମସ୍ତେ ଜୀଇଁ ଉଠିଲେ । ରାଜାଙ୍କର ରାଣୀଙ୍କୁ ଦେଖି ଆନନ୍ଦ କହିଲେ ନ ସରେ । ସେତେବେଳେ ରାଜାଙ୍କ ଉପରେ ଗୁଣୀ ଗାରେଡ଼ିର ପ୍ରଭାବ ଆଉ ନଥାଏ । ସେ ରାଣୀଙ୍କୁ ପାଖରେ ବସାଇଲେ ।

କଳାରାଜନ କେତେବେଳେ ଶୁଆର ଗୋଡ଼ ମୋଡ଼ି ଭାଙ୍ଗିଲା । କେତେବେଳେ ଥଣ୍ଟ, କେତେବେଳେ ଡେଣା ମୋଡ଼ି ଦଉଥାଏ । ଶୁଆର ଯୋଉଁ ଅଂଶ ଚିପୁଥାଏ ଅସୁରୁଣୀର ସେଇ ଅଂଶ କଷ୍ଟ । ଖାଲି କଲବଲ ହେଉଥାଏ । ଶୁଆଟିକୁ ଛାଡ଼ି ଦେବା ପାଇଁ କେତେ ଡହଳ ବିକଳ ନେହୁରା ହୋଇ ମାଗୁଣୀ କରୁଥାଏ । କଳାରାଜନ କହିଲା, "ଆଉ ତତେ ଛାଡ଼ିବି? ତୁ ଆମ ରାଜ୍ୟବାସୀଙ୍କୁ ଯେତେ କଷ୍ଟ ଦେଇଛୁ ଆଜି ତା'ର ଫଳ ପା ।" ଏଇଆ କହି, ଥିଲା ଥିଲା ଶୁଆର ବେକଟିକୁ ମୋଡ଼ିଦେଲା । କାନଫଟା ଗର୍ଜନ କରି ଅସୁରୁଣୀ ଜୀବନ ଛାଡ଼ିଲା । ମୋହିନୀ ରୂପ ଦଣ୍ଡକରେ ଅସୁରୁଣୀ ରୂପ ହୋଇ ଚାରିକାତ ମାରି ପଡ଼ି ରହିଲା । ତା'ର ଏଡ଼େ ବିଶାଳ ବପୁ ତଳେ କେତେ ଲୋକ ଚିପି ହୋଇ ଯାଇଥିଲେ । କେତେ ଲୋକଙ୍କୁ ମୁମୂର୍ଷୁ ଅବସ୍ଥାରେ ଉଦ୍ଧାର କରାଗଲା ।

ଏଥର ରାଜା ରାଣୀ ପୁଅବୋହୂମାନଙ୍କୁ ନେଇ ଅତି ଆନନ୍ଦରେ କାଳ କଟାଇଲେ । ବଡ଼ ଆନନ୍ଦଉତ୍ସବ ଚହ ଚହ ମହ ମହରେ କଳାରାଜନଙ୍କୁ ସିଂହାସନରେ ଅଭିଷିକ୍ତ କରାଇ ରାଜାରାଣୀ ପୂଜା ଅର୍ଚ୍ଚନାରେ ମଜ୍ଜିଗଲେ । କଳାରାଜନ ରାଣୀମାନଙ୍କୁ ଧରି ଅତି ସୁଖରେ ରାଜୁତି କଲା । ତା ଅମଳରେ ପ୍ରଜାମାନେ ସ୍ୱର୍ଗ ସୁଖ ଲଭିଲେ । ମୁଁ ବି କଳାରାଜନକୁ ଦେଖିବାକୁ ଯାଇଥିଲି । କେତେ କ'ଣ ଭେଟି ଜିନିଷ ନେଇଥିଲି ହେଲେ ମତେ କେହି ପଦଟିଏ ବି କଥା କହିଲେନି ।

ମୋ କଥାଟି ସରିଲା ଫୁଲ ଗଛଟି ଜିଇଁଲା ।



# ସାତ ଚକୁଳି ଚଉଦ ଚେଏଁ

କଥାଟିଏଁ କହୁଁ କିସ୍ କଥା
ଚକୁଳି କଥା
କି ଚକୁଳି, ବୁଢ଼ା ଚକୁଳି
କି ବୁଢ଼ା, ରାଜାଙ୍କ ଘୋଡ଼ା
କି ଘୋଡ଼ା, ସୁଶୀଳ ଘୋଡ଼ା
କି ସୁଶୀଳ, ବଉଳ ମାଳ
କି ବଉଳ, ସୁନା ଦେଉଳ
କି ସୁନା, ପଡ଼ିଆ ସୁନା
କି ପଡ଼ିଆ, କଇଁ ଗାଡ଼ିଆ
କି କଇଁ, ଟାଙ୍ଗରା ଭୂଇଁ
କି ଟାଙ୍ଗରା, ଗୋରା ବାଙ୍ଗରା
କି ଗୋରା, ବ୍ରାହ୍ମଣ ଗୋରା
ଗୋରା ବ୍ରାହ୍ମଣର ସାତଟି ଝିଅ, ତାକୁ ନେଇ କରି ବଣରେ ଥୁଅ ।।

କ'ଣ ହେଇଚି ନା ଗୋଟିଏ ଗାଁରେ ଗୋଟିଏ ଗୋରା ବ୍ରାହ୍ମଣ ଥିଲା । ଭାରି ଗୋରା କିନ୍ତୁ ବଡ଼ ଗରିବ । ମା ଲକ୍ଷ୍ମୀ ସାଆନ୍ତାଣୀ ସତେ ଅବା ଆଡ଼ ଆଖିରେ ବି ଚାହିଁ ନାହାନ୍ତି । ଯୋଉଠି ଧନ ନାହିଁ ସେଠି ତ ଜନ ଅଧିକ । ଯେମିତି, ରାମ ରାଉତ, ଘରେ ଭାତ ନାହିଁ ପିଲା ବହୁତ । ସେମିତି ବ୍ରାହ୍ମଣର ବର୍ଷକୁ ଗୋଟିଏ ଗୋଟିଏ ପିଲା । ସିଏ ପୁଣି ଝିଅ । ବିଚରା ବ୍ରାହ୍ମଣ କରେ କ'ଣ? ଭିକ ମାଗି ଚଳେ । ନିଇତି ଭିକାରିକୁ କିଏ ବା କେତେ ଦେବ । ସେଥିପାଇଁ ଗାଁଏ ଗଲେ ମାଣେ ତ ପାଞ୍ଚ ଗାଁ ଗଲେ ମାଣେ ଆଣେ । ସାତଟି ଝିଅ ଠିକା ଠିକା ହେଇ ଆସୁଛନ୍ତି । ପେଟ ତ ବଢୁଛି । କେମିତି କ'ଣ କରିବ କିଛି ବୁଦ୍ଧିବାଟ ଦିଶୁନି । ମଲା ମୋର, ସେଥିରେ ପୁଣି ଏମିତି ଅଲାଜୁକ ଯେ ପିଠା ଖାଇବାକୁ ମନ କରୁଛି । କୋଉ କାଳରୁ ପିଠା ଟିକିଏ ପାଟିରେ ବାଜିନି । ପିଠାର ସୁଆଦ କେମିତି ସେ ଭୁଲିଗଲାଣି । ମନେ ମନେ ବିଚାର କଲା, କାଲି ଭିକମାଗି ଗଲେ ନିଶ୍ଚେ ବିରି ଚାଉଳ ଟିକେ ମାଗି ଆଣିବ । ତହିଁ ଆର ଦିନ ବ୍ରାହ୍ମଣ ଭିକମାଗି ଗଲା ବେଳେ କାହାକୁ ବିରି ପୁଞ୍ଜିଏ ମାଗିଲା, କାହାକୁ ଚାଉଳ ପୁଞ୍ଜିଏ । ସମସ୍ତେ ତାକୁ ସୁଖ ପାଆନ୍ତି, ପୁନେଇ, ଅମେଇସା, ସଂକରାନ୍ତି , ଗ୍ରହଣ,



ପରାଗ, ପର୍ବପର୍ବାଣି ତା'ରି ଠାରୁ ତ ବୁଝନ୍ତି। ନନା ତ କାହାରିକୁ କେବେ ହେଲେ କିଛି ମୁହଁ ଖୋଲି ମାଗେନି। ଆଜି ଟିକିଏ ମାଗୁଚି ବୋଲି ସମସ୍ତେ ଟିକିଏ ଟିକିଏ ଦେଲେ। ବ୍ରାହ୍ମଣର ମନ ଭାରି ଖୁସି। ଆଜି ଏତେ ଦିନେ ଜିଭରେ ଟିକିଏ ଭଲମନ୍ଦ ବାଜିବ।

ସବୁ ଆଣି ସ୍ତ୍ରୀକୁ ଦେଲା। ସେ ବିରି ରଗଡ଼ି ପାଛୁଡ଼ି ବତୁରେଇଲା। ଚାଉଳ ବତୁରେଇଲା। ପିଲାଏ ପିଠା ପିଠା ବୋଲି ନାଚିଲେଣି। ବ୍ରାହ୍ମଣୀ ବଟା ଘଷା କରି ସାଇତି ସୁମରି ରଖିଲା, ରାତିକି ପିଠା ହବ। ଦିନ ଗଡ଼ି ସଞ୍ଜ ହେଲାଣି। ସେ ଜାଣିଜାଣି ଡେରି କରୁଚି। ପିଲାଙ୍କର ତ ସଞ୍ଜୁଆ ଶୋଇବାର ଅଭ୍ୟାସ। ସେ ପିଠା ଖାଇବେ ପିଠା ଖାଇବେ ବୋଲି ଡିଆଁ ଡେଇଁ ହେଇ ହେଁସପରାରେ ଶୋଇଗଲେଣି।

ବ୍ରାହ୍ମଣୀ ପିଠା କରି ବସିଲା । ପିଠା ଖାଇବେ ବୋଲି ତ ମନରେ ଅଛି । ମା ଗୋଟିଏ ପିଠା ଚେଏଁ କରି ପଲମରେ ପକାଇଲା ବେଳକୁ ଗୋଟିଏ ପିଲା ଚାଉଁକିରି ଉଠିଲା । ପିଠାଟିକୁ ଆଉ ଥରେ ଲେଉଟାଇବା ବେଳକୁ ଆଉ ଥରେ ଚେଏଁ । ସେ ପିଠାଟିକୁ କାଢ଼ି ପିଲାଟିକୁ ଖୁଆଇ ଶୁଆଇ ପକାଇଲା । ପୁଣି ଆଉ ଥରେ ଚେଏଁ, ଆଉ ଗୋଟିଏ ପିଲା ଉଠିଲା । ଆଉ ଥରେ ଚେଏଁ କରି ସେଇ ପିଠାଟି ପିଲାଟିକୁ ଦେଇ ଶୁଆଇ ପକାଇଲା । ଏଣେ ବ୍ରାହ୍ମଣ ପିଠାଖାଇବ ବୋଲି କେତେବେଳୁ ଆସି ଗମ୍ଭୀରାରେ ମୁହଁ ମାଡ଼ି ଶୋଇଚି । ତାକୁ କେତେବେଳେ ଡାକରା ଆସିବ ପିଠା ଖାଇବ । ମା'ଟି ବିଚରା କରିବ କ'ଣ ? ମା ମନ ତ ବୁଝୁନି, ପିଲାଙ୍କୁ କେମିତି ମୁର୍ଚ୍ଛିବ ? ଗୋଟିଏ ଗୋଟିଏ କରି ସାତଟି ପିଲାଙ୍କୁ ଦେଇ ଦେଇଛି ।

ବ୍ରାହ୍ମଣ ଆସି ଆଖି ମଟମଟ କରି ଭାରିଜାକୁ ଚାହିଁଲାଣି । ମା ତାକୁ ଦେଖି ଡରିଗଲାଣି । ତଥାପି ଦମ୍ଭରେ କହିଲା, "ବସ ବସ, ତୁମକୁ ପିଠା ଖାଇବାକୁ ଦଉଚି ।" ବ୍ରାହ୍ମଣ ପିଢ଼ା ପାରି ଚକା ପକେଇ ବସି ପଡ଼ିଲା । ଚଳୁ କରିବାକୁ ମନେ ନାହିଁ । ମା ଗୋଟିଏ ପିଠା ତାକୁ ଦେଲା, ସେ ଦି ପୂଳାରେ ସେଇଟିକୁ ଖାଇ ଆହୁରି ମାଗିଲା । ମା ଶେଷ ପିଠାଟି ତାକୁ ପରଶି ଦେଲା, ତା ନିଜ ପାଇଁ ନ ଥିଲେ ନ ଥାଉ ପଛକେ । ସେ ସେଇଟିକୁ ଖାଇ ଆହୁରି ମାଗିଲା । ମା କହିଲା, "ଆଉ ତ ନାହିଁ ।" ବ୍ରାହ୍ମଣ ରାଗିମାଗି ବ୍ରହ୍ମଚଣ୍ଡାଳ । ଜଞ୍ଜାଳ କଲା, "କ'ଣ ହେଲା ? ତୁ ୟା ଆଗରୁ ଚଉଦଟା ପିଠାକରିଚୁ । କୋଉଠି ଲୁଚେଇ ରଖିଚୁ କହ ? ମୁଁ ତ ଚଉଦଟା ଚେଏଁ ଗଣିଛି ।" ମା କହିଲା, "ଶୁଣ ତେବେ । ଗୋଟିକ ପିଠାରେ ଦି'ଟା ଚେଏଁ ହୁଏ । ଗୋଟିଏ ପକାଇଲା ବେଳେ ଆଉ ଗୋଟିଏ ଲେଉଟାଇବା ବେଳେ । ସେମିତି ଆଗରୁ ସାତଟି ପିଠା ହେଇଥିଲା । ତମର ସାତଟି ପିଲା ସାତଟି ପିଠା ଖାଇ ଶୋଇ ପଡ଼ିଲେଣି ।" ବ୍ରାହ୍ମଣ ଏଥର ବୁଝିଲା, ସାତ ଚକୁଳିକୁ ଚଉଦ ଚେଏଁ । ଏ ପିଲା ସବୁ ଖାଇଛନ୍ତି । ତା'ର ସବୁଯାକ ରାଗ ପିଲାଙ୍କ ଉପରେ ବରଷିଲା ।

କାଲି ସକାଳୁ କିଛି ଗୋଟିଏ କରିବାକୁ ପଡ଼ିବ । ଏଇ କଥା ଗୁଣିଗୁଣି ତାକୁ ରାତିରେ ନିଦ ହେଲାନି । ସୁନ୍ଦରା ଫାଟିଲା, କାଉ ରାବିଲାଣି । ସକାଳୁ ସକାଳୁ କୁଆଡ଼େ ଘେରାଟା ବୁଲି ଆସି, ହଡ଼ବଡ଼ରେ ଡାକ ଛାଡ଼ିଲା, "ଆହେ ପିଲାଙ୍କ ମା, ଶୁଣୁଚ । ଆଜି ତୁମ ଗାଁରୁ ପ୍ରଧାନ ଘରକୁ କୁଣିଆଁ ଆସିଛନ୍ତି । ସେ କହିଲେ, ପହରି ଦିନ କାଳେ ତମ ଗାଁ ପାଖରେ ଭାଗବତ ମେଳଣ ହଉଚି । ପିଲାଙ୍କୁ ବାଟେଇବାକୁ ତମ ଭାଇ ବାତିନି ଦେଇଚନ୍ତି ।"

ମା'ର ପିଲାଦିନ କଥା ମନେ ପଡ଼ିଗଲା । କେତେ ସଜବାଜ, ଆନନ୍ଦ ଉତ୍ସବ, ଦୋଳ ଯାତରା, ପାଟରା ଦୋକାନରୁ ଜାତି ଜାତିକା ଚୁଡ଼ି, ପଇଁଚ, ଅତର, ପାଟଫୁଲି, ଫୁଲପେଣ୍ଡି, ଅଳତା ସିନ୍ଦୁର ଦର୍ପଣ କିଣା । ସନେଇ ସାହୁ ଦୋକାନର ବରା, ଗୁଲୁଗୁଲା, ଡାଲବୁଟ । ନିଧି ସାହୁର କାକେରା, ଘି ପିଠା ସବୁ ତା ମନେ ପଡ଼ିଗଲା । ଆଖିରୁ ଲୁହ ଗଡ଼ି ପଡ଼ିଲା । କାନି ଓଦା ହେଲା । ପିଲାମାନେ ମାମୁ ଘରକୁ ଯିବା ପାଇଁ ଖାଲି ଥେଇ ଥେଇ ହେଲେଣି । ମା ମନ ତ ଡହଳ ବିକଳ ହେଉଚି । ବାପଘର କୋଠାଟିକେ ମାଡ଼ି ଆସନ୍ତା । ହେଲେ ବ୍ରାହ୍ମଣ ଛିଗୁଲେଇ କହୁଚି, "ଆ ହା ହା, ଭାଇମାନେ ତ ଆଠୁଆରି ଭାର ଧରି ଧାଇଁଛନ୍ତି ନା, ନ ଗଲେ ଚଳିବ କେମିତି ।" ମା ବିଚାରି କ'ଣ କରିବ ଆଉ । ମନକୁ ମନ କହିଲା, "ଛି କରିଦେ, ମନ ମାରିଦେ, ଚାଉଳ ଭଜା, ତୋ ମନକୁ ବୁଝା ।"

ସେଉଠୁ ସେ କ'ଣ କଲାନା ହଳଦି ମାଲପା ପଡ଼ିଶା ଘରୁ ମାଗିଆଣି ପିଲାଙ୍କ ମୁହଁରେ, ହାତରେ, ପାଦରେ ମାରିଦେଲା । ଭଲ କରି ଗାଧୁଆପାଧୁଆ କରି କଜ୍ଜଳ ସୁନ୍ଦର ଦେଲା । ପାଦରେ ପାଚିଲା ପୋଇରଙ୍ଗ ଅଳତା କଲା । ପେଡ଼ିରୁ ମୁଗେଇ ଖଣ୍ଡିଏ ଖଣ୍ଡିଏ ଆଣି କୁଞ୍ଚି କରି ପିନ୍ଧେଇ ଦେଲା । ମୁହଁରେ ଗୋଟିଏ ଗୋଟିଏ ବୋକ ଦେଇ ଛଳଛଳ ଆଖିରେ ବାପ ସଙ୍ଗରେ ପଠେଇ ଦେଲା । ପିଲାଏ ଯାଉଚନ୍ତି ମାମୁ ଘରକୁ, ଯାଉଚନ୍ତି ଯାତରା ଦେଖି । ଗୋଡ଼ ଖାଲି ପା' ହାତରେ ପଡୁଚି । ଚାଲିବା ବାଧା ଜଣା ପଡୁନି ।

କେତେ କେଜାଣି ବାଟ ଚାଲିଗଲେଣି ପିଲାଏ । ବେଳ ଆସି ମୁଣ୍ଡ ଉପରକୁ ହେଲା । ମାମୁ ଘରବାଟ କୋଉଠି ଯାଇ ରହିଲାଣି । ତାଙ୍କୁ ଜଣା ନାଇଁ ଯେ ସେମାନେ ଜଙ୍ଗଲଗୁଳା ଧରି ଚାଲିଛନ୍ତି । ପିଲାଏ ଥକି ପଡ଼ିଲେଣି । ଗୋଟିଏ ଆମ୍ବଗଛ ଛାଇରେ ବସିଲେ । ପିଲାଏ କହିଲେ, "ଆମକୁ ଭୋକ କଲାଣି ବାପା ।" ବାପା କହିଲା, "ଏଇଠି ବସିଥା କୁଆଡ଼ିକି ଯିବନି, ବାଘଭାଲୁ ଖାଲି ସାଲୁବାଲୁ ହଉଚନ୍ତି ଏ ବଣରେ ।" ସାଥିରେ ଆଣିଥିବା ଛୋଟ ସୁରେଇରୁ ପାଣି ମୁନ୍ଦିଏ ମୁନ୍ଦିଏ ପିଲାଙ୍କୁ ପିଆଇ ଦେଇ କହିଲା, "ମୁଁ ଯାଉଚି ତୁମ ପାଇଁ ଖାଇବା ନେଇକି ଆସେ । ଆଗକୁ ଟିକିଏ ଗଲେ ଏଠି ବଡ଼ିଆ ବଡ଼ିଆ ବଡ଼ ବଡ଼ ବରା ମିଳିବ । କି ଜିଲିପି କିରେ ପିଲେ, ଏଡୁଟାଏମାନ, ଗୋଟେ ଗୋଟେ ଥାଳିଆ ପରି । ରସ ଖାଲି ବୋହି ପଡୁଥିବ ।" ପିଲାଙ୍କ ପାଟିରୁ ଲାଳ ଗଡ଼ିପଡିଲାଣି । ପିଲାଏ ଜିଲିପି ବରା କହିକହି ଖୁସି ।

ଗୋରା ବ୍ରାହ୍ମଣ ପିଲାଙ୍କ ପାଇଁ ଖାଇବା ଆଣିବାକୁ ଚାଲିଗଲା । ଗଲା ଯେ ଗଲା । ପିଲା ଢେର୍ ବେଳ ଅପେକ୍ଷା କଲେଣି । ଭୋକରେ ପେଟରେ କରଡ଼ି ଜଳୁଛି, ଖାଲି ଆଉଟି ହେଇଯାଉଚି ପେଟ । ଏପଟେ ସୂର୍ଯ୍ୟ ଢଳିଗଲେଣି, ସଞ୍ଜ ଗଡ଼ିଗଲାଣି । ଭୋକ କୋଉକାଳୁ ମରି ସାରିଲାଣି । ଏବେ ପିଲାଏ ବାପା ବାପା ବୋଲି ରଡ଼ି କରୁଛନ୍ତି । ବଣରେ ସଞ୍ଜ ହଉହଉ ସତେ ଅବା ଗୋଟାଏ କଳା ଘୋଡ଼ଣୀ କିଏ ଢାଙ୍କି ପକାଏ । ପିଲାଏ ଡାକ ଛାଡ଼ି କାନ୍ଦିବା ବନ୍ଦ କରିସାରିଲେଣି କେତେବେଳୁ, ଇ'ଲେ ଖାଲି ଧକଉଛନ୍ତି । ଡରରେ ଛାତି ଥରୁଛି । ସାତଟି ଝିଅ ଦେହକୁ ଦେହ ଲାଗି ଖୁନ୍ଦିଖାନ୍ଦି ହୋଇ ବସିଛନ୍ତି, କୋଉଠି ଖସ୍‌ଖସ୍ ଶୁଭୁଛି, ସୁସୁ, ଖଡ୍‌ଖଡ୍ ଶୁଭିଯାଉଛି । ପିଲାଏ ଡରରେ ଥରିଲେଣି । ଏତେବେଳକୁ ବହୁତ ଦୂରରୁ କେତେ ଲୋକ ଆସିବାର ଗୋଳ ଶୁଭିଲା ।

ପିଲାମାନେ କ'ଣ କରିବେ କ'ଣ କରିବେ ଭାବିପାରୁ ନାହାଁନ୍ତି । ଯୋଉ ଗଛମୂଳରେ ବସିଚନ୍ତି ଏତେ ମୋଟା ନୁହଁ, ଚଢ଼ିହେବ, ଉପରେ ଗହଳିଆ ଡାଳପତ୍ର ଅଛି କେହି ଦେଖିପାରିବନି । ପିଲାମାନେ ବୁଦ୍ଧି କରି ଗୋଟିକ ପରେ ଗୋଟିଏ ଗଛ ଉପରକୁ ଚଢ଼ିଗଲେ । ଆଖିରୁ ପାଟ ପାଟ ହୋଇ ଲୁହ ବୋହିଯାଉଛି । ଗହଳି ପାଖକୁ ପାଖକୁ ଆସିଲା । ଦୂରରୁ ହାଲ୍ଲୋଳ ଦିଶୁଚି । ଆଲୁଅରେ ପିଲାଏ ଦେଖିଲେ ଘୋଡ଼ାରେ ଚଢ଼ି କି ସୁନ୍ଦର ରାଜାଟିଏ ଆସୁଛି । ତାଙ୍କ ପଛକୁ ଆହୁରି କେତୋଟି ଘୋଡ଼ାରେ ଆଉ କେତେ ଜଣ ବସିଚନ୍ତି । ଆଉ ପଛରେ ଚାରି ଜଣ ଲୋକ ଗୋଟିଏ ହରିଣ ଭାର କରି ବୋହି ଆଣୁଚନ୍ତି । ରାଜା ଠିକ୍ ଗଛତଳେ ହେଲା ବେଳକୁ ତାଙ୍କ ହାତରେ ପାଣିପରି ଦି ଟୋପା ପଡ଼ିଲା । ରାଜା ସେଇଠି ଅଟକି ଗଲେ । ତାଙ୍କ ସହିତ ଅନ୍ୟମାନେ । ରାଜା ଦେଖୁଣିଆକୁ ଡାକି ଦେଖାଇଲେ । ସେ କହିଲା, "ଆଜ୍ଞା ମଣିମା, ଇଏ ମଣିଷ ଲୁହ ।" ରାଜା ଚାଖୁଣିଆକୁ ଚଖାଇଲେ ।

ସେ ବି ଲୁହ କହିଲା । ସେଠୁ ଉପରକୁ ଚାହିଁଲେ... ଏତେ ରାତିରେ ଏ ନିଘଞ୍ଚ ଜଙ୍ଗଲରେ ପୁଣି ଗଛ ଉପରେ ମଣିଷ କୋଉଠୁ ଆସିବେ?

ଝାପ୍‌ସା ଆଲୁଅ ଛାଇରେ ପତ୍ର ଗହଳିରେ କ'ଣ କ'ଣ ସବୁ ଦେଖାଯାଉଛି । ସେଠୁ ରାଜା ଚଢ଼ାଳିଆକୁ ଗଛ ଉପରକୁ ଚଢ଼ାଇଲେ । ସେ ଉପରକୁ ଯାଇ ଦେଖି କହିଲା, "ହଜୁର, ଏ ଗଛ ଉପରେ ସାତଟି ଝିଅ ବସିଛନ୍ତି ।" ରାଜା କହିଲେ, "ତୋ ଲାଖି ହୋଇଥିଲେ ଚୁଟି ଧରି ଆଣ, ମୋ ସରିସା ହୋଇଥିଲେ ହାତ ଧରି ଉତାରି ଆଣେ ।" "ଆପଣଙ୍କ ଲାଖି, ଦୟା ଅବତାର", ଏମିତି କହି ଚଢ଼ାଳିଆ ହାତ ଧରି ଗୋଟି ଗୋଟି କରି ସାତ ଝିଅଙ୍କୁ ଓହ୍ଲାଇ ଆଣିଲା । ଅପୂର୍ବ ସୁନ୍ଦରୀ, କାଚ କୁଣ୍ଢେଇ ପରି ସାତଟି ଝିଅ ତଳକୁ ମୁହଁ କରି ଠିଆ ହୋଇଛନ୍ତି । ଦର୍ପଣ ବାଡ଼ ପରି ଝୁଲୁଛନ୍ତି ଖାଲି । ଆଖିରୁ ଲୁହ ବହି ଯାଉଛି । ସମସ୍ତେ ତାଙ୍କୁ ଆଶ୍ଚର୍ଯ୍ୟ ଚକିତ ହୋଇ ଚାହିଁ ରହିଲେ । ଏମାନେ କିଏ, ପରି ନା ଅପସରୀ, ତହୁଁବଳି ସୁନ୍ଦରୀ । ସାନଟି ସବୁଠୁଁ ବଳି । ରାଜା ପଚାରିଲେ, "ତୁମେମାନେ କିଏ? କେଉଁଠୁ ଆସିଲ?" ଝିଅମାନେ କହିଲେ, "ଆମେ ଗାଁରୁ ଆସିଲୁ ।" ରାଜା ପଚାରିଲେ, "କାହା ସାଙ୍ଗରେ କେତେବେଳୁ ଆସିଲ?" "ବାପାଙ୍କ ସାଙ୍ଗରେ । ବାପା ଜଳଖିଆ ଆଣିବାକୁ ଦିନ ବେଳୁ ଯାଇଚନ୍ତି । ବଡ଼ ବଡ଼ ବରା ଜିଲିପି ଆଣିବେ ।" କୁଆଡ଼େ ଯିବ ବୋଲି ରାଜା ପଚାରିଲେ । "ମାମୁ ଘରକୁ ଯାତରା ଦେଖିବାକୁ ଯିବୁ ।" ମାମୁ ଘର କେଉଁଠି? ପିଲା କହିଲେ, "ଆମେ ଜାଣିନୁ ।"

ରାଜା ସେମାନଙ୍କୁ ଦେଖି ମୁଗ୍ଧ । ଛୋଟ ରାଜାଟିଏ ଏବେ ଏବେ ଗାଦିରେ ବସିଥାନ୍ତି । ପଚାରିଲେ "ତୁମର କିଛି ଅଧିକ ଗୁଣ ଅଛି ଝିଅମାନେ?" ଜଣେ କହିଲା, "ମୁଁ ଯଦି ଗିନାଏ ମସଲା ବାଟିଦେବି ତା ହେଲେ ସେ ସେମିତି ବର୍ଷକ ଯାଏ କାମ ଦଉଥିବ ।" ଆଉ ଜଣେ କହିଲା, "ମୁଁ ଯଦି ତାଟିଆଏ ବେସର ବାଟିଦେବି ତେବେ ସେ ତ ବର୍ଷ ସାରା ରହିଥିବ ।" ଆଉ ଜଣେ କହିଲା, "ମୁଁ ଯଦି ହାଣ୍ଡିଏ ଭାତ ତୁଣ ରାନ୍ଧିବି ତାହେଲେ ବର୍ଷ ସାରା ରାଇଜ ଯାକର ଲୋକେ ଖାଇଲେ ସରିବନି ।" ଆଉ ଜଣେ କହିଲା, "ମୁଁ ଥରେ ଓଳେଇ ଦେଲେ ବର୍ଷ ସାରା ଆଉ ଓଳେଇବାକୁ ପଡ଼ିବନି ।" ସାନ ଝିଅଟି କାନ୍ଦି କାନ୍ଦି କହିଲା, "ମତେ ତ କିଛି ଆସେନି, ମୁଁ କିଛି କରିପାରିବିନି । ଖାଲି ଯାହାକୁ ବାହାହେବି ଯାଆଁଳା ପୁଅଝିଅ ଜନ୍ମ ଦେବି । ପୁଅର ହାତରେ ଚାନ୍ଦ ଥିବ, ଝିଅର ହାତରେ ତାରା ଥିବ ।"

ଏ କଥା ଶୁଣି ରାଜା ତୁନି ରହିଲେ । ସବାରି ମଗେଇ ଝିଅମାନଙ୍କୁ ସସମ୍ମାନ ରାଜ୍ୟକୁ ନେଲେ । ବଡ଼ ଛ ଜଣ ଝିଅକୁ ବଛା ବଛା ପାହିଆରେ ଥିବା ପାରିଷଦମାନଙ୍କୁ ବାହା ଦେଇ ଖିରୀ ଖିରୀ ସାଣପଣେ ରଖିଲେ । ସାନଟିକୁ ଆପେ ବାହା ହେଲେ ଆଉ ଭାରି ସୁଖ ପାଇଲେ । ଆଖିରୁ ଦଣ୍ଡେ ଆଡ଼ କରନ୍ତି ନାହିଁ । ଭଉଣୀମାନେ ନିତି ସାନ ଭଉଣୀ ପାଖକୁ ଆସନ୍ତି । ତା ଭାଗ୍ୟକୁ ଭାରି ପ୍ରଶଂସା କରନ୍ତି । କହି ଜାଣିଲେ କଥା ସୁନ୍ଦର, ବାନ୍ଧି ଜାଣିଲେ ମଥା ସୁନ୍ଦର । ସାନ ଭଉଣୀ ମଣିଥାଏ ଯେ, ତାକୁ ଭଉଣୀମାନେ ବହୁତ ଭଲ ପାଆନ୍ତି । ରାଜା ମଧ୍ୟ ସେମାନଙ୍କୁ ବିଶ୍ୱାସ କରନ୍ତି । ଏମିତି ଏମିତିରେ ରାଣୀ ଗରୁହର (ଗର୍ଭବତୀ) ହେଲେ । ସୁନ୍ଦରୀ ଝିଅଟି ଗର୍ଭବତୀ ହୋଇ ଆହୁରି ସୁନ୍ଦର ଦେଖାଗଲା । ରାଜାଙ୍କ ଆନନ୍ଦ କହିଲେ ନ ସରେ । ରାଜ୍ୟ ସାରା ଆନନ୍ଦ ଉତ୍ସବ ଲାଗିରହିଥାଏ । ରାଜାଙ୍କ ମଙ୍ଗଳ ଆଶାରେ ପିଲାକୁ କେତେ କଇଲାଣ କରୁଥାନ୍ତି ରାଜ୍ୟବାସୀଏ ।

ଏଣେ ଭଉଣୀମାନେ ଖାଲି ହିଂସାରେ ଜଳୁଥାନ୍ତି। ସମସ୍ତଙ୍କ ଆଗରେ ପିଲାକୁ କେତେ କ'ଣ କଇଲାଣ କରୁଥାନ୍ତି, ହେଲେ ମନେ ମନେ ଗାଳି କରନ୍ତି। 'ସଞ୍ଜେ ଫୁଟି ସକାଳେ ଯାଉ, ଜହ୍ନି ଫୁଲ ପରି ଆଇଷ ପାଉ'। ହେଲେ ଯାହାକୁ ମା ଗୌରୀ ସାହା କିଏ କ'ଣ କରିପାରିବ? ଚନ୍ଦ୍ରକଳା ପରି ପିଲାଏ ବଢୁଥାନ୍ତି। ରାଜବୈଦ୍ୟ କହି ସାରିଲେଣି ଯେ ପେଟରେ ଦୁଇଟି ପିଲା ଅଛନ୍ତି। ଜ୍ୟୋତିଷ କହିଛନ୍ତି, ପିଲାଙ୍କୁ ବାଳରିଷ୍ଟ ଅଛି, କିନ୍ତୁ କିଛି ଅନିଷ୍ଟ ହେବନାହିଁ। ରାଜାଙ୍କର ଝିଅଟି ଆସିଲାବେଳେ ଯାହା କହିଥିଲା ମନେ ପଡ଼ିଯାଉଛି। ଗୋଟିଏ ପୁଅ, ଗୋଟିଏ ଝିଅ ଜନ୍ମ କରିବି। ଜଣକ ହାତରେ ଚାନ୍ଦ ଏବଂ ଜଣକ ହାତରେ ତାରା ଥିବ। ରାଜା ସାନଝିଅକୁ ଦଣ୍ଡେ ମୁର୍ଚ୍ଛନ୍ତି ନାହିଁ। ଆଖିଏ ଆଖିଏ ରଖିଥାନ୍ତି। ଭଉଣୀମାନେ ମନ ସାଦ ଦେଲାବେଳେ ସେଦିନ ବିଷ ମିଶେଇ ଦେଇଥାନ୍ତି। ହେଲେ ତାର କିଛି ଅନିଷ୍ଟ ହେଲା ନାହିଁ। ସେତ ଗୌରୀ। ମାତାଙ୍କୁ ପୂଜା କରୁଚି। ଏମିତି ନଅମାସ ଚାଲିଗଲାଣି। ରାଜା ଖାଲି ଦିନ ଗଣୁଥାନ୍ତି।

ହଠାତ୍ ଗୋଟାଏ ଅଘଟଣ ଘଟିଲା। ରାଜାଙ୍କୁ ମାସକ ପାଇଁ ବାହାରକୁ ଯିବାକୁ ପଡ଼ିଲା। ନ ଗଲେ ନ ଚଳେ। ରାଜା ଅବା କ'ଣ କରିପାରିବେ। ଛାଡ଼ ପିତୃ କାର୍ଯ୍ୟ, କର ରାଜ୍ୟ କାର୍ଯ୍ୟ। ସାନଝିଅ କେତେ କାନ୍ଦିଲା ଛାଡ଼ବାଡ଼ ହେବେ ବୋଲି। ମାସଟିଏ ହଉ ପଛକେ, ଯେତେ ଅଳପ ଦିନ ହଉ ପଛକେ, ରାଜାଙ୍କ ଆଖିରେ ଲୁହ ରହୁନି। ରାଣୀକୁ କେତେ ବୁଝାବୁଝି କରି ବୋଧ କଲେ। ବିଦା ହେଲା ବେଳକୁ ବଇଁଶୀଟିଏ ଦେଲେ। କହିଲେ, "ଯେତେବେଳେ କଷ୍ଟ ଆରମ୍ଭ ହେବ ଏ ବଇଁଶୀଟି ବଜେଇଲେ ମୁଁ ଘଡ଼ିକ ଭିତରେ ଆସି ପହଞ୍ଚିଯିବି। ତୁମେ କିଛି ଚିନ୍ତା କରନି, ତୁମ ଭଉଣୀମାନେ ତୁମ ପାଖେ ପାଖେ ରହିବେ।" ରାଜା ତ ଚାଲିଗଲେ। ରାଣୀ ମନରେ ଯେତେ ଦୁଃଖ ଭଉଣୀମାନେ ତାକୁ ସାନ୍ତ୍ୱନା ଦେବେ କ'ଣ ଓଲଟି ଫଟ୍‌କେଇଲେ। କହିଲେ, "ଆଲୋ ହୁଣ୍ଡି, ରାଜା ତୋତେ ଆଦୌ ଭଲ ପାଆନ୍ତିନି। ସତରେ ଭଲ ପାଉଥିଲେ କ'ଣ ଏମିତି ବେଳେ କାହାକୁ କିଏ ଛାଡ଼ି ଯାଆନ୍ତି? ତୁ ତ ଓଲିଟା। କିଛି ବୁଝି ପାରୁନୁ।" ଝିଅଟି ତ ଭାରି ସରଳ କହିଲା, "ନାଇଁ ନାଇଁ, ରାଜ୍ୟର କଥା, ନ ଗଲେ ନ ଚଳେ। ମତେ ଏ ବଇଁଶୀଟି ଦେଇ ଯାଇଚନ୍ତି। କଷ୍ଟ ହେଲେ ଯୋଉଠି ଥିବେ ଉଠି ଚାଲିଆସିବେ।"

ଭଉଣୀମାନେ ହସିହସି ଗଡ଼ି ଗଲେ। କହିଲେ, "ଓଲି କାବାଡ଼ି, ଏମିତି ବଇଁଶୀ ବଜେଇଲେ ଯଦି ସମସ୍ତେ ଆସିଯାଉଥାନ୍ତେ ତା ହେଲେ ତ କଥା ନ ଥିଲା। ବଇଁଶୀ ବଜେଇଲୁ ଦେଖି କେମିତି ରାଜା ଆସିବେ।" ସାନ ଝିଅଟି ତ ଅତି ସରଳ ସେ ସେମାନଙ୍କ କଥାରେ ପଡ଼ି ବଇଁଶୀ ବଜେଇ ଦେଲା। ରାଜା ଗୋଟିଏ ଜରୁରୀ କାମରେ ବ୍ୟସ୍ତ ଥିଲେ। ସବୁ ଛାଡ଼ିଛୁଡ଼ି ଦେଇ ଆସି ପହଞ୍ଚିଗଲେ। ଆସି ଦେଖିଲେ ସବୁ ଠିକ୍‌ଠାକ୍ ଅଛି। ଖୁସିବାସିରେ ଅଛନ୍ତି। ଭାରି ରାଗିଗଲେ, ବିରକ୍ତ ହୋଇଗଲେ। ସେଥିରେ ଜୁଆଁଣ ଦେଲା ପରି ଭଉଣୀମାନେ କହିଲେ, "ସେ ରାଜ କାର୍ଯ୍ୟ କଥା କ'ଣ ଜାଣେ ଆଜ୍ଞା, ଖାଲି ସୁଆଗଗୁଡ଼ା ଏମିତି ବୋହି ପଡୁଥିଲା ଯେ, ବଇଁଶୀ ବଜେଇ ପକେଇଲା। କେତେ ଜରୁରୀ କାମ ଛାଡ଼ି କେତେ ହଇରାଣ ହରକତ ହେଇ ଆପଣ ନ ଆସିଲେଟି। ଏମିତି ମହାମୂର୍ଖ କୋଉଠି କିଏ ଅଛି।" ରାଜା ଆହୁରି ରାଗିଗଲେ।

ସାତ କଥାରେ ତ ସତୀ ଭୁଲେ। ରାଜା ରାଗିମାଗି ପଳେଇଲେ। ଯୋଗ ଦେଖ ଠିକ୍ ସେଇଦିନ ସଞ୍ଜ ବେଳୁ ବେଳୁ ସାନଝିଅର ଗର୍ଭକଷ୍ଟ ଆରମ୍ଭ ହୋଇଗଲା। ସେ ଯେତେ ବଇଁଶୀ

ଫୁଙ୍କିଲା ରାଜା ଜମାରୁ ଆସିଲେନି । ରାଜା କି ଜାଣନ୍ତି, ସମୟ ହୋଇଗଲା ପରେ ଯେ କୌଣସି ସମୟରେ ମଧ୍ଯ ପ୍ରସବ କଷ୍ଟ ଆରମ୍ଭ ହୋଇପାରେ । ସେ ଭାବିଲେ କିଛି ସମୟ ପୂର୍ବରୁ ରାଣୀ ଭଲ ଥିଲେ ହସୁଥିଲେ । ଭଉଣୀମାନଙ୍କ ସହିତ ଗମାତ୍ କରୁଥିଲେ । ହଠାତ୍ କ'ଣ ଏମିତି ହୋଇଗଲା? ସେ ବୋଧେ ମଜ୍ଜା କରିବା ପାଇଁ ବଇଁଶୀ ବଜେଇ ଦେଇଚି । ସାନଝିଅ ପ୍ରମାଦ ଗଣିଲାଣି । ଭଉଣୀମାନେ ତାକୁ ଏମିତି କାହିଁକି କଲେ । ନିଜେ ଜବରଦସ୍ତି ବଇଁଶୀ ଫୁଙ୍କେଇଲେ, ପୁଣି ରାଜା ଆସିବାରୁ ଚକୁଳି ପିଠା ପରି ଓଲଟି ପଡ଼ିଲେ । ତା ମନରେ ସନ୍ଦେହ ହେଲେ ବି ସେ କ'ଣ କରିବ ବା? ରାଜା ତ ଆସୁ ନାହାନ୍ତି । ମା ଗୌରୀଙ୍କ ପାଦ ତଳେ ମନ ରଖି ସେ ଅସହ୍ୟ ଯନ୍ତ୍ରଣା ସହୁଥାଏ । ଭଉଣୀମାନେ ତା ଚାରିପାଖରେ ଘେରି ଆସି ଟିଟିକାରି କରୁଥାନ୍ତି । ହଠାତ୍ ପୁଅଟିଏ ଜନ୍ମ ହେଲା ସାଥେ ସାଥେ ଝିଅଟିଏ । ସାରା ଘର ଆଲୁଅ ହୋଇଗଲା । ଗୋଟିଏ ହାତରେ ଚାନ୍ଦ, ଆରଟି ହାତରେ ତାରା । ଅତି କଷ୍ଟରେ ଜନ୍ମ ଦେଲା ସାଙ୍ଗେ ସାଙ୍ଗେ ସାନଝିଅ ଜ୍ଞାନ ହରେଇଲା ।

ଭଉଣୀମାନେ ସାନ ଭଉଣୀର ଶିରୀ ଦେଖିପାରୁ ନ ଥିଲେ । ଏଇନେ ତାର ସୌଭାଗ୍ୟ ଦେଖି ହିଂସାରେ ଜଳିଗଲେ । ହେଲେ ଏଡ଼େ ସୁନ୍ଦର ପିଲାଙ୍କୁ ନିଜେ ତଣ୍ଟି ଚିପି ମାରିବାକୁ ହାତ ଗଲାନି । ପୁଣି ପାପର ଭୟ । ପାପମାନଙ୍କ ମଧ୍ୟରେ ସବୁଠାରୁ ବଡ଼ପାପ, ସ୍ତୀରି ଗର୍ଭିଣୀ, ଶିଶୁବଧ । ହାତରେ ନ ମାରି ଭାତରେ ମାରିବା ଉପାୟ କଲେ । ତାଙ୍କର ବିଶ୍ୱାସୀ ପୋଇଲି ହାତରେ ଗୋଟିଏ କଞ୍ଚା ମାଟି ହାଣ୍ଡି ମଗାଇ ସେଥିରେ ପିଲାଯୋଡ଼ିଙ୍କୁ ପୂରାଇଲେ, ଉପରେ ଗୋଟିଏ କନା ବାନ୍ଧି ତାକୁ ନଦୀରେ ଭସାଇ ଦେଲେ । ତାଙ୍କ ଆଖି ଆଗରେ ମାଟି ହାଣ୍ଡିଟି ଭାସି ଭାସି ଆଖିର ଆଢୁଆଳକୁ ଚାଲିଗଲା । ସେମାନେ ମନେ ମନେ ଖୁସି ହେଲେ । ଏତେ ବେଳକୁ କଞ୍ଚାମାଟି ହାଣ୍ଡିଟି ମିଳାଇଯିବାକୁ ଆରମ୍ଭ କରିବଣି । ଆଉ କିଛି ସମୟ ପରେ ପିଲା ଦି'ଟା ଚିରଦିନ ପାଇଁ ସଲିଳ ସମାଧି ନେଇଯିବେ । ନଈ ପାଣି ନଈରେ ଗଲା, ପିତୃଲୋକ ସନ୍ତୋଷ । ପିଲା ମାରିବାର ପାପ ଲାଗିବନି । ଏଣେ ମନକାମନା ପୂରଣ ହୋଇଗଲା ।

ସେମାନେ ସାନଭଉଣୀ ପାଖକୁ ବାହୁଡ଼ି ଆସିଲେ । ସେତେବେଳ ଯାଏ ସାନଭଉଣୀର ଚେତା ଫେରିନଥାଏ । ତା ମୁହଁରେ ପାଣି ଛାଟିଛିଞ୍ଚି, ବିଞ୍ଚାବିଞ୍ଚି କରି ତାକୁ ଚେତା କଲେ, ଆଉ ବାହୁନା ପକେଇଲେ, "ଆରେ ଏ କ'ଣ ହେଲାରେ? ତୁ'ଟା ଏଡ଼େ ଅଲକ୍ଷଣୀ! ଦି'ଟା କାଠ କୁଣ୍ଢେଇ ଜନ୍ମ କରିଚୁ । ରାଜା ଆମକୁ କ'ଣ କହିବେଟି । ତମ ଭଉଣୀ ଦି'ଟା କାଠ କୁଣ୍ଢେଇ ଜନ୍ମ କରିଚି । ଏ ଲାଜ ଆମେ କୋଉଠି ନେଇ ରଖିବୁ?" ଏମିତି କହି ଧାଉଁଡ଼ିଆଙ୍କୁ ରାଜାଙ୍କ ପାଖକୁ ଦଉଡ଼େଇଦେଲେ ।

ରାଣୀ ଚେତା ପାଇ ଦେଖିଲା ଦି'ଟା କାଠ କୁଣ୍ଢେଇ ରକ୍ତ ସାଲୁବାଲୁ ହୋଇ ପଡିଛନ୍ତି । ସାନଝିଅଟି ତ ଭାରି ସରଳ । ସିଏ ଭାବିଲା ସତେ ଅବା କାଠ କୁଣ୍ଢେଇ ଦି'ଟା ଜନ୍ମ ଦେଇଚି । ତା ମନର ଦୁଃଖ ଗାଆଣି ଗାଇଲେ ସରିବନି । ସେତେବେଳକୁ ଗଡ଼ଲୋକେ ସବୁ ଜାଣିସାରିଲେଣି, ରାଣୀ କାଠ କୁଣ୍ଢେଇ ଦି'ଟା ଜନ୍ମ କରିଛନ୍ତି ।

ରାଜା କିଛି ଜାଣି ନାହାନ୍ତି । ତୁରନ୍ତ ସବୁ କାମ ଛାଡ଼ି ବାହାରି ଆସିଲେ । ପ୍ରଥମ ବାପ ହବାର ଯୋଉ ଖୁସି ତା କ'ଣ କଥାରେ କହିହେବ? ପିଲାମାନେ କେମିତି ହୋଇଥିବେ, କେତେ ସୁନ୍ଦର ହୋଇଥିବେ, କେମିତି ହାତରେ ଚାନ୍ଦ ତାରା ଥିବ ଏଇ କଥା ଭାବି ଭାବି ଉଲ୍ଲସିତ ହଉଥିଲେ ।

କେତେ ଉତ୍ସବ ହବ। ଆ ହବ, ତା ହବ କଳ୍ପନା କରି ଯେତେ ଚଞ୍ଚଳ ହବ ରାଜ୍ୟରେ ପହଞ୍ଚିଲେ। ତର ସହୁନଥାଏ। ଉଆସରେ ଆସି ଦେଖିଲେ କାହାରି ମନରେ ହରଷ ନାହିଁ। ଅନ୍ଦର ମହଲରୁ ବାହୁନା ଶୁଭୁଚି। ରାଜା ମନେ ମନେ ପ୍ରମାଦ ଗଣିଲେ। ରାଣୀଙ୍କ ଭଉଣୀମାନେ ରାଜାଙ୍କୁ ଦେଖି ଆହୁରି ବଡ଼ ପାଟିରେ ବୋବାଳି ଛାଡ଼ିଲେ, "କି ଅଭିଲା କଥାରେ ମା, ରାଣୀ ଦି'ଟା କାଠ କୁଣ୍ଢେଇ ଜନ୍ମ ଦେଇଚି। ଯାହା କେବେ କେହି ଦେଖିନାହିଁ କି ଶୁଣିନାହିଁ। ରାଜାଙ୍କୁ ବାହା ହବା ପାଇଁ କେତେ ପାଞ୍ଚ ପାଞ୍ଚିଥିଲା ଲୋ ଏ ମଉନମୁହିଁ।"

ରାଜା ତ ଗୋଜା, ନିଆଁରେ ଘିଅ ଢାଳିଲା ପରି ରାଗରେ ନିଆଁ ବାଣ ହୋଇଗଲେ। ରାଣୀକୁ ପଚାରିଲେ, "ତୁ ଏ କାଠ କୁଣ୍ଢେଇ କାହିଁକି ଜନ୍ମ କଲୁ? ତୁ ପରା କହୁଥିଲୁ ହାତରେ ଚନ୍ଦ୍ର ତାରା ଥିବା ପୁଅ ଝିଅ ଜନ୍ମ କରିବୁ? ମିଛ କହିଲୁ କାହିଁକି?" ରାଣୀ କହିଲା, "ମୁଁ କିଛି ମିଛ କହିନି ମଣିମା, ଯାହା ଶୁଣିଥିଲି ତା କହିଲି। ଆଉ କାଠ କୁଣ୍ଢେଇ ଜନ୍ମ କରିବା କଥା, ହୋଇଥିବ ମୋର ଦୋଷ। ଜନ୍ମ କରି ମୋର ଚେତା ବୁଡ଼ିଯାଇଥିଲା। ମୋ ଅପାମାନେ ମୋତେ ଚେତା କରାଇଲେ। ଏ କାଠ କୁଣ୍ଢେଇ ମୋର କାହିଁକି ହେଲା ମୁଁ ଜାଣିନି ତ?" ଭଉଣୀମାନେ କହିଲେ, "ତୁ ତ ଅଜଣା ଘରେ ଭାତ ଖାଉଛୁ। ଆଉ ଜାଣିବୁ କାହିଁକି? ରାଣୀ ହବାର ମଜା ପାଆ।"

ରାଜା ବହୁତ ରାଗିଗଲେ। ଝିଅମାନଙ୍କ ଉପରୁ ତାଙ୍କର ବିଶ୍ୱାସ ତୁଟିଗଲା। ନିଜ ସ୍ୱାର୍ଥ ପାଇଁ ନିଶ୍ଚୟ ଇଏ ମିଛ କହିଛି। ସାନ ଝିଅଟିକୁ କେତେ ବିଶ୍ୱାସ କରି ନ ଥିଲେ? କେତେ ଭଲ ପାଉ ନ ଥିଲେ। ଏ ସରଳ ମୁହଁ ତଳେ ଏମିତି ଗରଳ ଥିଲା ବୋଲି କିଏ ଜାଣିବ। ଏ କଥା ଯେମିତି ମନକୁ ଆସୁଥିଲା ସାନଝିଅଟି ଉପରେ ତାଙ୍କର ରାଗ ସେତିକି ବଢ଼ି ବଢ଼ି ଯାଉଥିଲା। ହୁକୁମ ଦେଲେ, "ଏ ଅଲକ୍ଷଣୀର ଚୁଟି କାଟି ଘୋଡ଼ାଶାଳର ଲଣ୍ଡି ପୋଛାଅ।" ରାଜାଙ୍କ ହୁକୁମ ପାଳନ କରାଗଲା। ତା'ର ଚାମର ପରି କୁଞ୍ଚୁକୁଞ୍ଚିଆ ସୁନ୍ଦର କଳାଘୁମର କେଶ କାଟି ଦିଆଗଲା। ଏଣିକି ସିଏ ଘୋଡ଼ାଶାଳ ଲାଣ୍ଡି ଭାବରେ ପରିଚିତ ହେଲା। ଦିନକୁ ମାଣେ ବଗଡ଼ା ଚାଉଳ ଆଉ ବିଡ଼ାଏ କଳମ ଶାଗ ପଡ଼ି ଖଞ୍ଜା ହେଲା। ବିଚରା ସାନଝିଅଟି ଘୋଡ଼ାଶାଳ ପାଖ ଏକଣା ଘରେ କର୍ମ ଆଦରି ପଡ଼ି ରହିଲା।

ରାଜାଙ୍କର ସେଇଦିନୁ ସବୁ ଝିଅଙ୍କ ଉପରୁ ବିଶ୍ୱାସ ତୁଟିଗଲା। ଯେତେ ଯାହା ଯିଏ ବୁଝାଇଲେ ମଧ୍ୟ ସେ ଆଉ ବିବାହ କଲେନି। ଥରଟିଏ ହେଲେ ଭାବିଲେନି ସାତ ଭଉଣୀଙ୍କ ଭିତରୁ ଛଅ ଭଉଣୀ ଯାହା କହିଥିଲେ ସବୁ ତ ଘଟିଲା। ଆଉ ସାନଝିଅଟିର କଥା କାହିଁକି ରହିଲାନି। ଏ କଥା ଭାବିବାକୁ ମଧ୍ୟ ସେ ବେଳ ଦେଲେନି। ରାଜକାର୍ଯ୍ୟରେ ସଦାସର୍ବଦା ନିଜକୁ ବୁଡ଼େଇ ରଖିଲେ। ଏମିତି ଏମିତି ଷୋଳ ବର୍ଷ କଟିଗଲା।

ଷୋଳ ବର୍ଷ ତଳର କଥା –

ସିଆଡ଼େ କ'ଣ ହେଇଚି ନା ମାଉସୀମାନେ ତ କଞ୍ଚା ମାଟିହାଣ୍ଡିରେ ପୂରେଇ ନଦୀରେ ଭସେଇ ଦେଲେ। ମନେ ମନେ ଭାରି କୋମଦ ଯେ ଅତି ଶୀଘ୍ର କଞ୍ଚାହାଣ୍ଡି ପାଣିରେ ମିଳେଇ ଯାଇଥିବ। ପିଲା ଦି'ଟା ପାଣିରେ ଉବୁଟୁବୁ ହୋଇ ମରିଥିବେ। କିନ୍ତୁ ମା ଗୌରୀଙ୍କ ମାୟା ତ ଭିନ୍ନ। ପିଲାଙ୍କ ହାତରେ ଚାନ୍ଦ ତାରା। ସେଇ ଜ୍ୟୋତିର ଉତ୍ତାପରେ ହାଣ୍ଡିଟି ମିଳେଇଯିବ କ'ଣ ଓଲଟି ପୋଡ଼ାହାଣ୍ଡି ପରି ଟାଣ ହୋଇଗଲା। ହାଣ୍ଡିଟି ଭାସିଭାସି ଯାଇ ଗୋଟାଏ ତଇଲା ପାଖରେ ଲାଗିଲା।

ଭୋକ ଲାଗିବାରୁ ପିଲା ଦି'ଟା ରାହା ଧରି କାନ୍ଦୁଛନ୍ତି। ଗୋଟିଏ ଗଉଡ଼ ସେଠି ଗାଈ ଚରଉଥିଲା। କାନ୍ଦଣା ଶୁଣି ହାଣ୍ଡି ଖୋଲି ଦେଖେ ତ ହାଣ୍ଡି ଭିତରେ ଆଲୁଅ ଦେଖାଯାଉଛି। ସେ ପିଲା ଦି'ଟିଙ୍କୁ ଆଣି କୋଳରେ ରଖିଲା। ଆମ୍ବ ଗଛରେ ମହୁ ଫେଣାଟିଏ ହୋଇଥାଏ, ଟୋପା ଟୋପା ମହୁ ଝରୁଥାଏ। ସେ ଗୋଟିଏ ପତ୍ର ଠୋଲିରେ ମହୁ ଆଣି ଚଟଉଥାଏ। ପିଲାଏ ଜିଭକୁ ଓଠରେ ଚାଟି ଚାଟି ତୁଉନି ହୋଇଗଲେ। ସେ ଆଉ ଗାଈ ଚରେଇବ କ'ଣ ପିଲା ଦି'ଟାଙ୍କୁ ଗାମୁଛାରେ ଗୁଡ଼େଇ ତୁଡ଼େଇ ଘରକୁ ଧାଇଁଲା।

ମୁହଁ ସଞ୍ଜ ହୋଇଗଲାଣି। ଯେଝା କାମରେ ଯିଏ ବ୍ୟସ୍ତ। ବେହେରାକୁ କେହି ଦେଖି ନ ଥାନ୍ତି। ଗାଁରେ ବେହେରାଣୀଟି ଏକଲା। ବେହେରା ତାକୁ ବହୁତ ଭଲ ପାଏ। ହେଲେ ବିଭାଘର ଆସି ଦଶବର୍ଷ ହେଲାଣି ତା କୋଳରେ ପିଲା ବକଟେ ଖେଳିଲାନି। ସାହି ପଡ଼ିଶାଏ ଟାହି ଟାପରା କରନ୍ତି – ଏ ବାଞ୍ଝଟାକୁ ଛାଡ଼ି ଦେଇ କୁଳ ରକ୍ଷା କରିବାକୁ ଆଉ ଗୋଟିଏ ବାହା ହଅ। ହେଲେ ବେହେରାର ମନ ମାନେନି। ବେହେରାଣୀ କାହାରି ଦୁଆରକୁ ଯାଏନି କି ତା ଦୁଆରକୁ କେହି ଆସନ୍ତିନି। ସେ ବେହେରାଣୀକୁ ଗୋଟେ ବୁଦ୍ଧି ବତେଇଲା। ସାତ ଆଠ ମାସର ଆଗର କଥା, ବେହେରାଣୀ ଅଇ ଅଇ କଲା। ଯେମିତି ବାନ୍ତି ହଉଚି, କ'ଣଟିଏ ହେବ। ବେହେରା କହେ ଯଦି ପିଲାଟିଏ ମିଳିବ ତାକୁ ନିଜ ପିଲା କହି ପାଳିବା। ନ ହେଲେ କହିବା ପିଲାଟା ଖସି ପଡ଼ିଲା। ଏମିତି କଥାକୁ ଭଗବାନ ତାକୁ ପରା ପୁଅ ଝିଅ ଦେଲେ।

ବେହେରାଣୀ ଚନ୍ଦ୍ରଉଦିଆ ପରି ପୁଅ ଝିଅ ଦେଖି ମୁଗ୍ଧ ହୋଇଗଲା। ସେ ମା ଗୌରୀଙ୍କୁ ମୁଣ୍ଡିଆ ମାରି କୋଳକୁ ନେଲା। କୃଷ୍ଣଙ୍କୁ ଦେଖି ଯଶୋଦା ମାତାଙ୍କର ସ୍ତନରୁ ଖିର ସ୍ରବିଲା ପରି ତା'ର ମଧ ସେଇପରି ଖିର ସ୍ରବିଲା। ସେ ଅଳତା ଢାଳି ଲୁଗାପଟା ଓଦା କରିଦେଲା। କନା ପଟା ଘର ସବୁ ଭିଜେଇ ଦେଲା। ପିଲାଙ୍କ ହାତରେ ମେଞ୍ଚାଏ ମେଞ୍ଚାଏ ହଳଦି ମାରି କନା ଗୁଡ଼ାଇ ଦେଲା। ପିଲା କାନ୍ଦ ଶୁଣି ସାଇ ପଡିଶାଏ କାନ୍ଥରେ ଉଙ୍କି ଝୁଙ୍କି ମାରିଲେ। ବେହେରା କବାଟ ଖୋଲି ଦେଲା। ପିଲାଙ୍କୁ ଦେଖି ସେମାନେ ତାଜୁବ୍ ହୋଇଗଲେ। କହିଲେ ଇଏ ତ ରଜା ପିଲା ପରି ହେଇଛନ୍ତି। ଏ ଗଉଡୁଣୀ ପେଟରୁ ଇଏ ଜାତ ହୋଇଛନ୍ତି ନ ଦେଖିଲେ କିଏ ସତ କରନ୍ତା?

ପିଲାମାନେ ଗଉଡ଼ ଘରେ ଚନ୍ଦ୍ରକଳା ପରି ବଢୁଥାନ୍ତି। ପୁଅଟି ବାପ ସଙ୍ଗେ ଗାଈ ଜଗେ। ଝିଅଟି ମା ସାଙ୍ଗରେ ଯାବତୀୟ କାମ ପାଇଟି କରେ। ତାଙ୍କ ହାତରେ ଚନ୍ଦ୍ର ତାରା ଆଜି ପର୍ଯ୍ୟନ୍ତ କେହି ଦେଖି ନ ଥାନ୍ତି। ସବୁବେଳେ କନା ଗୁଡ଼ା ହୋଇଥାଏ। କିଏ ପଚାରିଲେ ମା କହେ ଜନ୍ମରୁ ଆବୁ ଅଛି। ବଇଦ କହିଚି କାହାରି ଦୃଷ୍ଟି ଯେମିତି ନ ପଡ଼େ। ପଡ଼ିଲେ ପିଲାଙ୍କର ହାନି ହବ। ଏମିତି ଏମିତି ଷୋଳ ବର୍ଷ ବିତିଗଲାଣି। ପିଲାଙ୍କୁ ଦେଖିଲେ ବଇରି ହେଲେ ବି ଛ ଘଡ଼ି ଚାହିଁବ। ଏମିତି ସୁନ୍ଦର ନାହିଁ ନ ଥିବ।

ଦିନେ ଝିଅଟି ପାଣି ଆଣିବାକୁ ନଈକୁ ଯାଇଚି। ମଝି ନଈରେ ଗୋଟିଏ ସୌଦାଗର ବୋଇତରେ ରାଜ୍ୟକୁ ଫେରୁଚି। ବୋଇତରେ ରହି ଦୂରବୀକ୍ଷଣରେ ଚାରିଆଡ଼ ଚାହିଁଚାହିଁ ଦେଖୁଚି। ନଜରରେ ଏଇ ଝିଅଟି ଗରା ବୁଡ଼େଇବାର ଦେଖିଲା। ଏମିତି ସୁନ୍ଦରୀ ଝିଅ ସେ ତା'ର ଆଖି ଉଠିଲାଠୁ ଦେଖିନି। ବାଳ ଆସି ପାଚି ଝୋଟ ହେଲାଣି। ରାଜା ମନ ଦୁଃଖରେ ବିଭା ହଉ ନାହାନ୍ତି। ଏ ସୁନ୍ଦରୀ ଝିଅଟିକୁ ଦେଖି ତାଙ୍କ ମନ ତଟିବ କାଳେ, ସେ ଝିଅଟିକୁ ନେଇ ରାଜାଙ୍କୁ ଭେଟିଦେବ।

ଯେମିତି ମନ ସେମିତି କାମ। ସେ ବୋଇତ କୂଳକୁ ଆଣିବାକୁ ବୋଇତାଳମାନଙ୍କୁ ଇଶାରା ଦେଲା। ଦେଖୁଦେଖୁ ଝିଅଟିକୁ ଧରି ମାରିଲା ଛୁ। ଯେତେ ଚଞ୍ଚଳ ପାରେ ବୋଇତ ଚଳେଇବାକୁ କହିଲା। ଧୁରନ୍ଧର ମାଝୀ ବୋଇତ ଚଳେଇ ନିମିଷକରେ ଅଦୃଶ୍ୟ ହୋଇଗଲା।

ସଞ୍ଜ ଗଡ଼ିଗଲାଣି, ଝିଅ କାହିଁ ନଦୀରୁ ଫେରିନି ଖୋଜା ପଡ଼ିଲା। ସମସ୍ତେ ମିଳିମିଶି ଯେତେ ଖୋଜିଲେ। ଉପର ପାଣି ତଳ ପାଣି କଲେ। ଗରାଟି ସେଇଠି ପଡ଼ିଛି। ଝିଅଟିର ଠାବ କାହିଁ ମିଳିଲାନି। ତେଣେ କ'ଣ ହେଇଚି ନା ରାଜା ସେଇଦିନୁ ରାଜଧାନୀ ଛାଡ଼ିଛନ୍ତି। ଏ ପାଖରେ ଆସି ଫୁଲ ନଅରରେ ରହି ରାଜକାର୍ଯ୍ୟ ବୁଝାବୁଝି କରୁଥାନ୍ତି। ସୌଦାଗର ଝିଅଟିକୁ ଆଣି ରାଜାଙ୍କୁ ଭେଟିଦେଲା। କହିଲା, "ଏ ସାମାନ୍ୟ ଝିଅ ନୁହେଁ। ଆପଣ ଏଇ ଝିଅଟିକୁ ଗ୍ରହଣ କରନ୍ତୁ।" ରାଜା ତ କୋଉ ଝିଅକୁ ଚାହାନ୍ତି ନାହିଁ। ହଠାତ୍ ଅନ୍ୟମନସ୍କ ଭାବେ ଝିଅଟି ଉପରେ ଦୃଷ୍ଟି ପଡ଼ିଲା। ତାଙ୍କ ମନରେ କାହିଁକି ଯେ ଏତେ ମମତା ଆସିଯାଉଚି ସେ ଜମା ବୁଝି ପାରୁନାହାନ୍ତି। ସେ କେମିତି ଜାଣିବେ ଯେ ଏ ବୋଧହୁଏ ରକ୍ତର ଟାଣ।

ଝିଅଟି କିନ୍ତୁ ବାପା, ମାଆ, ଭାଇଟିକୁ ଛାଡ଼ି ଦେଇ ଆସି ଅଥୟ। ନଈଧାର ପରି ଲୁହ ଆଖିରୁ ବୋହିଯାଉଛି। ବିଭାଘର କଥା ଶୁଣି ଝିଅ କହିଲା, "ମୋ ମା କହିଚି ତିନି ପକ୍ଷଯାଏ ଗୌରୀ ମାଆଙ୍କ ପୂଜା ଉପାସ କରିବି। ସେତେଦିନ ଯାଏ କୋଉ ହେଲେ ପୁଅର ମୁହଁ ଦେଖିବିନି।" ଝିଅକୁ ସେ ନଅରରେ ରଖାଗଲା। ଦି ଜଣ ଲେଖାଏଁ ନୂଆ ରାଣୀକୁ ପହରା ଦେବେ। ଯୋଗକୁ ଦି'ଟି ଗାଈ ଜଗୁଆଳ ପିଲାଙ୍କ ପାଳି ପଡ଼ିଥାଏ। ଅଧରାତି ହେଲାଣି ଝିଅଟି ଆଖିକୁ ନିଦ ନାହିଁ। ବାପା, ମାଆ, ଭାଇ କଥା ମନେ ପଡ଼ି ମନଟି ଡହକ ବିକଳ ହଉଚି। ଏଣେ ରାଜାଙ୍କ ଆଖିକୁ ମଧ ନିଦ ନାହିଁ। ଏ ଝିଅଟିକୁ ଦେଖିଲାବେଳକୁ ମନ ଏମିତି ଗୋଳେଇ ଘାଣ୍ଟି ହେଇଯାଉଚି କାହିଁକି? ବାହାରେ ବୁଲିବୁଲି ପଦଚାରଣା କରୁଛନ୍ତି। ଚାଲଚାଲ ହୋଇ ଝିଅ ରହିଥିବା କୋଠରି ପାଖଯାଏ ଆସିଗଲେ।

ଜଗିବା ପିଲା ଦି'ଟା କଥାବାର୍ତ୍ତା ହେଉଛନ୍ତି, ରାଜା ଗୋଟିଏ ଖୁଣ୍ଟ ଆଢୁଆଳରେ ଠିଆ ହୋଇ ଶୁଣୁଛନ୍ତି। ଜଣେ କହୁଚି ଭାଇ ନିଦ ଲାଗିଯିବ କାଳେ ତୁ ଗୋଟିଏ କାହାଣୀ କହ। ଆରକ ଥାଇ କହୁଚି, "କି କଥା କହିବି, କି କାହାଣୀ କହିବି? ସତ କହିବି ନା ମିଛ କହିବି ନା ଯାହା ଅଙ୍ଗେ ନିଭେଇଚି ତାହା କହିବି?" ଆର ପିଲାଟି କହିଲା, "ନା, ଯାହା ଅଙ୍ଗେ ନିଭେଇଚୁ ତାହା କହ। ହେଲେ ତା ଆଗରୁ ତତେ ଗୋଟିଏ କଥା ପଚାରିବି ସତ କହିବୁ ତ?" ଇଏ କହିଲା, "ତୁ ତ ମୋର ଜୀବନ ଦିଆଦିଇ ସାଙ୍ଗ, ତତେ କହିବିନି କାହିଁକି?" "ତେବେ କହ, ମୁଁ ପିଲାଦିନୁ ଦେଖି ଆସିଚି ତୋ ହାତରେ କନା ଗୁଡ଼ା ହେଇଚି, ସେଠି କ'ଣ ହେଇଚି ସତ କହ? ତୋ ମା କହନ୍ତି ତାକୁ ଅନ୍ୟ କେହି ଦେଖିଲେ ତୋର ଅନିଷ୍ଟ ହବ।"

କନା ଗୁଡ଼େଇଥିବା ପିଲାଟି କହିଲା, "ଦେଖେ ତେବେ, ଦେଖେ, ଯାହା ତ ଅନିଷ୍ଟ ହେବାର କଥା ହେଇ ସାରିଲାଣି। ଆଉ ଅଧିକ କ'ଣ ହାନି ହବ? ଗୋଟିଏ ବୋଲି ଭଉଣୀ ତ ନଦୀରେ ବୁଡ଼ି ମରିଗଲା କି କୁଆଡ଼େ ଗଲା, ତା'ର ପତା ନାହିଁ। ତା ହାତରେ ତାରା ଥିଲା, ମୋ ହାତରେ ଚାନ୍ଦ। କେହି ଦେଖିଲେ ମୋର ଜୀବ ଛାଡ଼ିଯିବ ତ ଯାଉ। ଆଉ ବଞ୍ଚିବାରେ ଇଚ୍ଛା ନାହିଁ।" ଏହା କହି ହାତରୁ କନା ଖୋଲିଦେଲା। ଚାନ୍ଦ ଉପରେ ମେଞ୍ଚାଏ ହଳଦି ମଡ଼ା ହେଇଚି। ହଳଦି କାଢ଼ିଦେବାରୁ

ଚାରିପାଖ ଉଜ୍ଜ୍ୱଳ ହେଇଗଲା ।

ସେତେବେଳକୁ ଝିଅକୁ ତ ନିଦ ନ ଥିଲା, ସେ କଥା ଶୁଣୁଥିଲା । ଏଥର ତା'ର ବୁଝିବାକୁ ଆଉ ବାକି ରହିଲାନି ସେ କେଉଁଠି ଅଛି, କାହିଁକି ଆସିଛି । ଭାଇ ଭାଇ ଡାକି ସେ ଦୌଡ଼ି ଆସିଲା । ରାଜା ଖୁଣ୍ଟ ଆଢୁଆଳରୁ ବାହାରି ଆସି, ଭୋ ଭୋ କାନ୍ଦିକାନ୍ଦି ତୁ ତ ମୋରି ପୁଅରେ ମୋରି ପୁଅ କହି କହି ତାକୁ ଜାବୁଡ଼ି ଧରିଲେ । ଝିଅର ହାତରୁ କନା ଟାଣି ବାହାର କରିଦେଲେ । ତା ତଳୁ ହଳଦି ମେଞ୍ଚାକ । ତାରାଟି ସ୍ପଷ୍ଟ ହୋଇଗଲା, ଚାରିଆଡ଼ ଆହୁରି ତୋଫା ଦିଶିଲା । ରାଜା ଦୁଇଜଣଙ୍କୁ ଦୁଇ ହାତରେ ଧରି ଗେଲ କରିପକାଇଲେ । ତାଙ୍କର ଆଉ ବୁଝିବାକୁ କିଛି ବାକି ରହିଲାନି । ସାନଝିଅ କିଛି ମିଛ କହି ନ ଥିଲା । କିନ୍ତୁ ଏମାନେ ଏଠି କେମିତି? ଏହାର ରହସ୍ୟ କ'ଣ?

ସେଇ ରାତି ପାହାନ୍ତି ରାଜା ସବାରି, ପାଲିଙ୍କି ପଠାଇ ଆରପାରି ପିଲାଙ୍କ ବାପା ମା ବେହେରା ବେହେରାଣୀଙ୍କୁ ଡକାଇ ଆଣିଲେ । ଏତେ ରାତିରେ ରାଜାଙ୍କ ଡଗର ସାଥିରେ ସବାରି, ପାଲିଙ୍କି ଦେଖି ବେହେରା ବେହେରାଣୀ ଡରିଥରି ଯାଇଥିଲେ । ରାଜାଙ୍କ ହୁକୁମରେ ଦଣ୍ଡେ ଡେରି ନ କରି ବେହେରା ବେହେରାଣୀ ପରାରୁ ଉଠି ସବାରି ପାଲିଙ୍କିରେ ଫୁଲ ନଅରକୁ ଆସିଲେ । ରାଜା କହିଲେ, "ସତ କହ, ଏ ପିଲା କ'ଣ ତମର?" ବେହେରା ବେହେରାଣୀ ପାଣିରୁ ଛାଣି ଆଣିବାଠାରୁ ଆରମ୍ଭ କରି ଝିଅଟି କୁଆଡ଼େ ନଦୀରେ ବୁଡ଼ିଗଲାକି, କିଏ ଖାଇଗଲା କି, କିଏ ନେଇଗଲା ପର୍ଯ୍ୟନ୍ତ ସବୁ କଥା କହି ଭୋ ଭୋ ହୋଇ ଡକା ପାରି ଉଠିଲେ । ବାପା ମାଆଙ୍କ ପାଖରେ ପିଲା ଦି'ଟା ସବୁ କଥା ଶୁଣି ବିଶ୍ୱାସ କରିପାରୁ ନ ଥାନ୍ତି ।

ସକାଳ ପାହିଲା ବେଳକୁ ରାଜଧାନୀ ଆଡ଼କୁ ମୁହାଁଇଚି ବିରାଟ ଶୋଭାଯାତ୍ରା । ସବା ଆଗରେ ହାତୀ ଉପରେ ଛତୀ ଟାଣି ରାଜା ଆଉ ପୁଅ ବସିଛନ୍ତି । ପଛକୁପଛ ଧାଡ଼ି ଲାଗିଛି ପାଲିଙ୍କି ସବାରି । ସବାରିରେ ଝିଅ । ଆଉ ପଛକୁ ଲମ୍ବିଚି ଘୋଡ଼ା ସବାର, ବାଜାବାଲା, ବାଣ ରୋଷଣୀ । ରାଜଧାନୀରେ ଚହଳ ପଡ଼ିଗଲା । ରାଜା ଉଆସକୁ ବିଜେ କରୁଛନ୍ତି । ଭଉଣୀମାନେ ସଜବାଜ ହୋଇ ବନ୍ଦାଣ ଥାଳି ଧରି ଆସି ପହଁଚିଲା ବେଳକୁ ଯାହା ଦେଖିଲେ ସେଥିରେ ତାଙ୍କ ପାଦତଳୁ ମାଟି ଖସିଗଲା । ସେମାନେ ଦେଖିଲେ ସାନଭଉଣୀ ଦୁଇଟି ଶୋଭାକର ପୁଅ ଝିଅ ଦୁଇଟିଙ୍କୁ କୁଣ୍ଢେଇ ଧରି କାନ୍ଦୁଛି ଆଉ ହସୁଚି । ପୁଅଟି ହାତରେ ଚାନ୍ଦ ଝିଅଟି ହାତରେ ତାରା ଚକ୍‌ଚକ୍ କରୁଚି । ତାଙ୍କ ହାତରୁ ବନ୍ଦାଣ ଥାଳି ଆପେ ଆପେ ଝଣ ଝଣ ହୋଇ ଖସି ପଡ଼ିଲା । ସେମାନେ ପଛକୁ ବୁଲି ପଳେଇବେ ବୋଲି ଚାହିଁଲା ବେଳକୁ ଉଆସର ପୋଇଲୀମାନେ ସବୁ ହାତ ଛନ୍ଦାଛନ୍ଦି ହୋଇ ପାଚିରି ପରି ରହିଛନ୍ତି ।

କ'ଣ ହେଲା ନା ରାଜା ଉଆସରେ ପହଁଚି ଆଗ ଘୋଡ଼ାଶାଳ ଲାଣ୍ଡିକୁ ଡକାଇଲେ । ଷୋଳବର୍ଷ ପରେ ଏତେ କଷ୍ଟ ପାଇ ମଧ ସେ ଠାକୁରାଣୀ ପରି ଦେଖାଯାଉଛନ୍ତି । ରାଜା ତାଙ୍କ ହାତ ଦୁଇଟି ଧରି ପକାଇ ଆଣ୍ଠୁ ମାଡ଼ି ତଳେ ବସି ପଡ଼ି କହିଲେ, "ମତେ କ୍ଷମା କରିଦିଅ ରାଣୀ ।" ରାଣୀ ଆଶ୍ଚର୍ଯ୍ୟ ହୋଇ ତାଙ୍କ ପାଦତଳେ ପଡ଼ି ପ୍ରଣାମ କଲେ । ରାଜା କହିଲେ, ରାଣୀ ତମର ପୁଅଝିଅଙ୍କୁ ନିଅ । ମୋର ପାପର ପ୍ରାୟଶ୍ଚିତ୍ତ କରିବା ପାଇଁ ମୁଁ ଏଠାରୁ ଚାଲିଯିବି । ହେଲେ ଯିବା ପୂର୍ବରୁ ମୁଁ ଦୋଷୀଙ୍କୁ ଦଣ୍ଡ ଦେଇଯିବି । ଯୋଉ ହାଣ୍ଡିରେ ଭଉଣୀମାନେ ପିଲାଙ୍କୁ ପୁରାଇ ନଦୀରେ ଭସେଇ ଦେଇଥିଲେ,

ବେହେରା ବେହେରାଣୀ ସେଇ ହାଣ୍ଡିରୁ ପୁଅ ଝିଅଙ୍କୁ ପାଇଥିଲେ ବୋଲି ଠାକୁର କରି ପୂଜା କରୁଥିଲେ । ଆସିଲା ବେଳେ ତାକୁ ସାଥିରେ ଆଣିଥିଲେ ରାଜା । ତାକୁ ଦେଖି ଭଉଣୀମାନେ ଚମକି ଥିଲେ । କ୍ରମେ ସବୁକଥା ଜଣା ପଡ଼ିଗଲା । ରାଜା ତ ନିଆଁ ବାଣ । କହିଲେ ସ୍ତ୍ରୀ ଲୋକଗୁଡ଼ାଙ୍କୁ ଚୁଟି କାଟି ଗାଲକେ କଳା ଗାଲକେ ଚୂନ ଦେଇ ଗଧ ପିଠିରେ ଓଲଟା ବସାଇ, ବାଜା ବଜାଇ ସାରା ରାଇଜ ବୁଲାଇ ଆଣ । ତା ପରେ ଖଣି ଗାତ ଖୋଳି ତାଙ୍କୁ ଉପର କଣ୍ଟା ତଳ କଣ୍ଟା କରି ଜୀଅନ୍ତା ପୋତି ପକାଅ ।

ସାନଭଉଣୀ ଆସି ରାଜାଙ୍କ ଗୋଡ଼ତଳେ ପଡ଼ି ଭଉଣୀମାନଙ୍କ ପାଇଁ କ୍ଷମା ମାଗିଲା । "ଆପଣ କ୍ଷମା ଅବତାର ଦୟା ସାଗର । ମୋ ମୁହଁ ଚାହିଁ, ଆପଣଙ୍କ ପିଲାଙ୍କ ମୁହଁ ଚାହିଁ, ଏମାନଙ୍କୁ କ୍ଷମା କରିଦିଅନ୍ତୁ । ମୁଁ ସେମାନଙ୍କର ଦୁଃଖ ଦେଖିପାରିବିନି ।" ସେମାନେ ଦେଖିଲେ ସାନଭଉଣୀଟି ତାଙ୍କ ପାଇଁ ରାଜାଙ୍କ ପାଖରେ କେତେ ନେହୁରା ହେଉଛି । ରାଜା କ୍ଷମା କରିଦେଲେ । କିନ୍ତୁ ଭଉଣୀମାନେ ନିଜେ ନିଜକୁ କ୍ଷମା କରିପାରିଲେ ନାହିଁ । କାହା ପାଖରେ ଏ କଳଙ୍କିତ ମୁହଁ ଦେଖାଇବେ । ୟା ଭିତରେ ସବୁ ଖବର ନିଆ ହେଇ ଗୋରା ବ୍ରାହ୍ମଣ ବ୍ରାହ୍ମଣୀଙ୍କୁ ଆଣିବାକୁ ସବାରି ପାଲିଙ୍କି ଯାଇଚି । ସେମାନେ ଏଇନେ ଆସି ପହଁଚିଯିବେ । ନିଜ ଲାଜ ନିଜକୁ ନିଜକୁ ଖାଇଯାଉଚି ଭଉଣୀମାନଙ୍କୁ । ସେମାନେ ନିଜ ଜିଭ ଟାଣି ଗୋଟାକ ଉପରେ ଗୋଟିଏ ପଡ଼ି ମଲେ ।

ଗୋରା ବ୍ରାହ୍ମଣ ବ୍ରାହ୍ମଣୀ ଆସିଲେ । ରାଜା ସେମାନଙ୍କ ପାଇଁ ଏବଂ ବେହେରା ବେହେରାଣୀଙ୍କ ପାଇଁ ଅଲଗା ଉଆସମାନ ବ୍ୟବସ୍ଥା କରିଦେଲେ । ନିଷ୍କର ଜମି ଖଞ୍ଜି ଦେଲେ । ସେମାନେ ମନ ଇଚ୍ଛା ନିତି ଦିନ ଭଲମନ୍ଦ ପିଠାପଣା ଖାଇ ବଡ଼ ଆରାମ ଅୟସରେ ରହିଲେ । ସବୁ କାମ ଶେଷ କରି ରାଜା ଫୁଲ ନଅରକୁ ଯିବାକୁ ବାହାରିଲେ । ହେଲେ ରାଣୀ, ପୁଅ, ଝିଅ ମିଶି ସ୍ନେହ ଡୋରିରେ ଗୁଡ଼େଇ ତୁଡ଼େଇ ଏମିତି ବାନ୍ଧି ଦେଲେ ଯେ, ସେ ଆଉ ଠୁଳେ କୁଆଡ଼େ ଘୁଞ୍ଚି ପାରିଲେନି ।

ଝିଅ ପୁଅଙ୍କ ବାହାଘର
ବୋହୂ ଆସିଲେଣି ରାଜ ନଅର
ଝିଅଟି ଯିବ ଶାଶୂଘର ।
ଦିହ ହଳଦି ଗରଗର
କାନୀ ଉଡୁଚି ଫରଫର
କି କାନୀ, ପଣତ କାନୀ
କି ପଣତ, ଜରି ପଣତ
କି ଜରି, ସୁବର୍ଣ୍ଣ ଜରି
କି ସୁବର୍ଣ୍ଣ, ଝିଅ ମଙ୍ଗନ
ସଜ ମଙ୍ଗନ ସଜ ବାହା, ମା ଭଗବତୀ ହେବେ ସାହା ।

ରାଜା-ରାଣୀ, ପୁଅ-ବୋହୂ, ଝିଅ-ଜୋଇଁ, ନାତି-ନାତୁଣୀ ହେଁସରେ ହେଁସେ ଖେଳେଇ ରାଇଜ କଲେ ।



# ଏ କୁଲି ଇଟା ଲାଓ ଚୂନ ଲାଓ ପାନି ଲାଓ

"ଆ ଆ ଲୋ ବେଙ୍ଗୁଲୀ ଭାତ ଖାଇବୁ ।
ଭାତ ଦି ଗୁଣ୍ଡି ମୁଁ ଖାଇବି ନାଇଁ,
ମାଆଙ୍କ ବଚନ ସହିବି ନାଇଁ ।
ବିଧା ଯୋଡ଼ିଏ ମାରି ଦେଲେ,
କଦଳୀ ବାରିକୁ ଫୋପାଡ଼ି ଦେଲେ ।
କଦଳୀ ବାରିରେ କଣ୍ଟା ଥାଆନ୍ତା,
ଆଉକି ବେଙ୍ଗୁଲି ଜୀଇଁ ଥାଆନ୍ତା ?"
ବେଙ୍ଗୁଲୀ ଜୀଇଁବ ବେଙ୍ଗୁଲୀ ହସିବ ବେଙ୍ଗୁଲୀ ଶୁଣିବ କଥା,
ଶୂନ୍ୟରେ ମହଲ ଶୁଣିଲେ ବେଙ୍ଗୁଲୀ ପିଠିରୁ ଛାଡ଼ିବ ବଥା ।

ଅନେକ ଅନେକ ବର୍ଷ ପହିଲେ ଗୋଟିଏ ଅଜଣା ଅଶୁଣା ଅଦେଖା ଦ୍ୱୀପର ଗୋଟିଏ ରାଇଜରେ ଜଣେ ଭାରି ବିଚାରବନ୍ତ ରାଜା ଥାଆନ୍ତି । ତାଙ୍କର ମନ୍ତ୍ରୀ ତାଙ୍କଠାରୁ ଅଧିକ ପ୍ରବୀଣ । ସେଥିପାଇଁ ରାଜା ତାଙ୍କୁ ଭାରି ସୁଖ ପାଉଥିଲେ । ରାଜ୍ୟରେ ଯେ କୌଣସି ସମସ୍ୟା ଆସୁନା କାହିଁକି ରାଜା ମନ୍ତ୍ରୀ ଦୁହେଁ ବିଚାର ବିମର୍ଷ କରି ଅତି ସରଳ ଭାବରେ ତା'ର ସମାଧାନ କରିଦେଇ ପାରୁଥିଲେ । ରାଜା ତାଙ୍କୁ ତାଙ୍କର ଆପଣାର ପ୍ରିୟ ବନ୍ଧୁ ମନେ କରୁଥିଲେ । ସବୁବେଳେ ପାଖେ ପାଖେ ରଖୁଥିଲେ । ଯୁଆଡ଼େ ଯାଉଥିଲେ ସାଥିରେ ନେଉଥିଲେ । ଗଞ୍ଜପା, ପଶା ଖେଳ, ରାଜାଙ୍କର ବଡ଼ ବିଳାସ । ମନ୍ତ୍ରୀ ନ ହେଲେ ନ ଚଳେ । ତା ବୋଲି ସେ ଅନ୍ୟ ମନ୍ତ୍ରୀମାନଙ୍କୁ ମର୍ଯ୍ୟାଦା ଦେଉ ନ ଥିଲେ ନୁହେଁ । ସଭାସଦ୍‌ମାନଙ୍କୁ ଉଚିତ ପଦ ପଦବୀରେ ରଖି ସମ୍ମାନିତ କରୁଥିଲେ ।

କିନ୍ତୁ କ'ଣ କରାଯାଏ, ଘୁଷୁରି ପ୍ରକୃତି ତ ଭୂଇଁରେ ଲୋଟେ । ସେମାନେ ଏଇ ସୁମନ୍ୟୁ ମନ୍ତ୍ରୀଙ୍କୁ ଭାରି ହିଂସା କରୁଥିଲେ, ସେମାନେ ଭାବୁଥିଲେ ଯେ ରାଜା ତାଙ୍କୁ ଅଧିକ ବୁଦ୍ଧିମାନ ବୋଲି ଭାବୁଚନ୍ତି । ପାଖେ ପାଖେ ରଖି ତାଙ୍କର ଭାଉ ବେଶି ବଢ଼େଇ ଦେଉଚନ୍ତି । ସେଥିପାଇଁ ସେମାନେ ସୁମନ୍ୟୁଙ୍କ ନାଁରେ ଚୁଗୁଲି କରି ରାଜାଙ୍କ କାନରେ ଭରୁଥିଲେ । ତାଙ୍କୁ ଅପଦସ୍ତ କରିବାକୁ, ନ୍ୟୁନ କରିବାକୁ ଚାହୁଁଥିଲେ । ହେଲେ ରାଜା ଠିକ୍ ଜାଣୁଥିଲେ । କାଚ ତ କାଚ, ମଣି ତ ମଣି ।

ଦିନେ ଭରା ସଭାରେ ସେମାନେ ରାଜାଙ୍କ ପାଖରେ ଗୋଟିଏ ପ୍ରସ୍ତାବ ଆଗତ କଲେ ଯେ ସୁମନ୍ୟୁଙ୍କର ବୁଦ୍ଧିମତ୍ତାର ପରୀକ୍ଷା ନିଆଯାଉ । ରାଜା ସେଥିରେ ଖୁସିରେ ରାଜି ହେଇଗଲେ ।

କାରଣ ସୁମନ୍ୟୁଙ୍କ ଉପରେ ତାଙ୍କର ଗଭୀର ବିଶ୍ୱାସ ଓ ଭରସା ଥିଲା । ହେଲେ ସେମାନେ କିପରି ଭାବରେ ପରୀକ୍ଷା ନେବେ ରାଜା ସେଇ କଥା ଜାଣିବାକୁ ଚାହିଁଲେ । ମାତ୍ର ସେମାନେ କାଲି ଏଇ ରାଜସଭାରେ ତାଙ୍କର ଚୂଡ଼ାନ୍ତ ପରୀକ୍ଷାପ୍ରଣାଳୀ ଜଣାଇବେ ବୋଲି କହିଲେ । ରାଜା ନିରବ ରହିଲେ । ସଭା ସାଙ୍ଗହେଲା ।

ପରଦିନ ସକାଳେ ସୂର୍ଯ୍ୟ ଲାଲ କରି ପୂର୍ବ ଆକାଶ ରଙ୍ଗେଇ ଦେଇ ଉଇଁଆସିଲେ । ଏଇ ସକାଳ କାହା ମନରେ କେଉଁ ପ୍ରକାର ଭାବନା ସୃଷ୍ଟି କରୁଥିଲା, ହେଲେ ରାଜା ସୁମନ୍ୟୁଙ୍କ ପାଇଁ ଭାରି ଚିନ୍ତିତ ଥିଲେ, ଯଦିଓ ମନ୍ତ୍ରୀଙ୍କ ବୁଦ୍ଧି ଉପରେ ତାଙ୍କର ଢେର ଆସ୍ଥା ଥିଲା । କିନ୍ତୁ ମନ୍ତ୍ରୀଙ୍କୁ କିଛି ନ ଜଣାଇବାର ପ୍ରତିଶ୍ରୁତି ସେ ତାଙ୍କର ସଭାସଦ୍‌ମାନଙ୍କୁ ଦେଇଥିଲେ, ଯାହା ସଭାସଦ୍‌ମାନଙ୍କ ମନରେ ଅନେକ ଖୁସି ଭରି ଦେଇଥିଲା । ସେମାନେ ଆନନ୍ଦରେ କୁରୁଳୁଥିଲେ, କାରଣ ସେମାନେ ନିଶ୍ଚିନ୍ତ ରୂପେ ଜାଣିଥିଲେ ଯେ ଯୋଉ ପରୀକ୍ଷା ମନ୍ତ୍ରୀଙ୍କୁ ଦେବାକୁ ପଡ଼ିବ, ସେଥିରେ ସେ କେବେହେଲେ କୃତକାର୍ଯ୍ୟ ହେଇ ପାରିବେନି । ତେଣୁ ଏମାନଙ୍କର ଅନେକ ଦିନର ଇଚ୍ଛା ଆଜି ପୂରଣ ହେବାକୁ ଯାଉଚି । ଏଇ ପରୀକ୍ଷା ପାଇଁ ସର୍ତ୍ତ ରହିବ ଯେ ସୁମନ୍ୟୁ ଯଦି ପରୀକ୍ଷାରେ ଅସଫଳ ହୁଅନ୍ତି, ତେବେ ସେ ତାଙ୍କର ମନ୍ତ୍ରୀତ୍ୱ ହରାଇବେ । ମନ୍ତ୍ରୀ ତ କିଛି ଜାଣି ନ ଥିଲେ, ତେଣୁ ତାଙ୍କ ମନରେ କୌଣସି ଭାବାନ୍ତର ସୃଷ୍ଟି ହେଉ ନ ଥିଲା ।

କାହାଳୀ ବାଜି ଉଠିଲା, ଠିକ୍ ସମୟରେ ସଭାକାର୍ଯ୍ୟ ଆରମ୍ଭ ହେଲା । ସୁଧର୍ମା ସଭାରେ ଇନ୍ଦ୍ରଙ୍କ ପରି ରାଜା, ମନ୍ତ୍ରୀ ପାରିଷଦଙ୍କ ଗହଣରେ ସିଂହାସନରେ ଉପବେସନ କଲେ । ମୁଖମଣ୍ଡଳରେ ଗାମ୍ଭୀର୍ଯ୍ୟ ଶୋଭାପାଉଥାଏ । ସଭାସଦମାନଙ୍କ ମୁହଁରେ ଅନେକ ଆଲୋକ । ଅପେକ୍ଷାକୃତ ଭାବରେ ଦରବାରର ନିରବତା ଭଙ୍ଗକରି ରାଜା କହିବାକୁ ଆରମ୍ଭ କଲେ, "ଆଜି ଯେଉଁ କାହାଣୀର ଅବତାରଣା ମୁଁ କରିବାକୁ ଚାହୁଁଚି ଏହା କେବେ ମଧ୍ୟ ଦରବାରରେ ଆଲୋଚିତ ହୋଇନାହିଁ । ମନ୍ତ୍ରୀ ସୁମନ୍ୟୁଙ୍କର ବିଜ୍ଞତାର ପରିଚୟ ମୁଁ ଅନେକ ବାର ପାଇଥିଲେ ମଧ୍ୟ, ଆଜି ଏଇ ଭରା ଦରବାରରେ ତାଙ୍କୁ ତାଙ୍କ ବୁଦ୍ଧିମତ୍ତାର ପରୀକ୍ଷା ଦେବାକୁ ପଡ଼ିବ । କାରଣ ଏହା ହିଁ ଆମର ପାରିଷଦମାନଙ୍କର ଅତ୍ୟନ୍ତ ଆଗ୍ରହ । ସଭାସଦମାନେ ଏକସଙ୍ଗେ ଆନନ୍ଦ ଧ୍ୱନି ଲଗାଇଲେ, କରତାଳି ଦେଲେ । ରାଜା କହିଲେ ଆଉ ହଁ, ମନ୍ତ୍ରୀ ସୁମନ୍ୟୁ ଆପଣଙ୍କର ଯଦି କିଛି କହିବାର ଥାଏ ତା ହେଲେ ଆପଣ ବିନା ଦ୍ୱିଧାରେ ତାହା ପ୍ରକାଶ କରି ପାରନ୍ତି ।

ମନ୍ତ୍ରୀ କରଯୋଡ଼ି ନିବେଦନ କଲେ, ମହାରାଜ, ଆପଣଙ୍କର ଆଜ୍ଞା ଶିରୋଧାର୍ଯ୍ୟ । ମୁଁ କେବେ ବି କୋଉଠି ମଧ୍ୟ ନିଜକୁ ଅତ୍ୟନ୍ତ ବୁଦ୍ଧିମାନ ବୋଲି ପ୍ରକାଶ କରିନାହିଁ । ତଥାପି ମୋର ସମ୍ମାନନୀୟ ବନ୍ଧୁମାନେ ଯଦି ମୋର ପରୀକ୍ଷା ପାଇଁ ଆଗ୍ରହୀ ତେବେ ମୁଁ ପ୍ରସ୍ତୁତ । ମହାରାଜ ଆପଣଙ୍କର ଆଜ୍ଞା ପାଳନ କରିବା ପାଇଁ ମୁଁ କେବେହେଲେ କୁଣ୍ଠା ବୋଧ କରିବି ନାହିଁ କାରଣ ଆପଣଙ୍କ ଉପରେ ମୋର ଗଭୀର ଭରସା ଏବଂ ଭଗବାନଙ୍କ ଉପରେ ମୋର ଅତୁଟ ବିଶ୍ୱାସ ଅଛି । ସେ ନିଶ୍ଚିତ ଭାବରେ ମୋତେ ସମସ୍ତ ପ୍ରକାର ପରୀକ୍ଷାରେ ଉତ୍ତୀର୍ଣ୍ଣ କରାଇବେ । ଏବେ ଆପଣମାନେ ପରୀକ୍ଷା ନେବା ପାଇଁ ପ୍ରସ୍ତୁତ ହୁଅନ୍ତୁ, ସଭାସଦ୍‌ଙ୍କ ଆଡ଼କୁ ଚାହିଁ କହିଲେ ।

ସଭାସଦ୍‌ମାନଙ୍କ ମଧ୍ୟରୁ ଜଣେ ଉଠି ମହାରାଜଙ୍କ ଆଡ଼କୁ ଲକ୍ଷ କରି କହିଲେ, ମହାରାଜ,

ମହାନୁଭବ, କ୍ଷମା ଅବତାର, ଆମେମାନେ ଯଦି କିଛି ଅପରାଧ କରୁଥାଉ ତେବେ ଆପଣଙ୍କର କ୍ଷମା ଗୁଣରେ ଆମମାନଙ୍କୁ କ୍ଷମା କରି ଆମର ସଦ୍‌ଇଚ୍ଛା ପୂରଣ କରିବେ । ଆମେମାନେ ସମସ୍ତେ ଜାଣୁ ମନ୍ତ୍ରୀ ସୁମନ୍ୟୁ ଅତ୍ୟନ୍ତ ବୁଦ୍ଧିମାନ । ସେ ମହାମନ୍ତ୍ରୀ ପାଇଁ ଯୋଗ୍ୟ, ଏଥିପାଇଁ ଆମ୍ଭେମାନେ ଏ ପରୀକ୍ଷା ନେବା ପାଇଁ ଇଚ୍ଛୁକ । ଆମମାନଙ୍କର ଇଚ୍ଛା ଏହା ଯେ ମନ୍ତ୍ରୀ ମହୋଦୟ ଶୂନ୍ୟରେ ଗୋଟିଏ ମହଲ ନିର୍ମାଣ କରାଇ ତାଙ୍କର ଯୋଗ୍ୟତା ପ୍ରତିପାଦନ କରି ମହାମନ୍ତ୍ରୀ ପଦ ଗ୍ରହଣ କରନ୍ତୁ । ହଁ ଆମର ସର୍ତ୍ତ ଏଇଆ ଯେ ଯଦି ମାନ୍ୟବର ମନ୍ତ୍ରୀ ଏହି ପରୀକ୍ଷାରେ ଉତ୍ତୀର୍ଣ୍ଣ ନ ହୁଅନ୍ତି, ତା ହେଲେ ସେ ତାଙ୍କର ମନ୍ତ୍ରୀତ୍ୱ ହରାଇବେ । ମହାରାଜ, ଆପଣ ଯଦି ଆମର ଏଇ ଇଚ୍ଛା ପୂରଣ କରିବାରେ ବାଧକ ହୁଅନ୍ତି ତେବେ ଆମ୍ଭମାନଙ୍କର ଆଉ ବୁଝିବାରେ ଅସୁବିଧା ହେବନାହିଁ ଯେ ଆପଣ ମାନ୍ୟବର ମନ୍ତ୍ରୀଙ୍କ ପ୍ରତି ଅତ୍ୟନ୍ତ ସ୍ନେହପ୍ରବଣ ହୋଇ ପକ୍ଷପାତିତା କଲେ । ସୁମନ୍ୟୁ କ୍ଷଣକ ପାଇଁ ସ୍ତବ୍ଧ ହୋଇ ରହିଗଲେ । ଏହି ଶବ୍ଦ ସବୁ ତାଙ୍କ କର୍ଣ୍ଣ କୁହରରେ ବଜ୍ର ନିର୍ଘୋଷ ପରି ଶୁଣାଯାଉଥିଲା । କିନ୍ତୁ ଏହା ମାତ୍ର କ୍ଷଣିକ ପାଇଁ ।

ମହାରାଜଙ୍କର ସମ୍ମାନ ସେ କେବେହେଲେ କ୍ଷୁର୍ଣ୍ଣ ହେବାକୁ ଦେବେନାହିଁ । ସେଥିପାଇଁ ସେ ଅତ୍ୟନ୍ତ ଦୃଢ଼ତାର ସହିତ କହିଲେ, "ମହାରାଜ, ମୁଁ ମୋର ପ୍ରିୟ ବନ୍ଧୁମାନଙ୍କର ଇଚ୍ଛା ପୂରଣ କରିବା ପାଇଁ ସଦା ପ୍ରସ୍ତୁତ । ଯଦି ମୁଁ ଏଥିରେ ଅକୃତକାର୍ଯ୍ୟ ହୁଏ, ତେବେ ମୋର ମନ୍ତ୍ରୀ ପଦ ମୋ ପାଇଁ ଅତ୍ୟନ୍ତ ତୁଚ୍ଛ । ମୁଁ କାଲି ଏହି ରାଜସଭାରେ ମୋର ପ୍ରସ୍ତୁତି ପ୍ରକାଶ କରିବି । ରାଜା ନିରବ ରହିଲେ । ସେ ତାଙ୍କ ପାରିଷଦମାନଙ୍କର କୁତ୍ସିତ ଚକ୍ରାନ୍ତ ଅତି ଉତ୍ତମ ଭାବରେ ବୁଝି ପାରୁଥିଲେ । ରାଜା ତଥାପି ନିରବ ରହିଲେ । ସେ ଦିନ ପାଇଁ ସଭା ସ୍ଥଗିତ ରହିଲା । ଭାରି ଖୁସି ମନରେ ସଭାସଦମାନେ ମହା ଉତ୍ସାହର ସହିତ ଦିଗ୍‌ବିଜୟୀ ବୀର ପରି ନିଜ ନିଜ ଘରକୁ ଫେରିଲେ ।

ଘରକୁ ଫେରି ସୁମନ୍ୟୁ ଭାରି ବିମର୍ଷ ଭାବରେ ବସି ବସି ଭାବୁଥିଲେ । ତାଙ୍କୁ କିଛି ବୁଦ୍ଧି ବାଟ ଦେଖାଯାଉ ନ ଥିଲା । କିପରି ଭାବରେ ସେ ରାଜାଙ୍କର ସମ୍ମାନ ରକ୍ଷା କରିପାରିବେ । ତାଙ୍କ ଉପରେ ଥିବା ରାଜାଙ୍କର ସ୍ନେହର ମୂଲ୍ୟ ପରିଶୋଧ କରିପାରିବେ । ମନ୍ତ୍ରୀ ପଦ ତାଙ୍କ ପାଇଁ ନିହାତି ତୁଚ୍ଛ । ସେଥିପାଇଁ ସେ ଚିନ୍ତା କରୁ ନ ଥିଲେ । ଏହିସବୁ ଭାବି ଭାବି ମନ୍ତ୍ରୀ କେବଳ ଭଗବାନଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ ।

ପିତାଙ୍କର ଦୁଃଖିତ ଭାବ ତାଙ୍କର ବୁଦ୍ଧିମତୀ ରୂପବତୀ ଅଲିଅଳି ଝିଅଟି ପାଖରେ ଅଛପା ରହିଲା ନାହିଁ । ସେ ଏହାର କାରଣ ପଚାରିବାରୁ ମନ୍ତ୍ରୀ ଆଦ୍ୟରୁ ପ୍ରାନ୍ତ ସମସ୍ତ ଘଟଣା ଝିଅ ପାଖରେ ପ୍ରକାଶ କଲେ । ସବୁ ଶୁଣି ଝିଅଟି ଅଳ୍ପ ହସି କହିଲା, "ଏଇ ସାମାନ୍ୟ କଥାପାଇଁ ଏତେ ଚିନ୍ତା ?" ତା ପରେ ବାପାଙ୍କ କାନେ କାନେ ଝିଅଟି କଅଣ କହିଲା କେଜାଣି, ମନ୍ତ୍ରୀଙ୍କ ମିଜାଜ ପୂରାପୂରି ଖୁସ୍ ହେଇଗଲା । ଅତି ଆନନ୍ଦରେ ମନ୍ତ୍ରୀ ଖିଆଣି ପିଆଣି କରି ଆରାମ କଲେ, ସୁଖ ନିଦ୍ରା ଗଲେ ।

ତହିଁ ଆରଦିନ ମନ୍ତ୍ରୀ ସଜବାଜ ହୋଇ ବଡ଼ ଥାଟବାଟରେ ଦରବାରରେ ପହଞ୍ଚିଲେ ଟିକିଏ ଉଛୁରରେ । ସେତେବେଳକୁ ରାଜା ଦରବାରକୁ ବିଜେ କରିସାରିଥିଲେ । ମନ୍ତ୍ରୀ ରାଜା ଏବଂ ରାଜସଭାକୁ ଅଭିବାଦନ କଲେ । ରାଜାଙ୍କ ମୁହଁଟି ଶୁଖି ଯାଇଥିଲା, ସଭାରେ ଚାପା ଗୁଞ୍ଜନ । ମନ୍ତ୍ରୀଙ୍କ ବିଳମ୍ବ ଦେଖି ସେମାନେ ଭାବୁଥିଲେ ଯେ ମନ୍ତ୍ରୀପଦ ଯିବା ଭୟରେ ସୁମନ୍ୟୁ ବୋଧହୁଏ ଆଜି ଆଉ ଆସିବେ ନାହିଁ, କିଛି ବାହାନା କରି ହୁଏତ ସେ ମାଉସୀ ଘର ଅବା ପିଇସୀ ଘରକୁ

ଚାଲି ଯାଇଥିବେ । ମନ୍ତ୍ରୀଙ୍କ ପ୍ରସନ୍ନ ମୁହଁକୁ ଦେଖି ରାଜାଙ୍କ ମୁହଁ ଉଜ୍ଜ୍ୱଳ ଦେଖାଗଲା । ସେ ଭଲ କରି ବୁଝିସାରିଥିଲେ ଯେ ମନ୍ତ୍ରୀ ନିଶ୍ଚୟ କୌଣସି ସିଦ୍ଧାନ୍ତରେ ପହଞ୍ଚି ସାରିଛନ୍ତି । ସଭାସଦ୍‌ମାନେ ନିରବ ଭାବରେ ନିଜ ଆସନରେ ବସିରହିଥାନ୍ତି ।

ମନ୍ତ୍ରୀ ଆଉ ଥରେ ରାଜାଙ୍କୁ ଏବଂ ଦରବାରକୁ ଅଭିବାଦନ କରି ଜଣାଇଲେ ଯେ ସେ ଉପରେ ମହଲ ତୋଳାଇବା ପାଇଁ ମିସ୍ତ୍ରୀ ଓ କାରିଗରମାନଙ୍କ ସହିତ ଯୋଗାଯୋଗ କରି ସାରିଛନ୍ତି । ଯେହେତୁ ସେମାନେ ଦୂରରେ ଅଛନ୍ତି, ଏଠିକୁ ଆସିବା ପାଇଁ ସେମାନଙ୍କୁ ଦୁଇମାସରୁ ତିନିମାସ ପର୍ଯ୍ୟନ୍ତ ସମୟ ଲାଗିଯାଇପାରେ । କାରଣ ସେଠାରେ ସେମାନଙ୍କର ହାତରେ ଏଇନେ ବହୁତ କାମ, ତାକୁ ଏ ମଧ୍ୟରେ ସେମାନେ ସାରିବାକୁ ଚେଷ୍ଟା କରିବେ । ପୂରା ମହଲଟି ନିର୍ମାଣ କରିବା ପାଇଁ ମୋର ବନ୍ଧୁ ହିସାବରେ ଏବଂ ମହାରାଜଙ୍କୁ ସମ୍ମାନ କରି ସେମାନେ ଯଥେଷ୍ଟ ରିଆତି କରିଚନ୍ତି । ମାତ୍ର ଯଦି କୁଲିମାନଙ୍କୁ ସେଠାରୁ ଅଣାଯାଏ, ତା ହେଲେ ପ୍ରାୟ ଦଶକୋଟି ଟଙ୍କା ଲାଗିଯିବ । ରାଜକୋଷରୁ ଏତେ ଗୁଡ଼ାଏ ଟଙ୍କା ଅଯଥାରେ ଖର୍ଚ୍ଚ କରିବାକୁ ମୁଁ ଚାହିଁଲି ନାହିଁ, କାରଣ କମ ଖର୍ଚ୍ଚରେ ଆମେମାନେ ଏଇଠୁ କୁଲି ଯୋଗାଡ଼ କରିପାରିବା ।

"ନାଁ କ'ଣ କହୁଛନ୍ତି ଆପଣମାନେ?", ମନ୍ତ୍ରୀ ପ୍ରଶ୍ନ କଲେ । ସମସ୍ତେ ହଁରେ ହଁ ଭରିଲେ । ମନ୍ତ୍ରୀ ପୁଣି ବୁଝାଇଲେ ଯେ ମହଲ ପାଇଁ ଆବଶ୍ୟକୀୟ ଇଟା ଚୂନ ପାଣି ଇତ୍ୟାଦି ନିର୍ଦ୍ଦିଷ୍ଟ ଜାଗାରେ ସଂଗ୍ରହ କରି ଆଗୁଆ ରଖିବାକୁ ପଡ଼ିବ । ତା ବ୍ୟତୀତ ମହଲରେ ଖଞ୍ଜା ହେବାପାଇଁ ହୀରାନୀଳା, ମୋତି ମାଣିକ୍ୟ ଆଦି ଅଷ୍ଟରତ୍ନର ଝରାଫୁମ୍ପା ସଜାଡ଼ି ସୁମାରି ରଖିବାକୁ ପଡ଼ିବ । କାରଣ ସମୟ ଅତି କମ୍ । ସେମାନେ ମାଗିବାର ଦଶ ମିନିଟ ଭିତରେ ପ୍ରଥମ ଥର ତାଙ୍କୁ ଯୋଗାଇ ଦେବାକୁ ହେବ । ଡେରି ହେଲେ ସେମାନେ ଚାଲିଯିବେ । କେବଳ ପ୍ରଥମ ଥରକ ପାଇଁ ଏଇ ସର୍ତ୍ତ ଲାଗୁହେବ । ପରେ ଯୋଗାଇବାରେ ଡେରି ହେଲେ କିଛି କ୍ଷତି ନାହିଁ । ଉପରେ ମହଲ ତିଆରି କରିବାକୁ ହେଲେ, ସାଧାରଣ ମିସ୍ତ୍ରୀମାନେ ତ କରିପାରିବେ ନାହିଁ । ତେଣୁ ଏମାନେ ଗନ୍ଧର୍ବ ଲୋକରୁ ଆସୁଛନ୍ତି, ସେଇଥିପାଇଁ ଏ ସର୍ତ୍ତ । ଏଇ ସବୁ ସର୍ତ୍ତରେ ଯଦି ଆପଣମାନେ ରାଜି ତା ହେଲେ କୁହନ୍ତୁ, ମୁଁ ସେମାନଙ୍କୁ ଜଣାଇଦେବି ।

ମହାରାଜ ତାଙ୍କ ସଭାସଦ୍‌ମାନଙ୍କ ଆଡ଼କୁ ପ୍ରଶ୍ନିଳ ଆଖିରେ ଚାହିଁଲେ । ପରସ୍ପର ଭିତରେ ଆଲୋଚନା କରି ସେମାନେ କହିଲେ, "ଇଏ ଆଉ କି କଷ୍ଟକର କଥା ଯେ? ଆମେ କୁଲିମାନଙ୍କୁ ଏବଂ ସମସ୍ତ ସାମଗ୍ରୀ ସହଜରେ ସଂଗ୍ରହ କରି ପାରିବା ଆଉ ଯୋଗାଇଦେଇ ପାରିବା । ତା' ଠିକ୍ ସମୟ ମଧ୍ୟରେ ପ୍ରଥମ ଥର ପାଇଁ ମାଲ ଯୋଗାଇ ହାତେଇବାକୁ ପଡ଼ିବ । ଇଏ ତ ଆମର ବାଆଁ ହାତର ଖେଳ ।"

ମନ୍ତ୍ରୀ କହିଲେ, "ଏଇ ଦୁଇମାସ ପାଇଁ ରାଜଦର୍ଶନରୁ ବଞ୍ଚିତ ହେବି, ଏଥିପାଇଁ ମୋର ବହୁତ ମନସ୍ତାପ । ଏହା ମୋର ଦୁର୍ଭାଗ୍ୟ, କିନ୍ତୁ କ'ଣ ଆଉ କରିବି, ଆପଣମାନଙ୍କ ପରୀକ୍ଷାପାଇଁ ମୋତେ ଏଇ ଘୋର ମନଦୁଃଖ ସହିବାକୁ ପଡ଼ିବ । ହଁ ଏଇ ସବୁ ମହଲ ତିଆରି ସାମଗ୍ରୀ ସଂଗ୍ରହର ଦାୟିତ୍ୱ ଆପଣମାନେ ଅନାୟାସରେ ତୁଲେଇ ପାରିବେ ବୋଲି ମୋର ବିଶ୍ୱାସ ।" ସଭାସଦ୍‌ମାନେ ଆଗ୍ରହରେ ହଁ ଭରିଲେ । କାରଣ ଏଇ ସାମାନ୍ୟ କାମସବୁ ଠିକଣା ଭାବରେ କରି ନ ପାରିଲେ

ସେମାନେ ରାଜାଙ୍କ ନିକଟରେ ନିନ୍ଦିତ ହେବେ ନାହିଁକି? ମାତ୍ର ମନ୍ତ୍ରୀ ଏଇ ଅବିଶ୍ୱାସ୍ୟ ପ୍ରସ୍ତାବକୁ କିପରି ଭାବରେ ପୂରଣ କରିପାରିବେ ରାଜା କିଛି ବୁଝିପାରୁ ନ ଥିଲେ। ତାଙ୍କ କପାଳର ବଳିରେଖା ସବୁ ସ୍ପଷ୍ଟ ଭାବରେ ବାରି ହୋଇ ଯାଉଥିଲା।

ନିର୍ଦ୍ଦିଷ୍ଟ ସମୟରେ ନିର୍ଦ୍ଦିଷ୍ଟ ସ୍ଥାନରେ ମହଲ ପାଇଁ ଆବଶ୍ୟକୀୟ ସମସ୍ତ ସାମଗ୍ରୀ ସହିତ ସୁନା ରୁପାରେ, ଅଷ୍ଟ ରତ୍ନରେ ଝାଲେରୀ ଝୁମ୍ପା, ଫୁଲ ପତ୍ର ଫଳ ଲତା ଡାଳ, ଶୁଆ ଶାରୀ ମୟୂର ଇତ୍ୟାଦି ବଡ଼ ସୁନ୍ଦର ଆଉ ସୁଚାରୁରୂପେ ନିର୍ମିତ ହୋଇ ନିର୍ଦ୍ଦିଷ୍ଟ ଡାଲାମାନଙ୍କରେ ସଜଡ଼ା ହେଇ ରଖା ଯାଇଥିଲା। ମହାରାଜ ଆଉ ସଭାସଦ୍‌ମାନେ ବହୁ ମୂଲ୍ୟ ଆସନ ଅଳଂକୃତ କରିଥିଲେ। ରାଣୀହଂସପୁରରୁ ରାଣୀଙ୍କ ସହିତ ଅନ୍ୟ ମହିଳାମାନେ ଘେରାବାଡ଼ ଭିତରେ ଆସନ ଗ୍ରହଣ କରିଥିଲେ। ରାଜ୍ୟର ବହୁ ନାଗରିକ ମହଲ ଦେଖିବା ଆଶାରେ ରୁଣ୍ଡ ହୋଇଥିଲେ। ପଚାଶ ଜଣ କୁଲି ଉପରକୁ ମାଲ ଯୋଗାଇବା ପାଇଁ ବାଲି ଗୋଡ଼ି ସିମେଣ୍ଟ ପାଣି ପାଖରେ ସଜହେଇ ପ୍ରସ୍ତୁତ ଅଛନ୍ତି। ଏଇ ସମୟରେ ମନ୍ତ୍ରୀ ଆସି ଦରଦର ହସି ରାଜାଙ୍କୁ ଏବଂ ଅନ୍ୟମାନଙ୍କୁ ଅଭିବାଦନ କଲେ।

ହଠାତ୍ ସମସ୍ତ କୋଳାହଳ ଚୁପ୍ ହୋଇଗଲା। ସେତେବେଳେ ସଞ୍ଜ ଗଡ଼ି ରାତି ପ୍ରହରେ ହୋଇ ସାରିଥିଲା। ମନ୍ତ୍ରୀ କହିଲେ, ମିସ୍ତ୍ରୀମାନେ ଆସି ସାରିଲେଣି, ଆଉ ପାଞ୍ଚମିନିଟ ଭିତରେ ସେମାନେ ଜିନିଷ ମଗାଇବେ। କୁଲିମାନେ ଅଣ୍ଟାରେ ମୁଣ୍ଡରେ ଗାମୁଛା ଭିଡ଼ି କଡ଼େଇରେ ମସଲା ଭରି ଠିଆ ହେଇଗଲେ। ଏଇ ସମୟ ହିଁ ଆଗରୁ ନିର୍ଧାର୍ଯ୍ୟ ହୋଇଥିଲା।

ଠିକ୍ ସମୟରେ ଉପରୁ ଡାକ ଶୁଭିଲା। ଏ କୁଲି... ଇଟା ଲାଓ... ଚୂନ ଲାଓ... ପାନି ଲାଓ। ଇଟା ଲାଓ... ଚୂନ ଲାଓ... ପାନି ଲାଓ...। ରାଜାଙ୍କ ସମେତ ସମସ୍ତେ ଉପରକୁ ଚାହିଁ ରହିଥିଲେ। ମାତ୍ର କେହିହେଲେ ମିସ୍ତ୍ରୀମାନଙ୍କୁ ଦେଖିପାରୁ ନ ଥିଲେ। କିପରି ଭାବରେ ଜିନିଷସବୁ ଉପରକୁ ଉଠା ଯିବ, କେହି ଚିନ୍ତା କରିପାରୁ ନ ଥିଲେ। ଉପରୁ ବାରମ୍ବାର ଡାକ ଶୁଭୁଥିଲା, ଇଟା ଲାଓ... ଚୂନ ଲାଓ... ପାନି ଲାଓ...। ମିନିଟିଏ ମିନିଟିଏ ହୋଇ ଦଶ ମିନିଟ ଚାଲିଗଲା। ଏଗାର ମିନିଟ ବେଳକୁ ଉପରୁ ଡାକ ବନ୍ଦ ହୋଇଗଲା। ସବୁ ଆଡ଼ ନିଃଶବ୍ଦ ହୋଇଗଲା। ସମସ୍ତେ ପ୍ରାୟ ନିଶ୍ୱାସ ରୁଦ୍ଧ କରି ବସି ରହିଥିଲେ। ସଭାସଦ୍‌ମାନଙ୍କ ମୁହଁରେ ସତେ ଅବା ଅମାବାସ୍ୟା ରାତ୍ରିର ଘନ କାଳିମା ଲେସି ହୋଇଯାଇଥିଲା। କାହାର କିଛି କହିବାର ନ ଥିଲା। କାରଣ ମିସ୍ତ୍ରୀମାନଙ୍କୁ ଯୋଗାଇବାର ଦାୟିତ୍ୱ ଏଇମାନଙ୍କର ହିଁ ଥିଲା। ରାଜା ସମସ୍ତ ନିରବତା ଭଙ୍ଗ କରି ଉଠି ଠିଆ ହେଲେ ଏବଂ କହିଲେ ମନ୍ତ୍ରୀ ସୁମନ୍ୟୁଙ୍କର ଯୋଗ୍ୟତା ପାଇଁ ମୁଁ ତାଙ୍କୁ ଧନ୍ୟବାଦ ନ ଜଣାଇ ରହିପାରୁ ନାହିଁ। ଏହାକହି ରାଜା ହଠାତ୍ ପ୍ରସ୍ଥାନ କଲେ।

ଜନ ଗହଳି ଧୀରେ ଧୀରେ ପାତଳ ହୋଇ ଆସିଲା। ସଭାସଦ୍‌ମାନେ ଆପଣା ଆପଣା ଭିତରେ ଚୁପ୍‌ଚାପ୍ ହେଉଥିଲେ। ସେମାନେ କଳ୍ପନା ମଧ୍ୟ କରିପାରୁ ନ ଥିଲେ ଯେ ମିସ୍ତ୍ରୀମାନେ କେଉଁଠୁ କେତେବେଳେ ଉପରକୁ ଆସିଲେ ଏବଂ ଦଶ ମିନିଟ ପରେ କୁଆଡ଼େ ଅଦୃଶ୍ୟ ହୋଇଗଲେ। ରାଜାଙ୍କ ସହିତ ମନ୍ତ୍ରୀ ସୁମନ୍ୟୁ ମଧ୍ୟ ଉଠି ଆସିଥିଲେ। ଆଉ ରାଜାଙ୍କ ପାଖେ ପାଖେ ଗଭୀର ରାତ୍ରୀ ପର୍ଯ୍ୟନ୍ତ ରହିଥିଲେ। କୌଣସି କଥା ନ ଲୁଚାଇ ରାଜାଙ୍କ ଆଗରେ ଏ ସମ୍ବନ୍ଧୀୟ ସମସ୍ତ ଘଟଣା ବିଶଦ ଭାବରେ ଜଣାଇଥିଲେ।

ସେ କହିଥିଲେ, ଏଥିରେ ତାଙ୍କର ନିଜର କିଛି ବାହାଦୁରୀ ନାହିଁ। ତାଙ୍କର ବୁଦ୍ଧିମତୀ କନ୍ୟା ପଦ୍ମାବତୀ ହିଁ ତାଙ୍କୁ ଏ ବିପଦରୁ ରକ୍ଷା କରିଚି। ଝିଅଟିର କଥାକୁହା ଶୁଆ ଶାରୀ ଅଛନ୍ତି। ଏଇ ଦୁଇମାସ ଭିତରେ ସେଇମାନଙ୍କୁ ସେ ଦୂର ଆକାଶରୁ କଥା କହିବାକୁ ତାଲିମ୍ ଦେଇଥିଲା। ଗଭୀର ରାତିରେ ଏକ ନିକାଞ୍ଚନ ଜାଗାରେ ଦୁଇମାସ ଧରି ତାଙ୍କୁ ଶିକ୍ଷା ଦିଆଯାଉଥିଲା। ସେଇଥି ପାଇଁ କେବଳ ସେଇଠି, ଏଇ ଜଙ୍ଗଲିଆ ଜାଗାରେ ମହଲ ତିଆରି ପାଇଁ ସ୍ଥାନ ନିର୍ଦ୍ଦିଷ୍ଟ କରାଯାଇଥିଲା। ପରେ ପରେ ସୁମନ୍ୟୁ ମିସ୍ତ୍ରୀମାନଙ୍କ ନାମରେ ନେଇଥିବା ସ୍ୱର୍ଣ୍ଣମୁଦ୍ରାର ଥଳିଟିକୁ ରାଜାଙ୍କୁ ଫେରସ୍ତ କରିଦେଇଥିଲେ। ରାଜା ମୁରୁକି ମୁରୁକି ହସୁଥିଲେ। ତାଙ୍କର ମାନସ ପଟରେ ସୁମନ୍ୟୁଙ୍କର ସୁନ୍ଦରୀ ବୁଦ୍ଧିମତୀ ଝିଅଟିର ମୁଖମଣ୍ଡଳଟି ବାରମ୍ବାର ଦୃଶ୍ୟ ହେଉଥିଲା।

ପରଦିନ ଯଥା ସମୟରେ ସଭାକାର୍ଯ୍ୟ ଆରମ୍ଭ ହେଲା। ସଭାସଦ୍‌ମାନେ ରାଜାଙ୍କର ଗାମ୍ଭୀର୍ଯ୍ୟ ଦେଖି ପ୍ରମାଦ ଗଣୁଥିଲେ। ଦରବାରରେ ସୂଚିଭେଦ୍ୟ ନିସ୍ତବ୍ଧତା। ରାଜା ମନ୍ତ୍ରୀଙ୍କୁ ଲକ୍ଷ କରି କହିଲେ ମନ୍ତ୍ରୀ ସୁମନ୍ୟୁ, ଆପଣଙ୍କ ପାଇଁ ମୁଁ ଅତ୍ୟନ୍ତ ଗର୍ବିତ। ଯାହା କେହି କରିପାରି ନ ଥା'ନ୍ତେ ତା ଆପଣ କରି ଦେଖାଇଚନ୍ତି। ଆଉ ସଭାସଦ୍‌ବୃନ୍ଦ ମୁଁ ଆପଣମାନଙ୍କ ଉଦ୍ଦେଶ୍ୟ ବୁଝିପାରି ଲଜ୍ଜିତ। ଖାଲି ଲଜ୍ଜିତ ନୁହେଁ ମର୍ମାହତ। ଆପଣମାନେ ଯାହାଙ୍କୁ ନ୍ୟୂନ କରିବାକୁ ଚାହିଁଥିଲେ ଆଜି ତାଙ୍କରି ମହାନୁଭବତାରୁ ଆପଣମାନେ ନିଜନିଜ ପଦରେ ଅବସ୍ଥାପିତ ହୋଇରହିଚନ୍ତି। କାରଣ ଆପଣମାନଙ୍କ କୃତକର୍ମ ପାଇଁ ମୁଁ ସମସ୍ତଙ୍କୁ ପଦଚ୍ୟୁତ କରିବାକୁ ଆଦେଶ ଦେଇଥିଲି। ସୁମନ୍ୟୁ ମହଲ ନିର୍ମାଣ ପାଇଁ ଅଗ୍ରୀମ ନେଇଥିବା ଲକ୍ଷେ ସ୍ୱର୍ଣ୍ଣମୁଦ୍ରା ଫେରସ୍ତ ଦେଇଚନ୍ତି। ସେଇ ସ୍ୱର୍ଣ୍ଣମୁଦ୍ରା ସବୁ ମୁଁ ତାଙ୍କୁ ପୁରସ୍କାର ସ୍ୱରୂପ ପ୍ରଦାନ କରିବା ସହିତ ତାଙ୍କୁ ମହାମନ୍ତ୍ରୀ ପଦକୁ ଉନ୍ନୀତ କରୁଛି।

ଦରବାରରୁ ଏକ କଣ୍ଠରେ କଳରବ ଶୁଣାଗଲା, 'ଜୟ ମହାରାଜାଙ୍କର ଜୟ', 'ଜୟ ମହାମନ୍ତ୍ରୀ ସୁମନ୍ୟୁଙ୍କର ଜୟ'। କରତାଳି ଧ୍ୱନିରେ ଗଗନ ପବନ ମୁଖରିତ ହେଲା। ରାଜା ମୁଣ୍ଡ ହଲାଇ ସମସ୍ତଙ୍କୁ ନିବୃତ୍ତ କରି ପୁଣିଥରେ କହିବାକୁ ଲାଗିଲେ, "ଏହି ଅବସରରେ ମୁଁ ମୋର ଆଉ ଗୋଟିଏ ମନକଥା ଘୋଷଣା କରିବାକୁ ଯାଉଚି। ରାଜକୁମାରଙ୍କ ପାଇଁ ମନ୍ତ୍ରୀଙ୍କର ରୂପବତୀ ବିଦୁଷୀ କନ୍ୟାଟିକୁ ମୁଁ ବଧୂରୂପେ ମନୋନୀତ କରିଚି।" ହଠାତ୍ ରାଜସଭା ସ୍ତବ୍ଧ ହୋଇଗଲା, ପରେ ପରେ ଗୁଣୁଗୁଣୁ ହୋଇ ଚାପା ଗୁଞ୍ଜନ ଶୁଣାଗଲା। ରାଜ୍ୟର ଉତ୍ତରାଧିକାରୀ ରୂପବାନ ଗୁଣବାନ ରାଜକୁମାର ପାଇଁ କୌଣସି ବିଶିଷ୍ଟ ରାଜକୁମାରୀ ମାନନ୍ତା ସିନା। କିନ୍ତୁ ମନ୍ତ୍ରୀଙ୍କ ଝିଅ? ସେମାନେ ଏଇକଥାକୁ ଠିକ୍ ଭାବରେ ଗ୍ରହଣ କରିପାରୁନ ଥିଲେ। କିନ୍ତୁ ସେମାନେ କେହି ବି ଜାଣି ନ ଥିଲେ ଯେ ଧୂଳି ଖେଳ ବେଳୁ ସେ ଦୁହେଁ ପରସ୍ପରକୁ ପସନ୍ଦ କରି ସାରିଥିଲେ।

ରାଜାଙ୍କୁ ଉତ୍ତର ଦେବାକୁ ଯାଇ ଜଣେ ପାରିଷଦ ଉଠି ଠିଆ ହୋଇ ହାତ ଯୋଡ଼ି କହିଲା, "କ୍ଷମା କରନ୍ତୁ ମହାରାଜ, ଆମରି ଗୁଣଦୀପ୍ତ କୁମାରଙ୍କ ପାଇଁ ଯେ କୌଣସି ସମୃଦ୍ଧିଶାଳୀ ରାଜ୍ୟର ରାଜକୁମାରୀ ନିଜକୁ ଭାଗ୍ୟଶାଳିନୀ ମନେ କରନ୍ତା। ମାତ୍ର ଆପଣଙ୍କ ଘୋଷଣାକୁ ସମ୍ମାନ ଦେବାକୁ ଯାଇ ଆମେମାନେ ଆପଣଙ୍କ ମନୋନୀତ ଭାବି ଯୁବରାଣୀଙ୍କୁ ଗୋଟିଏ ମାତ୍ର ପ୍ରଶ୍ନ ପଚାରିବୁ। ସେ ଯଦି ଆମ ମନ ପୂର୍ଣ୍ଣକରି ଉତ୍ତର ଦିଅନ୍ତି ତେବେ ଆମେ, ସବୁ ରାଜ୍ୟବାସୀ ବିନା ବାକ୍ୟ ବିନିମୟରେ ତାଙ୍କୁ ବଧୂରୂପେ ବରଣ କରିନେବୁ। ହେ, ରାଜ ରାଜେଶ୍ୱର ମହାମହିମ ମହାରାଜ,

ଆପଣ ଆମ୍ଭମାନଙ୍କର ବହୁ ଅପରାଧ କ୍ଷମା କରିଚନ୍ତି । ଏବେ ଆମ୍ଭମାନଙ୍କର ଧୃଷ୍ଟତା ମାର୍ଜନ କରି ଏଇ ପ୍ରାର୍ଥନାଟି ଗ୍ରହଣ କରନ୍ତୁ । କାରଣ ପ୍ରଜାମାନଙ୍କ ହୃଦୟରେ ଆମର ଭାବି ଶାସନ କର୍ତ୍ତାଙ୍କ ପାଇଁ ଯଥାର୍ଥ ଶ୍ରଦ୍ଧା ରହିବା ଏକାନ୍ତ ଆବଶ୍ୟକ ।" ରାଜା ସାଦର ସ୍ୱୀକୃତି ଜଣାଇଲେ ।

ମହାମନ୍ତ୍ରୀଙ୍କ ମୁଖ ମଣ୍ଡଳରେ ଅବସାଦର ଚିହ୍ନ ମାତ୍ର ନ ଥିଲା । ସଙ୍ଗେ ସଙ୍ଗେ ମନ୍ତ୍ରୀଙ୍କ ଭବନଠାରୁ ରାଜ ଉଆସ ପର୍ଯ୍ୟନ୍ତ ଘେରାବାଡ଼ ଟାଣି ଦିଆଗଲା । ପଦ୍ମାବତୀ ସଖୀମାନଙ୍କ ସହିତ ରାଜ ଦରବାରର ଦରଜା ପାଖରେ ଘେରାବାଡ଼ ଭିତରେ ରହିଲେ । ପୁରୋହିତ ତାଙ୍କୁ ଦରବାରୀ ଏବଂ ପ୍ରଜାମାନଙ୍କ ତରଫରୁ ପଶ୍ନକଲେ, "ଏକ ଠାରୁ ବାର ପର୍ଯ୍ୟନ୍ତ ସଂଖ୍ୟାର ତାତ୍ପର୍ଯ୍ୟ କ'ଣ ହୋଇପାରେ ?" ବିନା ଦ୍ୱିଧାରେ ପଦ୍ମାବତୀ ତାଙ୍କର ବୀଣାଜିଣା କଣ୍ଠରେ କହିବାକୁ ଆରମ୍ଭ କଲେ, "ଏକରେ ଏକାବନ, ଦୁଇରେ ଦ୍ୱିତୀୟା ଚାନ୍ଦ, ତିନିରେ ତ୍ରିବେଣୀ ଘାଟ, ଚାରିରେ ଚତୁର୍ଦ୍ଧା ମୂରତି, ପାଞ୍ଚରେ ପଞ୍ଚୁ ପାଣ୍ଡବ, ଛଅରେ ଷଡ଼ ଅଇରି, ସାତରେ ସପ୍ତଫେଣୀ ନାଗ, ଆଠରେ ଅଷ୍ଟବକ୍ର ଋଷି, ନଅରେ ନବଗ୍ରହ, ଦଶରେ ଦଶ ଅବତାର, ଏଗାରରେ ଅଗ୍ନିଦେବତା, ବାରରେ ବାବନ ମୂରତି... କହିଲି ମୁଁ ଶୁଣ ତୁମ ବୋହୂ ପଦ୍ମାବତୀ ।"

ଚଉଦିଗରୁ ହର୍ଷ ଧ୍ୱନି ସହିତ ହରିବୋଲ ହୁଳହୁଳିର ଶବ୍ଦ ଉଚ୍ଛୁଳି ପଡ଼ିଲା । ଘନ ଘନ ଶଙ୍ଖ ମହୁରୀ ତୂରୀ ବାଇଦ, ବଡ଼ କାଠ, ଯୋଡ଼ି ନାଗରା ବାଜି ଉଠିଲା । ଜୟ ମହାରାଜଙ୍କର ଜୟ – ଜୟ ମହାମନ୍ତ୍ରୀଙ୍କର ଜୟ – ଜୟ ଯୁବରାଜ ଯୁବରାଣୀଙ୍କର ଜୟ – ଜୟ ବିଦୁଷୀ ବୁଦ୍ଧିମତୀ ମା ପଦ୍ମାବତୀଙ୍କର ଜୟ ଧ୍ୱନୀରେ ଗଗନ ପବନ ନିନାଦିତ ହୋଇ ଉଠିଲା ।

ମୋ କଥାଟି ଏତିକି,
ଫୁଲ ଫୁଟିଗଲା କେତକୀ ।
କେତକୀ ଫୁଲ ଯେ ପାଖୁଡ଼ା ତୋରା,
ପାଶୋରିବ ନାଇଁ ଦୁଃଖ ପାଶୋରା ।
ଅଗୁଣ ଆଇ, କହୁଚି ଧନରେ ତୁମରି ପାଇଁ ॥



# କଲରେଇ ଫୁଲ କଥା

ବହୁତ ଦିନ ତଳର କଥା – ଗୋଟିଏ ସାଧବ ଘର ଥାଏ । ଭାରି ନାଆଁ ଡାକ । ସାତ ପୁଅରେ ଛଅ ବୋହୂ । ସାନ ପୁଅଟି ବାହାହୋଇ ନ ଥାଏ, ସାତ ପୁଅରେ ସୁନାନାକୀ ଝିଅଟିଏ । ନାଁ ତା'ର କଲରେଇ ଫୁଲ । ସାତ ପୁଅରେ କେତେ ଦିଅଁ ଦୂବ କରି ଝିଅଟି ହେଇଚି । ତା'ରି ଉପରେ କାହାର ଆଖି କାଳେ ପଡ଼ିଯିବ ବୋଲି, ଯମକୁ କଲରା ପରି ପିତା ହେବ ବୋଲି, ତା ନାଁ ଦିଆହେଲା କଲରେଇ ଫୁଲ । ସବା ସାନ ତ ଭାରି ଗେଲବସରୀ । ଭାରି ସେରନ୍ତାରେ ବଢ଼ୁଥାଏ । ଘିଅ ଖାଇ ଦୁଧରେ ଆଞ୍ଚୋଉ ଥାଏ । ସାଧବର ଅକଳନ୍ତି ଧନ । ପିଢ଼ା ଫୁଟି ଧନ ମାଡ଼ି ଯାଉଚି । ଗୁହାଳରେ ଗୋଠେ ଗାଈ । ଘିଅ ସର ଲହୁଣୀ ଦହି ଯାହାକୁ ଯେତେ । ଯାହା କହନ୍ତି – ଦଧି ନଉତିରେ ଆଣ୍ଠୁ ବୁଡ଼ୁ, ଗୋବର ଗାଡ଼ିଆରେ ଗଣ୍ଡି ବୁଡ଼ୁ ।

ଅମାର ଖମାର କ୍ଷେତ ଖଳା । ବିଲରେ ଧାନ, ମୁଗ, ବିରି, ସବୁ ରବି ଫସଲ ପାଚୁଥାଏ । ପଡ଼ିଆ, ଡିଙ୍ଗର, ଗହିର ତଇଲାରେ, ହରଡ଼ କୋଳଥ ରାଶି ପେଶୁ ସୋରିଷ ବାଦାମ ଫୁଲ ଉଡ଼ଉ ଥାଏ । ତେଲ କିଣା ନାଇଁ, ମାଳରେ ନଡ଼ିଆ, ଆମ୍ବ ପଣସ, ତାଳ ଖଜୁରି, କରମଙ୍ଗା, ପିଜୁଳି, ଡାଳିମ୍ବ, ଜାମୁ, ଗୋଲାପଜାମୁ, ବଢ଼ିଆଳ ଠାରୁ ଆରମ୍ଭ କରି ଲିଚୁ, ବରକୋଳି, ଆଶୁକୋଳି, ଭଇଁଚ କୋଳି, କଣ୍ଟେଇ କୋଳି ପର୍ଯ୍ୟନ୍ତ ନାନା ଜାତିର କୋଳି । ଯୋଉ ଋତୁରେ ଯାହା ପାଚି ଫୁଟି ପଡ଼ୁଥାଏ । ନିତି ସକାଳ ପାହିଲା ବେଳକୁ ଶୁଆଶାରୀ, ଆଉ କେତେ ପ୍ରକାରର ଚଢ଼େଇମାନଙ୍କ କଳ କାକଳିର ମଧୁର ମୂର୍ଚ୍ଛନାରେ ମନ ପୂରି ଯାଏ । ଆମ୍ବ ଗଛମାନଙ୍କରେ ଏଡ଼େ ଏଡ଼େ ମହୁଫେଣାରୁ ମହୁ ଖାଲି ଥୋପି ପଡ଼େ । ବାରି ବଗିଚାରେ କେତେ ଜାତିର ସାକ ସବ୍‌ଜି, ସଜନା ଝୁମ୍ପୁଡ଼ି । ପନି ପରିବା ଯାହାକୁ ଯେତେ ।

ସବୁଠାରୁ ବେଶୀ ଶୋଭାକର ଫୁଲ ବାଗନା – ଚମ୍ପା, ସୁଗନ୍ଧରାଜ, ନାଗେଶ୍ୱର, ମୁଚୁକୁନ୍ଦ, କୃଷ୍ଣଚୂଡ଼ା, କାମିନୀ ଆଦି ବଡ଼ ବଡ଼ ଫୁଲ ଗଛ ସହିତ ମଲ୍ଲି, ମାଳତୀ, ଜୁଈ, ଜାଈ, ଲାଭେଣ୍ଡର, ମଧୁମାଳତୀ, ରାଧାତମାଳ ଏମିତି କେତେ ଫୁଲ ଫୁଟି ଧଳା ଚଦରଟିଏ ଘୋଡ଼ାଇଲା ପରି ଦେଖାଯାଏ । ସବୁଠାରୁ ଅଲଗା ଗୋଲାପ ବଗିଚା, ପଇଁତିରିଶ ପ୍ରକାରର ଗୋଲାପ – ଏକା ସାଥିରେ ଏତେ ପ୍ରକାରର ଗୋଲାପ ସେଇ ଖଣ୍ଡମଣ୍ଡଳରେ ବିରଳ । ଆଉ ଟିକିଏ ଆଗକୁ ପଦ୍ମ ପୋଖରୀ, ଶେତ ଲାଲ ଗୋଲାପି ପଦ୍ମରେ ପଦ୍ମ ପୋଖରୀ ଭରପୁର । ପିଲାମାନେ ସେ ପାଖକୁ ଯିବାକୁ ମନା – କାଳେ ସର୍ପ ଅଛନ୍ତି ।

ଏସବୁ ଦେଖା ରଖା କରିବାକୁ ମାଳିମାନେ ହେତା ନେଇ ଅଛନ୍ତି । ତାଙ୍କ ନାଁରେ ଜମି ସବୁ

ଅଛି। ନିଇତି କାଳି ଅନ୍ଧାରରୁ ମାଲୁଣୀମାନେ ଆସି ବେତାରେ ବେତାଏ ଲେଖାଏଁ ଫୁଲ ତୋଳି ରାଧାଗୋବିନ୍ଦଙ୍କ ବେଢ଼ାରେ ନିଯୋଗନ୍ତି। ପୁଣି ଗାଧୋଇ ପାଧୋଇ ଆସି ଫୁଲ ଗୁନ୍ଥନ୍ତି – ତାଙ୍କ ପାଇଁ ଅଲଗା ଖଞ୍ଜା। ବଲ୍ଲଭ, ବଡ଼ଶିଂଗାରରେ ତାଙ୍କର ଭାଗ, ନିତିଆନି ଥାଳି ତାଙ୍କର। ବ୍ୟଞ୍ଜନ ଦ୍ୱାଦଶୀରେ ୮୪ ପ୍ରକାରର ବ୍ୟଞ୍ଜନ ହୁଏ ରାଧାଗୋବିନ୍ଦଙ୍କ ମନ୍ଦିରରେ। ଏ ମନ୍ଦିର ସାଧବ ଘର ନିଜସ୍ୱ ମନ୍ଦିର। ତାଙ୍କର ୩୬୫ ବାଟି ଜମି। ସେଇଥିରୁ ଠାକୁରଙ୍କର ନିତି ଯାନି ଯାତ୍ରା, ଭୋଗରାଗ, ଦେଉଳ ଚୂନ ଦିଆ ଇତ୍ୟାଦି ଚଳେ। ବ୍ୟଞ୍ଜନ ଦ୍ୱାଦଶୀରେ ରଇତମାନେ ଶଗଡ଼ ଶଗଡ଼ ଗୋଟା ଗୋଟା କଖାରୁ ଦେଶୀଆଳୁ ପନି ପରିବା ନଡ଼ିଆ ଇତ୍ୟାଦି ନେଇ ଆସନ୍ତି। ସକୁଟୁମ୍ବେ ଖାଆନ୍ତି। ଏମାନଙ୍କ ବ୍ୟତୀତ ପ୍ରାୟ ସମସ୍ତେ ଖାଆନ୍ତି। ଖିଆ ପିଆ ଧୂମ ଚାଲେ। ଗୋବିନ୍ଦ ଦ୍ୱାଦଶୀର ଖେଚେଡ଼ି ଆଉ ଖିରୀ ଯିଏ ଖାଇଚି ତା'ର ବର୍ଷସାରା ମନେ ରହିଥିବ।

ସାଧବ, ସାଧବ ପୁଅମାନେ ଜମି ଜମା ବେପାର ବଣିଜ କଥା ବୁଝନ୍ତି। ସାଧବ ବୋହୂମାନେ ସବୁବେଳେ ଆୟ ଅଳଙ୍କାର ପାଟ ପତନୀ ପିନ୍ଧି ଭିତର ଖଞ୍ଜାର ହାଲଚାଲ, ରନ୍ଧା ବଢ଼ା ଖିଆଣି ପିଆଣି ପିଲାଛୁଆଙ୍କ ଖବର ଟବର ତଦାରଖ କରନ୍ତି। ଧାଈ ମୁଦୁସୁଲୀ ପୋଇଲୀ ପରିବାରୀ ଚାକର ବାକରମାନେ ଏପଟ ସେପଟ ହେଇ ସବୁବେଳେ କାର୍ଯ୍ୟବ୍ୟସ୍ତ। ସାଧବାଣୀ ତ ସର୍ବେସର୍ବା। ଦିଆଣି ନିଆଣି ଅତିଥି ଅଭ୍ୟାଗତ କୁଣିଆ ମଇତ୍ର ଗଲା ଆଇଲା ସବୁକଥା ତାଙ୍କ ମୁଣ୍ଡରେ। ବଡ଼ ଧାର୍ମିକ। ଯାବତ ଓଷା ବାରବ୍ରତ, ସେ ପୁରେ ଅଛଇ ସମସ୍ତ। ଯୋଗୀ ଭିକାରିଙ୍କ ଥାଳ ପୂରେ, ଚଢ଼େଇ ଚିରୁଗୁଣିଙ୍କ ପେଟ ଚିହ୍ନନ୍ତି।

ପକ୍କା ଘରଣୀ। ଘରଣୀ ଚେତାଳ, ଚାରି ଆଡ଼କୁ ନିଘା। ଦେଉଳ ନୀତି ଠାରୁ ଆରମ୍ଭ କରି ଘରର ସବୁ ବ୍ୟବସ୍ଥା ବଡ଼ ସୁଚାରୁ ଭାବରେ ଚାଲେ ତାଙ୍କ ରାଜୁତିରେ। ପାନରୁ ଚୂନ ଟିକିଏ ଖସିବାର 'ଯୁ' ନାହିଁ। ସମସ୍ତେ ତାଙ୍କୁ ଯେମିତି ଶ୍ରଦ୍ଧା କରନ୍ତି, ଭକ୍ତି କରନ୍ତି ଆଉ ସେମିତି ବହୁତ ଭଲ ପାଆନ୍ତି। ନାତି ନାତୁଣୀ କୋଳରେ ଧରି ବହନ୍ତିରେ ବସି ଗେଲେଇ ନଟେଇ ହଉଥାନ୍ତି। ଏମିତି ଏମିତି ସାଧବ ଘରଟି ଚାରି ଦିଗରୁ ସ୍ୱଚ୍ଛଳ। ଭଣ୍ଡାର ପରିପୂର୍ଣ୍ଣ। ମହାଲକ୍ଷ୍ମୀ ସାଆନ୍ତାଣି ତାଙ୍କୁ ସହସ୍ର ଆଖିରେ ଚାହିଁଚନ୍ତି। ମା' ଦୁର୍ଗା ତାଙ୍କୁ ଘଣ୍ଟ ଘୋଡ଼ାଇ ରକ୍ଷା କରିଚନ୍ତି। ରାଧା ଗୋବିନ୍ଦ ଶଙ୍ଖରେ ପୂରାଇ ଚକ୍ର ଆଡୁଆଳି ରଖିଛନ୍ତି।

ପାଚକୁଡୁମେଇ ନବ ପାଚକୁଡୁମେଇ (ଖଜୁରି କୋଳି) – ମୁଣ୍ଡରେ ପସରା ଧରି ଦାଣ୍ଡରେ ଡାକି ଡାକି ଯାଉଚି ଭମରା ମାଆ। ଖାଇଲା ପିଲା ତ ରଙ୍କ। କେଉଁଠି ଥିଲା ସାଧବଙ୍କ ସାନ ପୁଅଟି। ଆସି ମାଆ ପାଖରେ ଅଳି କଲା, "ମାଆ ମୁଁ ପାଚକୁଡୁମେଇ କିଣିବି।" ମାଆ କହିଲେ, "ଆମର ତ ଗଛମାନଙ୍କରେ ସୁନା ଚାମର ପରି କେତେ କେତେ ଝୁଲୁଚି। ଯା' ପାଇଟିଆଳକୁ କହିବୁ ପାରିଦବ।" ସାନ ପୁଅର ଏକାଜିଦ୍ ନାଁ ସିଏ ଏଇନେ ଏଇ ପାଚକୁଡୁମେଇ କିଣିବ। ମାଆ କହିଲେ, "ହଉ ଯାଆ। ଅମାର ଘରୁ ଏ ଡୋଲି ଛାଡ଼ିବୁ, ସେ ଡୋଲି ଛାଡ଼ିବୁ, ମଝି ଡୋଲିରୁ ମୟୂରକଣ୍ଠା ଧାନ ଆଣି କୋଳି କିଣିବୁ।"

ସାନପୁଅ ଜିତାପଟ ନେଇ ମନଖୁସିରେ ଡେଇଁ ଡେଇଁ ଅମାର ଘରକୁ ଗଲା। ଏ ଡୋଲି ଛାଡ଼ିଲା, ସେ ଡୋଲି ଛାଡ଼ିଲା, ମଝି ଡୋଲିରୁ କୁଲେଇଏ ଧାନ ନେଇ କୋଳି କିଣିଲା। ପାଚିଲା

କୋଳିସବୁ ବାଛିବାଛି ଆନନ୍ଦରେ ଖାଇଲା । ଦର ପାଚିଲା କୋଳିସବୁ ଡୋଲିରେ ପକେଇ ଦେଇ ଧାନ ଘୋଡ଼େଇ ଦେଲା ପାଚିବ ବୋଲି । ଦି ଚାରିଦିନ ବିତିଗଲାଣି । ସାନ ପୁଅର ଆଉ ମନେ ନାଇଁ । ପୁଣି ସେଇଦିନ ପାଚକୁଡ୍ଡୁମେଇ ବିକ୍ରି ଆସିଲା । ଏଥର ପାଳି କଲରେଇ ଫୁଲର । ସାନ ପୁଅ କୁଆଡ଼େ ଯାଇ ଖେଳୁଚି । କଲରେଇ ଫୁଲ ମାଆାକୁ କହିଲା କୋଳି କିଣିବି । ମାଆା ଆଗ ପରି କହିଲେ, "ଏ ଡୋଲି ଛାଡିବୁ, ସେ ଡୋଲି ଛାଡିବୁ, ମଝି ଡୋଲିରୁ ଧାନ ନେବୁ ।"

ଧାନ ଆଣି କୋଳି କିଣିବାକୁ କଲରେଇଫୁଲ ଗଲା – ଧାନ କ'ଣ ଆଣିବ? ଧାନ ଆଡ଼େଇ ଦେଲା ବେଳକୁ ପାଚିଲା ଟହଟହ ଲୁତୁପୁତିଆ କୋଳିସବୁ ବାହାରି ଆସିଲା । ସିଏ ଆଉ ଧାନ କାହିଁକି ଆଣନ୍ତାକି? କୋଳିତକ ବାଛିବାଛି କୁଲେଇରେ ଧରି ସହି ସଙ୍ଗାତଙ୍କୁ ଧରି ତା ମଖମଲି ଖେଳଘରେ ବସି ଆନନ୍ଦରେ ଖାଇଲେ ।

ଏଣେ କ'ଣ ହେଇଚି ନାଁ ଖେଳ ପଡ଼ିଆରେ ଭମରା ମାଆାର ଡାକ ସାନ ପୁଅ କାନରେ ପଡ଼ିଯାଇଛି । ଆଉ କି ସମଳା ଧରେ? ତା'ର ପାଚକୁଡ୍ଡୁମେଇ କଥା ମନେ ପଡ଼ିଗଲା । ସେଦିନ ସେ ମଝି ଡୋଲିରେ ପଚେଇଥିଲା । ଆଜିକୁ ସେ ସବୁ ବଢ଼ିଆ ବାଗରେ ପାଚିଯିବଣି । ଦୌଡ଼ିଲା ଅମାର ଘରକୁ । ସରୁଚିନା ମାଜି ଡୋଲି ଛାଡ଼ିଲା । କର୍ପୂରକୋଳି ଡୋଲି ଛାଡ଼ିଲା । ମୟୂରକଣ୍ଠା ଡୋଲି ଦରାଣ୍ଡି ଦରାଣ୍ଡି ହାଲିଆ । ଗୋଟିଏ ହେଲେ କୋଳି କାହିଁକି ଥାଆନ୍ତା? କିଏ ସବୁ ଚୋରେଇ ନେଇଚି । ତା ମୁଣ୍ଡକୁ ପିତ୍ତ ଚଢ଼ିଗଲା, ଭାରି ରାଗିଗଲା । କହିଲା, "ମୁଁ ପ୍ରତିଜ୍ଞା କରୁଚି ମୋ' କୋଳି ଯିଏ ନେଇଚି ମୁଁ ତାକୁ ବାହାହେବି ।" ପିଲା ବୁଦ୍ଧିତ! ଯାହା ପାଟିରୁ ଆସିଲା କହିଦେଲା, ନଗା ଅଛି ନାଁ ପଘା ଅଛି । କଥାର ଅର୍ଥ କ'ଣ ସିଏ ଜାଣେ? ବିଚାର ଶକ୍ତି କାଇଁ ଏତେ?

ଏଡ଼େ ବଡ଼ ପାଟି ଶୁଣି ମାଆା ଆସିଯାଇଥିଲେ । ଥକ୍କା ହେଇ ଠିଆ ହେଇ ରହିଲେ । ମୁଣ୍ଡରେ ହାତ ଦେଇ ତଳେ ବସି ପଡ଼ିଲେ । କ'ଣ କଲା ଚଣ୍ଡାଳ ପ୍ରତିଜ୍ଞା କରିଦେଲା? ମୁଁ ଏବେ କ'ଣ କରିବିଟି? ତାଙ୍କର ତାଳୁରୁ ତଳିପା ଯାଏ ଥରିଗଲା । ସେ ଜ୍ଞାନ ହରେଇ ସେଇଠି ପଡ଼ିଗଲେ । ଘର ଲୋକମାନେ ଜମିଗଲେଣି । ପାଣି ଛାଟି ମାଆାଙ୍କୁ ସାଷ୍ଟାଙ୍ଗ କରୁଚନ୍ତି । ହେଲେ ଘଡ଼ିକି ଘଡ଼ି ମାଆାଙ୍କର ହୋସ୍ ଉଡ଼ି ଯାଉଚି । କଥା କ'ଣ କି, ଆଜିକାଲି ପରି ସେତେବେଳେ ସେମିତି ନ ଥିଲା । ଆଜିକାଲି ତ ସମସ୍ତେ କଥା କଥାକେ ପ୍ରମିଶ୍ ପକେଇ ଦଉଚନ୍ତି । କଥା କହିବାର ଇଏ ଗୋଟିଏ ଷ୍ଟାଇଲ୍ ହୋଇଗଲାଣି । ସେତେବେଳେ କିନ୍ତୁ ପ୍ରତିଜ୍ଞା ମାନେ ପ୍ରତିଜ୍ଞା ।

ତାକୁ ଯେମିତି ହେଲେ ପୂରଣ କରିବାକୁ ପଡ଼ିବ ନ ହେଲେ ମୁକ୍ତି ନାଇଁ । ସାତ ପୁରୁଷଯାଏ ସମସ୍ତେ ଅହି ନର୍କରେ ପଡ଼ିବେ । ଘାଣ୍ଟି ହେବେ । ସେଥିପାଇଁ ଘର ପରିବାରର ବୁଢ଼ା ବୁଢ଼ାମାନେ ଯେମିତି ହେଲେ ପ୍ରତିଜ୍ଞା ପୂରଣ କରିବେ । କାନ କାନ ହେଇ କଥା ସମସ୍ତେ ଜାଣିଗଲେ । ସମସ୍ତଙ୍କ ମୁହଁରେ ବିଷାଦର ଛାୟା । ସାନ ପୁଅଟି ତ କାଠ ପାଲଟି ଯାଇଚି । ବିଧାତା ଲିଖନ କେ କରିବ ଆନ! ସାନ ପୁଅଟି ସବୁ କଥା ବୁଝିଲା ବେଳକୁ ନେଡ଼ି ଗୁଡ଼ କହୁଣୀକୁ ବୋହି ସାରିଚି । କ'ଣ ଆଉ କରାଯିବ? ଆଖିରୁ ଖାଲି ଧାର ଧାର ହେଇ ଲୁହ ବୋହି ଚାଲିଚି । ଜୀବନ ହରେଇ ଦେବାକୁ ଇଚ୍ଛା ହେଉଚି । କଲରେଇ ଫୁଲ ତ ଆଉ ପଲଙ୍କରୁ ଉଠୁନି । କାନ୍ଦି କାନ୍ଦି ଅସ୍ଥିର । ମୁହଁ ତ କଳା ଖପରା ହେଇଗଲାଣି । ଏଡେ ବଡ଼ ଆନନ୍ଦ କୋଳାହଳରେ ଗହ ଗହ ହଉଥିବା ଘର ଦଣ୍ଡକରେ ନିଶବ୍ଦ

ହୋଇଯାଇଛି । ଛୁଞ୍ଚି ପଡ଼ିଲେ ଶବ୍ଦ ହେବ । ଆଉ କାହାର କିଛି କରିବାର ନାହିଁ । ବାହାଘର ହେବ ।

ସେଇ ଦୁଃଖ ଶୋକ ଭିତରେ ବେଦୀ ତିଆରି ହେଲା, ଛାମୁଣ୍ଡିଆ ବନ୍ଧା ହେଲା, ବର ମଙ୍ଗୁଳା ହେଲା । କଲରେଇ ଫୁଲ ଦାନ୍ତକାଠି ହଳଦି ମାଳପା (ତେଲ) ନେଇ ଧାଈମା ସଙ୍ଗରେ ବାରିପାଖରେ ବୋହି ଯାଉଥିବା ସୁବର୍ଣ୍ଣରେଖା ନଦୀକୁ ଗାଧୋଇ ଗଲା । ତୁଠରେ ପାହାଚେ ପାହାଚେ ତଳକୁ ଓହ୍ଲେଇଲା । ଅଣ୍ଟାଯାଏ ପାଣିକି ଗଲା, ତେଲ (ମାଳପା) ପାଣିରେ ଢାଳି ଦେଇ କାନ୍ଦିଲା, "ତୁ ଯଦି ସତ ମାଳପା ହେଇଥିବୁ ଡଙ୍ଗା ହେଇଯିବୁ ।" ତେଲ ପାଣିରେ ଭାସି ଭାସି ଡଙ୍ଗା ହେଇଗଲା । ଦାନ୍ତକାଠି ପକେଇ ଦେଇ କହିଲା, "ତୁ ସତ ହେଇଥିଲେ କାତ ହେଇଯିବୁ ।" ଆଉ ହଳଦି ମେଞ୍ଚାକ ପାଣିକି ଦେଇ କହିଲା, "ତୁ ସତ ହେଇଥିଲେ ଫରୁଆଟିଏ ହେଇଯିବୁ ।" ହଳଦି ବଡ଼ ଫରୁଆଟିଏ ହେଇଗଲା । ସେ ଫରୁଆଟିକୁ ଡଙ୍ଗାରେ ରଖି କାତଟି ଧରି ଆପେ ତା' ଭିତରେ ବସିଲା । ଫରୁଆର ଘୋଡ଼ଣିଟି ଅଧା ଘୋଡ଼ା ହେଇ ରହିଲା । ଏମିତି ଅନେକ ବେଳ କଟିଗଲା । କଲରେଇ ଫୁଲ ଆସୁନାହିଁ କାହିଁକି? ଧାଈମା ଆସି ଘରେ ସବୁ ଘଟଣା କହିଲେ । ସେଠୁ ବାପା ମାଆ ଗଲେ ଡାକିବାକୁ ।

ବାପା ଡାକିଲେ, "ଆସ ଆସ ଗୋ କଲରେଇ ଫୁଲ, ବିଭାହେବ ପରା ଆସ । ବେଦୀରେ ବର ତ ବୁଢ଼ା ହୋଇଲା, ପାନ ଛାମୁଡ଼ିଆ ଝାଉଁଳି ଗଲା । ଲହୁଣୀର ବେଦି ତରଳି ଗଲା, ବେଦି ତଳେ ପାଣି ଆଣ୍ଠୁଏ ହେଲା । କଜ୍ଜଳ ପାତୀରେ ଗୁଣ୍ଡ ପଡ଼ିଲା । ହଳଦି କାଠୁଆ ଫିମ୍ପି ମାରିଲା । ଆସ ଆସ ଗୋ କଲରେଇ ଫୁଲ, ବିଭାହେବ ପରା ଆସ ।" ସେଠୁ କଲରେଇ ଫୁଲ କାନ୍ଦି କାନ୍ଦି କହିଲା, "ତମେ ହେଇଥିଲ ବାପା, ଏବେ ହେବ ଯେ ଶଶୁର । ତୁମ ମୁହଁ ଯାହା ଚାହିଁ ରହିବି, ମଝି ଦରିଆରେ ବୁଡ଼ି ମରିବି । ବୁଡ଼ରେ ଡଙ୍ଗା ବରଷେ ଛ ମାସେ ।" ଫରୁଆର ଘୋଡ଼ଣି ମୁଦି ହେଇଗଲା । ଡଙ୍ଗା ବୁଡ଼ିଯାଇ ଖଣ୍ଡେ ଦୂରରେ ଉଠିଲା ।

ତା' ପରେ ମାଆ ବାପାଙ୍କ ପରି କହିକହି ଡାକିଲେ । କଲରେଇ ଫୁଲ ବାପାଙ୍କ ପରି ମାଆଙ୍କୁ କହିଲା, "ତୁମେ ହେଇଥିଲ ମାଆ, ଏବେ ହେବ ଯେ ଶାଶୂ ।" ଭାଇମାନେ, ଭାଉଜମାନେ ସେହିପରି ଡାକିଲେ । କଲରେଇ ଫୁଲ ପୂର୍ବପରି ଜବାବ୍ ଦେଇଥିଲା ଭାଇମାନଙ୍କୁ, "ତମେ ହେଇଥିଲ ଭାଇ ଭାଉଜ ଏବେ ହେବ ଯେ ଯାଆ, ଦେଢ଼ଶୁର ।" ଏହିପରି ଜଣ ଜଣଙ୍କୁ ଉତ୍ତର ଦେବା ବେଳକୁ ପ୍ରତିଥର ଡଙ୍ଗା ବୁଡୁଥିଲା । ଆଉ ଖଣ୍ଡେ ଦୂର ଭିତରକୁ ଯାଇ ଉଠୁଥିଲା ।

ସବା ଶେଷରେ ସାନ ଭାଇ ଆସି ଡାକିଲା, "ଆସ ଆସ ଗୋ କଲରେଇ ଫୁଲ, ଲହୁଣୀର ବେଦି ତରଳିଗଲା, ବେଦି ତଳେ ପାଣି ଆଣ୍ଠୁଏ ହେଲା । ପାନ ଛାମୁଡ଼ିଆ ଝାଉଁଳିଗଲା, କଜ୍ଜଳ ପାତୀରେ ଗୁଣ୍ଡ ପଡ଼ିଲା, ହଳଦି କାଠୁଆ ଫିମ୍ପି ମାରିଲା । ଆସ ଆସ ଗୋ କଲରେଇ ଫୁଲ, ବିଭାହେବ ପରା ଆସ ।" ତା' ଆଖିରୁ ପାଟ ପାଟ ହୋଇ ଲୁହ ବୋହିଯାଉଥିଲା, ଗଳା ଭିତରେ କଥା ସବୁ ଅଟକି ଅଟକି ଯାଉଥିଲା । କଲରେଇ ଫୁଲ ଅନେକ ଦୁଃଖରେ, ଅନେକ ଲୁହରେ ବ୍ୟାକୁଳ ଭାବରେ ସେଇପରି କହିଲା, "ତମେ ହେଇଥିଲ ଭାଇ, ଏବେ ହେବ ଯେ ସ୍ୱାମୀ । ତୁମ ମୁହଁ ଯାହା ଚାହିଁ ରହିବି, ମଝି ଦରିଆରେ ବୁଡ଼ି ମରିବି । ବୁଡ଼ରେ ଡଙ୍ଗା ବୁଡ଼ିଯା... ବୁଡ଼ି ଯା... ବୁଡ଼ି ଯାଆ... ବୁଡ଼ି ଯାଆ... ।"

ସେତେବେଳକୁ ଡଙ୍ଗା ନଦୀର ମୁହାଣ ଆଡ଼କୁ ଚାଲି ଯାଇଥିଲା । ଫରୁଆ ମୁଦି ହୋଇଗଲା, ଡଙ୍ଗା ବୁଡ଼ିଗଲା – ବୁଡ଼ିଗଲା ଯେ ଆଉ ଉଠିଲାନି । ନଦୀର ଅତଳ ତଳ ଗଭୀର ଜଳରେ କୁଆଡ଼େ ହଜିଗଲା । କାତଟି କେବଳ ନଈ ସୁଅରେ ଭାସି ଭାସି ଯାଉଥିଲା । ଚାରିଆଡ଼ ହଇଚଇ କୋଳାହଳ ହେଇ ଉଠିଲା । ସାଧବଘର କେତେ ଖୋଜାଇଲେ, ଅନେକ ଲୋକ ନଦୀରେ ପଶି ଉପର ପାଣି ତଳ ପାଣି ସବୁ ଏକାକାର କରିଦେଲେ । ହେଲେ କେବଳ ଡଙ୍ଗାଟି ମିଳିଲା, କଲରେଇ ଫୁଲର କାହିଁ କୋଉଠି ଚିହ୍ନ ନାଇଁ । ଘର ଲୋକେ ବଡ଼ ବିଷାଦରେ ଘରକୁ ଫେରିଲେ । ପୁଅ ତ ମଙ୍ଗୁଳା, ସେଇ ଦୁଃଖରେ ଦୁଃଖରେ ରୂପବତୀ ଝିଅଟିଏ ସହିତ ବିଭାଘର କରି ଦିଆଗଲା । ସାଧବ ଘରକୁ କୋଉ ବୋହୂ ଅପୂରୁବ ଅବା, ତା' ଉପରେ ତା' ଉପରେ ତ କେତେ ଉପରେ ପଡୁଥିଲେ ।

ଏଣେ କ'ଣ ହେଇଚି ନା ଡଙ୍ଗାଟି ତ ବୁଡ଼ିଗଲା । ଡଙ୍ଗାରୁ ଅଲଗା ହେଇ ଫରୁଆଟି ଭାସି ଭାସି ଅନେକ ଅନେକ ଦୂରକୁ ଚାଲିଗଲା, ତଳ ମୁଣ୍ଡରେ ଜଙ୍ଗଲ ଧାରରେ ଯାଇ ଲାଗିଲା । ଜଣେ ଯୋଗୀ ସେଠି ଥାଳ ମାଜୁଥିଲେ, ଫରୁଆଟିକୁ ଦେଖି ସେ ଆଶ୍ଚର୍ଯ୍ୟ ହୋଗଲେ । ଏଡ଼େ ଉଜ୍ଜ୍ୱଳ ବିରାଟ ଫରୁଆ କୋଉଠୁ ଆସିଲା... କୁଆଡୁ ଆସିଲା ସେ ଜମା ବୁଝିପାରିଲେନି । ଫରୁଆ ପାଖକୁ ଆସି ଧୀରେ ଧୀରେ ମୁଦା ଘୋଡ଼ଣିଟି ଖୋଲିଲେ । ଖୋଲି ଚମକି ପଡ଼ିଲେ । କଅଁଳ ଛନ ଛନ ଝାଉଁଳା ପଦ୍ମଫୁଲ ପରି ସୁନ୍ଦର ଝିଅଟିଏ ଚେତା ହରେଇ ତା ଭିତରେ ରହିଚି । ସେ ଝିଅଟି ମୁହଁରେ ପାଣି ଛାଟିଲେ । ଝିଅଟି ଆସ୍ତେ ଆସ୍ତେ ଆଖି ଖୋଲି ଚାହିଁଲା । ତାର ପୂର୍ବ କଥା ସବୁ ମନେ ପଡ଼ିଗଲା । ହେଲେ ଜମାରୁ ପାଟି ଖୋଲିଲାନି ।

ଯୋଗୀ ଯେତେ ପଚାରିଲେ ବି, ସେ କିଏ, ତା ନାଁ କ'ଣ, କୋଉଠି ତା ଘର କିଛି ବି କହିଲାନି । ସେ ଫରୁଆ ଭିତରକୁ କେମିତି ଆସିଲା, କିଏ ତାକୁ ଅବା ସେଥିରେ ରଖିଲା, ସେ କିଛି କହିଲାନି । ଯୋଗୀ ଭାବିଲେ ଏଇ ସୁକୁମାରୀ ଝିଅଟି କିଛି ମାନସିକ ଆଘାତ ପାଇ ସବୁ କଥା ଭୁଲିଯାଇଚି ହୁଏତ । ତା' ଛଡ଼ା ଝିଅଟିର କାନ୍ଦ ଦେଖି ତା ମନରେ ଆଉ ଅଧିକ କଷ୍ଟ ଦେବାକୁ ସେ ଇଚ୍ଛା କଲେ ନାହିଁ । ଝିଅଟିକୁ ଭରାଦେଇ କୁଡ଼ିଆକୁ ଆଣିଲେ । ତାକୁ ବହୁତ ଯତ୍ନ କଲେ । ଠାକୁରଙ୍କ ପାଦୁକ ଆଣି ପିଆଇଲେ । କମ୍ବଳ ଖଣ୍ଡିଏ ବିଛାଇ ତାକୁ ଶୁଆଇଲେ । ଢେର୍ ସମୟ ଯାଏ ଠାକୁରଙ୍କୁ ଜଣାଣ କଲେ ।

ଧୀରେ ଧୀରେ ସମୟ ଓ ପରିସ୍ଥିତି ସହିତ ନିଜକୁ ଖାପ ଖୁଆଇ ନେଲା କଲରେଇ ଫୁଲ । ଯୋଗୀଙ୍କ କୁଡ଼ିଆଟି ଦି' ଭାଗ ହେଇଚି । ଗୋଟିଏ ପାଖରେ ଦିଅଁ ରହନ୍ତି, ତାଙ୍କ ପୂଜା ସାମଗ୍ରୀ ସହିତ । ଆର ପାଖରେ ଯୋଗୀଙ୍କର ନିତ୍ୟନୈମିତ୍ତିକ ବ୍ୟାବହାରିକ ଜିନିଷ, ଚୁଲି ହାଣ୍ଡି ଇତ୍ୟାଦି । ନିତିଦିନ କଲରେଇ ଫୁଲ କୁଡ଼ିଆଟିକୁ ଓଳିଆ ପୋଛିଆ କରି ପରିଷ୍କାର ପରିଚ୍ଛନ୍ନ କରେ । ଯୋଗୀଙ୍କୁ କିଛି କାମ କରେଇ ଦିଏନି । ପୂଜା ବାସନ କୁସନ ମଜାମଜି କରି ସଜାଡ଼ି ରଖିଦିଏ । ଫୁଲ ତୋଳେ, ଫୁଲ ଗୁନ୍ଥେ । ଯୋଗୀ ବାରଦ୍ୱାର ବୁଲି ଗାଁମାନଙ୍କରୁ ଭିକ ମାଗି ଯାହା ବାରମିଶା ଚାଉଳ, ଶାଗ ମୁଗ, ଆଳୁଟେ ବାଇଗଣଟେ କଖାରୁ ଟିକିଏ ଆଣନ୍ତି । ତାକୁ ଫୁଟେଇ ଦି ଜଣଯାକ ଖାଆନ୍ତି । ସେଇ ରାନ୍ଧଣା କଲରେଇ ଫୁଲକୁ ଏବେ ଅମୃତ ପରି ଲାଗିଲାଣି । ପ୍ରଥମେ ରୁଚୁ ନ ଥିଲା । କଥାରେ ଅଛି ଭୋକ ଅସୁର, ଭୋକ କି ଜାଣେ ଶାଶୂ ଶଶୁର ।

ଯୋଗୀ ନିତି ଭିକକୁ ଯାଆନ୍ତି । ସଞ୍ଜ ଗଡ଼ିଲେ ବି କିଛି ଚିନ୍ତା ନାହିଁ । ଆଜି କାଲି କିନ୍ତୁ ବେଳା ବେଳି ଲେଉଟି ଆସୁଛନ୍ତି । ଝିଅଟି ଉପରେ ଗୋଟିଏ ମାୟା ଲାଗିଗଲାଣି । କୋଉଠୁ କେମିତି ବାହାରୁ ଫଳଟେ ଫୁଲଟେ କପଡ଼ା ଖଣ୍ଡେ ମାଗି ଆଣନ୍ତି । ଯୋଗୀଙ୍କୁ ଗାଁମାନଙ୍କରେ ସମସ୍ତେ ଭଲ ପାଆନ୍ତି । ତାଙ୍କର ବ୍ୟବହାର ଯେପରି ମଧୁର, ସ୍ୱରଟି ସେହିପରି ମିଠା । ଭକ୍ତି ଗଦ୍ ଗଦ୍ ହେଇ ସେ ଯେତେବେଳେ ଗାଁ ଦାଣ୍ଡରେ "ଭଜୁକିନା ରାମ ନାମରେ ଗୋବିନ୍ଦ, ଭଜୁକିନା ରାମ ନାମ... । ଭଜି ନ ପାରିଲେ କୁଳ ଚନ୍ଦ୍ରମାରେ...  ବାନ୍ଧିନେବ କାଳ ଯମ" ବୋଲି ବୋଲି ଚାଲି ଥାଆନ୍ତି ସେତେବେଳେ ସବୁରି ଦରଜା ଆପେ ଆପେ ଖୋଲିଯାଏ । ମାଆମାନଙ୍କ ଆଖିରେ ଲୁହ ରହେନାହିଁ ।

ସଞ୍ଜ ଗଡ଼ି ରାତି ଦି' ଘଡ଼ି ହେଲାଣି । କଲରେଇ ଫୁଲ କୁଡ଼ିଆର ତାଟିଟି କିଳି ତେଲ ଦୀପଟି ଜାଳି ବସିଛି । ବାବା ତ ଏତେ ଡେରି କେବେ କରନ୍ତିନି । ଯୋଗୀଙ୍କୁ ସେ ବାବା ଡାକୁଚି । ତା ମନରେ ପାପ ଛୁଇଁଲାଣି । ଏତିକି ବେଳେ କଠଉ ଶବ୍ଦ ଶୁଣାଗଲା । ଝିଅ ଖୁସିରେ ତାଟି ଖୋଲିଦେଇ ବାହାରକୁ ଆସି ଦେଖିଲା, ବାବା ଆଜି ନୂତନିଆ ଗେରୁଆ ବସ୍ତ୍ର ପିନ୍ଧିଛନ୍ତି, ଚଦର ଘୋଡ଼େଇ ହେଇଛନ୍ତି । ଝୁଲାରେ କେତେ କ'ଣ ଭରି ରହିଚି । ତା' ପାଇଁ ଶାଢ଼ୀପଟା ବି କିଣିଛନ୍ତି । ଯୋଗୀ କହିଲେ, "ସେ ଆଜି ନଈ ପାରିହୋଇ ସାଧବ ଘର ଆଡ଼େ ଯାଇଥିଲେ । ଭାରି ବଡ଼ ଘର । ସାନ ବୋହୂ ଘରୁ ଭାର ଆସିଥିଲା, ଦେଇଛନ୍ତି । ତାଙ୍କର ତ ଧନ ଉଛୁଳୁଚି ହେଲେ ଚନ୍ଦ୍ର ଦିହରେ କଳଙ୍କ ପରି କାହାରି ମନରେ ସରାଗ ନାଇଁ । ତାଙ୍କର ଗୋଟିଏ ବୋଲି ଝିଅ ଏଇ ନଈରେ ବୁଡ଼ି ମରିଚି । ସେଇ ଝିଅଟିକୁ ଝୁରି ଝୁରି ମା'ଙ୍କଠେଇ ଆଉ ଅବସ୍ଥା ନାହିଁ । ମୋ ଝିଅ କଥା ଶୁଣି ତାଙ୍କ ଆଖିରେ ତ ଲୁହ ଆସିଗଲା । ବହୁତ କରି କହିଛନ୍ତି କାଲି ତତେ ସାଥିରେ ନେଇ ଯିବାକୁ । ତାଙ୍କର ତହୁଁ ବଳି, ତହୁଁ ବଳି ସାତ ପୁଅ । ଝିଅଟି ତ ଗଲା, ଝିଅ କଥାରେ ରଙ୍କ । ତୁ ମୋ ସାଙ୍ଗରେ ଯିବୁନା ମାଆ? ତତେ ଦେଖିଲେ ଭାରି ଖୁସି ହୋଇଯିବେ ।"

କଲରେଈ ଫୁଲର ମନ କ'ଣ ହଉଥିବ ବୁଝ । ତା ସମସ୍ତଙ୍କ କଥା ସବୁ ମନେ ପଡ଼ି ପେଟ ଘାଣ୍ଟି ହେଇଗଲା । ସେ କହିଲା, "ହଁ ବାବା, ମୁଁ ଯିବି । କୋଉ ଦିନରୁ ଜନ ମାନବଟିଏ ଦେଖିନାହିଁ, ତମ କଥା ଶୁଣି ମୋର ଭାରି ଇଛା ହେଲାଣି ଯିବାକୁ ।" ଭାବିଲା, ସାନ ଭାଇ ବିଭାହୋଇ ନୂଆ ବୋହୂ ଆସିଲାଣି । ମାଆ କଥା ସମସ୍ତଙ୍କ କଥା ମନେପଡ଼ି ଘରକୁ ଆସିବାକୁ ମନ ଭାରି ଉଚ୍ଚାଟ । ରାତି ପାହୁ ନ ପାହୁ ସେ ମାଆ ଦେଇଥିବା ଲୁଗାପଟା ପିନ୍ଧି ସଜ ହେଇ ବାହାରିଲା। ଘଡ଼ିକି ଘଡ଼ି ବାବାଙ୍କୁ ଡାକ ମାରୁଚି ଝଅଟ ଆସ ବାବା । ଝିଅ ଆଉ ଯୋଗୀ ଯାଇ ଡଙ୍ଗାରେ ବସିଲେ । ବାରିପାଖ ତୁଠ ପାଖରେ ପହଞ୍ଚିଲା ବେଳକୁ ତଥାପି ରାତି ଭଲକରି ପାଇନାହିଁ, ଜାଙ୍ଗୁଲୁ ଜାଙ୍ଗୁଲୁ ହଉଚି । ଡଙ୍ଗାରୁ ଓହ୍ଲାଇ ପଡ଼ିଲା ବେଳକୁ କଲରେଇ ଫୁଲ ମନ କ'ଣ ହେଉଥିବ ଭାବ । ଦଉଡ଼ି ଯିବାକୁ ମନ ହଉଚି । ହେଲେ ପାଦ ଚଳୁନି କାହିଁକି? ସତେଅବା ମାଟି ସାଥିରେ ଅଠାଦେଇ ପାଦକୁ କିଏ ଯୋଖି ଦେଇଚି ! ଗଛପତ୍ର, ବାଡ଼ିବଗିଚା, ପୋଖରୀ ସବୁ ଆଖି ପୂରେଇ ଦେଖୁଚି କଲରେଇ ଫୁଲ ।

ଯୋଗୀ ଯାଇ ଦୁଆରେ ଡାକ ଦେଲେ – "ଭଜୁକିନା ରାମ ନାମରେ ଗୋବିନ୍ଦ ଭଜୁକିନା ରାମ ନାମ । ଭଜି ନ ପାରିଲେ କୁଳ ଚନ୍ଦ୍ରମାରେ ବାନ୍ଧିନେବ..." । ପଦ ପୂରଣ ହେଇନାହିଁ, ଶେଷ ହେବାକୁ ଆହୁରି ବାକି ଅଛି । କବାଟ ଧଡ଼ କରି ଖୋଲିଗଲା, ମାଆ ବାହାରି ଆସିଲେ । ମାଆ

ବୋଲି ଡାକ ଦେଇ କଲରେଇ ଫୁଲ ଦଉଡ଼ି ଯାଇ ମାଆକୁ ଜାବୁଡ଼ି ଧରି ଭେଁ ଭେଁ କରି କାନ୍ଦି ଉଠିଲା। ମାଆ ତାକୁ କୋଳେଇ ଧରି ତା ଲୁହ ସଲବଲ କାନ୍ଦୁରା ମୁହଁକୁ ବାରବାର ପୋଛିଦେବାକୁ ଲାଗିଲେ । ଏତେବଡ଼ ପାଟିରେ ଡାକ ପକେଇଲେ, "ଆଲୋ ଆଲୋ ଧାଇଁ ପଡ଼ଲୋ, ଧାଇଁ ପଡ଼ । କିଏ ଆଇଲା ଦେଖ ଦେଖ । ଏତିକି କହୁ କହୁ ଏତେ ଖୁସିରେ ତାଙ୍କ ଗୋଡ଼ କୋହଳ ହେଇଗଲା । ସେ ତଳେ ପଡ଼ିବା ପୂର୍ବରୁ ସାଧବ ଆସି ପଛରୁ ଧରିନେଲେ । ତାଙ୍କ ପଛେ ଆସିଗଲେ ଆହୁରି ସମସ୍ତେ । ମୁହଁରେ ଗୋଲାପ ଜଳ ଛିଞ୍ଚା ପାଇ ସାଧବାଣୀ ଉଠି ଝିଅକୁ କୋଳକୁ ଟାଣି ଆଣି କେତେ ବାହୁନା ପକେଇଲେ, କେତେ ଗେଲ କଲେ । ଯୋଗୀ ବିଚରା ଭେଳକା ହେଇ ଚାହିଁ ରହିଛନ୍ତି ।

ସମସ୍ତେ ସାଷ୍ଟାଙ୍ଗ ହେବା ପରେ ଧୀରେ ଧୀରେ ସବୁକଥା ଜଣା ପଡ଼ିଲା । ଯୋଗୀଙ୍କୁ ଆଦର ଅଭ୍ୟର୍ଥନାର ସୀମା ରହିଲାନି । ରାଧାଗୋବିନ୍ଦଙ୍କ ଖଞ୍ଜାରେ ତାଙ୍କୁ ସଞ୍ଜା ବାଡ଼ି ଦେଇ ସବୁ ଦିନ ପାଇଁ ରଖିଦିଆଗଲା । ପାଦ ପୂଜା ପାଇଲେ । କେବଳ କୀର୍ତ୍ତନ–ଭଜନ–ଭୋଜନ ଛଡ଼ା ତାଙ୍କର ଆଉ କିଛି କାମ ନାଇଁ । ଠାକୁରଙ୍କ ପୂଜା ଆରାଧନାରେ ତାଙ୍କର ସମୟ ଅତି ଆନନ୍ଦରେ କଟିଲା । ବାରଦୁଆର ଶୁଣ୍ଠିପିଣ୍ଡା ହେବାକୁ ତାଙ୍କୁ ଆଉ ଛାଡ଼ି ଦିଆଗଲା ନାହିଁ ।

ଘରେ ବାହାରେ ଲକ୍ଷେ ଚନ୍ଦ୍ର ଉଦିଆ ଜଳି ଉଠିଲା, ଭୋଜି ଭାତର ଧୂମ ଉଡ଼ିଲା । ସାଧବ ଘର ପୂର୍ବ ପରି ପର୍ବପର୍ବାଣୀ, ଯାନିଯାତ୍ରା, ଉତ୍ସବ ମହୋତ୍ସବରେ ଝୁମିଗଲା । ଦିନେ କଲରେଇ ଫୁଲ ସାନ ଭାଉଜର ମୁହଁ ତୋଳି ଧରି ଗେଲ କରି କହିଲା, "ମୋ'ର କେଡ଼େ ସୁନ୍ଦରୀ ତରା ଭାଉଜଟି ଲୋ ।" ସାନ ଭାଉଜ ତା' ଗାଲକୁ ଟିପିଦେଇ କହିଲା, "ତୁମଠୁଁ କମ୍ ।"



# ଚାରି ସଙ୍ଗାତ କଥା

ସବୁଜ ସୁଷମା ଘେରା ପାଖାପାଖି ଦି'ଟା ଶୋଭାବନ୍ତ ରାଜ୍ୟ । ମାଣିକ୍ୟ ପାଟଣା, ମାଣିକ୍ୟ ପୁରୀ । ଦି ରାଜ୍ୟର ସୀମାରେ ମାଣିକେଶ୍ୱର – ମାଣିକେଶ୍ୱରୀ ହରପାର୍ବତୀ ପୀଠ । ଚାରି ପାଖରେ ପାହାଡ଼ ପର୍ବତ ଘେରା ଘଞ୍ଚ ଗହନ ବନ । କେଉଁ ପାହାଡ଼ରୁ କେଜାଣି ଝରି ଝରି ଆସୁଛି ମାଣିକ ଝର । କାଚକେନ୍ଦୁ ପରି ନିର୍ମଳ ଶୀତଳ ପାଣି କୁଳୁକୁଳୁ ଗୀତ ଗାଇଗାଇ କେତେ ବାଟ ଯାଏ ଲମ୍ବି ଲମ୍ବି ଯାଇଛି କେଜାଣି? ନାନା ପ୍ରକାରର ଜଣା ଅଜଣା ପକ୍ଷୀଙ୍କର କାକଳୀ, ଜଣା ଅଜଣା ଜାତି ଜାତିକା ଫୁଲର ବାସ୍ନା ଆମୋଦିତ କରେ । ଦୁଇ ରାଜ୍ୟବାସୀଙ୍କ ଭିତରେ କୌଣସି ବୈର ଭାବ ନ ଥାଏ । ମାଣିକ୍ୟ ପୁରୀର ରାଜା ମଣିଭଦ୍ର, ଆଉ ମାଣିକ ନଗରୀର ରାଜା ମଣିପଦ୍ମ । ଦୁଇଜଣଙ୍କ ମଧ୍ୟରେ ପ୍ରଗାଢ଼ ବନ୍ଧୁତ୍ୱ । ମଣିଭଦ୍ରଙ୍କର ଗୋଟିଏ ବୋଲି ସୁନାନାକୀ ଝିଅ ମଣିଦୀପା, ଅପୂର୍ବ ସୁନ୍ଦରୀ ଅଲିଅଳି ଲାବଣ୍ୟ ପ୍ରତିମା । ସେହିପରି ମଣିପଦ୍ମଙ୍କର ଗୋଟିଏ ବୋଲି ସୁକୁମାର ସୁଶୋଭିତ ଶୌର୍ଯ୍ୟ ପ୍ରତିମ କୁମର ମଣିରତ୍ନ । ଦୁଇ ରାଜ୍ୟର ରାଜକୁମାରୀ ରାଜକୁମାର ଚନ୍ଦ୍ରକଳା ପରି ଗେଲବସରରେ ବଢ଼ୁଥାନ୍ତି । ଦୁଇ ରାଜାଙ୍କ ବାହୁ ଛାୟାତଳେ, ପ୍ରଜାମାନେ ବଡ଼ ସୁଖଶାନ୍ତିରେ ଆନନ୍ଦରେ ଚଳୁଥାଆନ୍ତି ।

ରାଜାଝିଅ, ମନ୍ତ୍ରୀଝିଅ, କଟୁଆଳଝିଅ, ସାଧବଝିଅ ଚାରି ସଙ୍ଗାତ । ସେହିପରି ରାଜାପୁଅ, ମନ୍ତ୍ରୀପୁଅ, କଟୁଆଳପୁଅ, ସାଧବପୁଅ ଚାରି ସଙ୍ଗାତ । ଅଭେଦ୍ୟ ପ୍ରୀତି । ଇଆଠୁ ଝାଳ ଟୋପେ ବୋହିଲେ ତାଠୁ ରକ୍ତ ପୋଷେ ନିଗିଡ଼ି ଆସିଲା ପରି ଲାଗେ । ନିଇତି ଫୁଲସଞ୍ଜ ବେଳେ ଚାରିଟି କିଶୋରୀ ମାଣିକ ଝର ପାଖରେ ବାଲିରେ ଘର କରି ଖେଳନ୍ତି । ସମସ୍ତଙ୍କର ଅଲଗା ଅଲଗା ଘର ବଗିଚା । କେତେ ପ୍ରକାର ଫୁଲ ଦେଇ ସଜେଇଥାନ୍ତି । କନା କୁଣ୍ଢେଇ ବର କନ୍ୟା କରି, କୁନି ଖଟରେ ମଖମଲି ଶେଯ ମୁଚୁଳା କରି, କୁଣ୍ଢେଇ ଘର କରି ଖେଳୁଥାନ୍ତି । ବାଲିରେ ରନ୍ଧାବଢ଼ା କ୍ଷୀରୀ ପିଠା କରନ୍ତି । ସିଆଡୁ ଚାରିଟି କିଶୋର ଚାରିଟି ଘୋଡ଼ାରେ ଚଢ଼ି ରେସ୍ ରେସ୍ ଖେଳ ଖେଳି ମାଡ଼ି ଆସନ୍ତି । ରାଜାପୁଅ ରାଜାଝିଅ ଘର ଉପରେ, ମନ୍ତ୍ରୀପୁଅ ମନ୍ତ୍ରୀଝିଅ ଘର ଉପରେ, କଟୁଆଳପୁଅ କଟୁଆଳଝିଅର ଘର ଉପରେ, ସାଧବପୁଅ ସାଧବଝିଅର ଘର ଉପରେ ଘୋଡ଼ା ଚଢ଼େଇ ଦିଅନ୍ତି । ତାଙ୍କର ସବୁ ଘର ଭାଙ୍ଗି ଯାଏ । ଇତିରିବିତିରି ହୋଇଯାଏ ।

ରାଜାଝିଅକୁ ଛାଡ଼ିଦେଇ ଆଉ ଝିଅମାନେ ହସିହସି ଗଡ଼ିଯାଆନ୍ତି । ଫୁଲସବୁ ତାଙ୍କ ଉପରକୁ ଫୋପାଡ଼ି ଗୋଡ଼ିଆଗୋଡ଼ି ଖେଳନ୍ତି । ଝିଅମାନଙ୍କ ସାଙ୍ଗେ ପୁଅମାନେ ବି ଖୁବ୍ ହସନ୍ତି । ରାଜାଝିଅତ ଭାରି ଗୁମାନୀ, ଭାରି ଅଭିମାନୀ ସେ କିଛି କୁହେନି । ଗୋଟାପଣେ ନାଲି ପଡ଼ିଯାଏ । ରାଗରେ

ଘୁମୁରୁ ଥାଏ ଅବା । ରାଜାପୁଅର ମନ ଫିକା ପଡ଼ିଯାଏ । ଆଉ ସଙ୍ଗାତମାନେ ଖୁସିରେ କୁରୁଳୁ ଥିଲା ବେଳେ ବିଚରା ରାଜକୁଆଁରଟି ମନ ମାରି ଦେଇ ଲେଉଟେ । ତାର କଅଁଳ ମନଟି ଦୁଃଖରେ ଚୁର୍‌ଚୁର୍ ହୋଇଯାଏ । ସେ ଅନ୍ୟମନସ୍କ ହୁଏ । କାଲିକି ସେ ଆଉ କେବେହେଲେ ଇଆଡ଼େ ମୁହାଁଇବ ନାହିଁ ବୋଲି ମନସ୍ଥ କରେ । ହେଲେ ଠିକ୍ ଫୁଲ ସଞ୍ଜ ବେଳେ ତା'ର ମାନ ଅଭିମାନ କୁଆଡ଼େ ପାଣି ଫାଟିଯାଏ । ରାଜା ଝିଅର ମଧୁରିଆ ଗୁଲୁଗୁଲିଆ ସୁନ୍ଦରିଆ ମୁହଁଟିକୁ ଦେଖିବାକୁ ମନ ଉଚ୍ଚାଟ ହୁଏ । ସଜବାଜ ହୋଇ ଆଗ ଘୋଡ଼ାରେ ବସେ । ଅନ୍ୟମାନେ ପଛେ ପଛେ ଗୋଡ଼ାନ୍ତି ।

ସେମାନେ ଏବେ ଧୂଳିଖେଳ ସୀମା ଡେଇଁ ସାରିଥିଲେ । ଆଜି ରାଜାପୁଅର କିନ୍ତୁ ମନେ ହେଉଥିଲା ଏ ଖେଳ ଯେମିତି କେତେ କେଜାଣି କୋଉକାଳରୁ ଚାଲି ଆସିଥିଲା, ଏବେ ବି ଚାଲିଛି । ସେମାନେ ସବୁ ବଡ଼ ହୋଇ ସାରିଥିଲେ, ପାଠ ଶାଠ ପଢ଼ି ଯୋଗ୍ୟ ହୋଇ ସାରିଥିଲେ । ସେ ଦିନର କଥା ଆଉ ରାଜା ଝିଅର ଜମାରୁ ମନେ ନ ଥିଲା । ଅତୀତର କିଛି ଦୃଶ୍ୟ ଝାପ୍‌ସା ଝାପ୍‌ସା ହୋଇ କେବେ କେମିତି ମନେ ପଡ଼ି ଯାଉଥିଲା । ସୁନା ପାତିଆ ପରି ପାତଳ, ଚକ୍‌ଚକ୍ ଧଳା ଘୋଡ଼ା ପିଠିରେ ବସି କିଏ ଜଣେ ତା ଆଖି ସାମ୍ନାରେ ଏପାରୁ ସେପାର ଯାଏ ଝଲସି ଯାଉଥିଲା, ବଡ଼ ଅସ୍ପଷ୍ଟ ଭାବରେ । କାରଣ ସବୁକିଛି ବୁଝିବା ଆଗରୁ ସେ ତା ମାମୁ ଘରକୁ ପାଠ ପଢ଼ିବା ପାଇଁ ଚାଲି ଯାଇଥିଲା ।

ଭଗବାନଙ୍କର ବଡ଼ ବିଚିତ୍ର ଲୀଳା । ଦୁଇ ରାଜାଙ୍କ ଭିତରେ ତ ବଡ଼ ପ୍ରଗାଢ଼ ବନ୍ଧୁତ୍ୱ ଥିଲା, ତେଣୁ ସେଇ ରାଜାପୁଅ ସହିତ ସେହି ରାଜାଝିଅର ବିବାହ ସମ୍ବନ୍ଧ ପଡ଼ିଲା । ସେ ମନ୍ତ୍ରୀପୁଅ, କଟୁଆଳପୁଅ, ସାଧବପୁଅ ସହିତ ସେଇ ମନ୍ତ୍ରୀଝିଅ, କଟୁଆଳଝିଅ, ସାଧବଝିଅର ବିବାହ ଠିକଣା ହୋଇଗଲା । ଚାରି ସଙ୍ଗାତ, କେହି କାହାକୁ ଛାଡ଼ିବେନି, ଘଡ଼ିଏ ନଦେଖିଲେ ଅନ୍ଧ । ଏମିତି ଦିନେ ବଡ଼ ଜାକ ଜମକରେ, ବଡ଼ ସମାରୋହରେ, ବଡ଼ ଧୂମ ଧାମରେ ବାହାଘର ହୋଇଗଲା । ଏକା ସାଙ୍ଗରେ ଚାରିଟି ସବାରୀ ସହିତ ଚାରିଟି ପାଲିଙ୍କୀ ଉଠିଲା, ହୁଁ ମେରା ଭାଇରେ... ଖବର ଖାଇରେ... ଡାକରେ ରାଜଦାଣ୍ଡ ଉଚ୍ଛୁଳି ପଡ଼ିଲା । ଦୁଇ ପାଖରୁ, ଛାତ ଉପରୁ, ଚାଳ ଉପରୁ, ପାଚିରି ଉପରୁ, ଗଛ ଉପରୁ ଫୁଲସବୁ ବର୍ଷା ହେଉଥିଲା । ରାସ୍ତା ଘାଟରେ ସତେ ଅବା ଫୁଲର ଗାଲିଚା ବିଛା ହୋଇ ଚାଲିଛି ! ଅତର ବର୍ଷା ହେଉଥିଲା, ମହକରେ ମହକି ଉଠୁଥିଲା ରାଜଦାଣ୍ଡ, ଚଉଦିଗ । ଭାରଥୋରର ତ ସୀମା ନ ଥିଲା । ବଡ଼ ଚହଚହ ମହମହରେ ବରକନ୍ୟାମାନେ ଆପଣା ଉଆସକୁ ବିଜେ କଲେ ।

ସାରା ରାଜ୍ୟ ସଜା ହୋଇ ଆୟ ଅଳଙ୍କାରରେ ମଣ୍ଡଣି ଗୋଟିଏ କନ୍ୟା ପରି ଶୋଭାକର ଦେଖାଯାଉଥିଲା । ତା'ରି ମଥାମଣି ପରି କୋଟି କାମକରା ଚନ୍ଦନର ଦୁଆର ବନ୍ଧକୁ ରୁପାରେ ଜାଲିକାମକରା କବାଟ ଓ ମଣି ମୁକ୍ତା ଝରା ଲାଗିଥିବା ଚନ୍ଦନ ଚଉଁରୀ ଭିତରେ ଚାରି ପିଲାଙ୍କର ରହଣୀ ବ୍ୟବସ୍ଥା ହୋଇଥିଲା । ଚାରି ପାଖରେ ଫୁଲ ଆଉ ଫୁଲ, ଫୁଲର ରଙ୍ଗ, ଫୁଲର ବାସ୍ନା ମହମହ । ଫୁଲ ବଗିଚା ମଝିରେ ପ୍ରବାଳର ବନ୍ଧଦିଆ ଚନ୍ଦନ ପୋଖରୀ । କୋଠରୀମାନଙ୍କରେ ଗଜଦନ୍ତ ପଲଙ୍କ ଉପରେ ଧୋବ ଫରଫର ଦୁଧ ଫେଣ ପରି କଅଁଳିଆ ଶେଯ, ତକିଆ । ଅପୂର୍ବ ସାଜସଜ୍ଜା । ଗୋଟିଏ ପାଖକୁ ସ୍ଫଟିକର ପିଢ଼ି ଉପରେ ମାଣିକ୍ୟର ରୁଖା, ତା ଉପରେ ସୁବର୍ଣ୍ଣର ସାତ

ଦୀପଟି ଜଳୁଛି । ଆକାଶରେ ଗୋଟା ଜହ୍ନ । ରାଣୀ ଫୁଲ ପରି ବିଛଡ଼ି ହୋଇ ପଡ଼ିଛି ଜୋଛନା ।

ହଠାତ ରାଜଜେମାର ସବୁଠୁ ପ୍ରିୟ ସଖୀ ମନ୍ତ୍ରୀଝିଅଟି ଝରକାରେ ଚାହିଁ ଦେଖିଲା ତା'ର ପ୍ରିୟତମା ସଜନୀଟି ଚନ୍ଦନ ପୋଖରୀର ଚଉତରା ଉପରେ ମନ ମାରି ବସିଛି । ନିରେଖି ଚାହିଁଲା ଆଖି ପୋଛି ଲାଗିଛି । କାନ୍ଦୁଛି କି? ସିଏ କି ଆଉ ସମ୍ଭାଳି ହୋଇ ରହିପାରେ? ଦଉଡ଼ି ଆସିଲା । ସଙ୍ଗାତ ଆଖିରୁ ପାଟ ପାଟ ହୋଇ ଲୁହ ବୋହି ଯାଉଛି । ପଦ୍ମଫୁଲ ପରି ସୁନ୍ଦର ମୁହଁଟି ଝାଉଁଳି ନୀଳ କଇଁ ପରି ଦେଖା ଯାଉଛି । କଳାକାଠ ପଡ଼ି ଗଲାଣି । ସେ ପାଖରେ ବସି ତା କୋଳକୁ ଆଉଜେଇ ଆଣିଲା । ପାଟ ପଣତରେ ମୁହଁ ପୋଛି ପକାଇଲା । ପଚାରିଲା, "କଥା କ'ଣ ସଙ୍ଗାତ? ଆଜି ପରା ଦିନରେ ତମର ଇଏ କି ଦଶା?"

ରାଜଜେମାର ଲୁହ ଆହୁରି ଆହୁରି ବେଗରେ ଉଚ୍ଛୁଳି ଝରି ଆସୁଛି, ବନ୍ଧ ବାଡ଼ ମାନୁନି । କୋହ ଉପରେ କୋହ ଉଠୁଛି । ମନ୍ତ୍ରୀଝିଅ କେତେ ବୁଝାଇଲା । ଆଉଁଶା ଆଉଁଶି କରି ଯେତେକ ସାନ୍ତ୍ୱନା ଦେଲା । ପାଣିହାତ କରି ମୁହଁ ପୋଛି ଦେଲା । ରାଜା ଝିଅ କୋହ ସମ୍ଭାଳି ସବୁ କଥା ସଙ୍ଗାତକୁ କହିଲା, "ରାଜାପୁଅ ଘର ଭିତରକୁ ଆସିଲା । ତାକୁ ପଦଟିଏ କଥା କହି ନାହିଁ । ଥରଟିଏ ମାତ୍ର ଚାହିଁ ଦେଇ ଚୁପ୍‌ଚାପ୍ କର ବୁଲେଇ ଶୋଇ ପଡ଼ିଲା ବି ।" ମନ୍ତ୍ରୀଝିଅ କହିଲା, "ଏଇ କଥା ତ? ଦେଖିବା କେତେ ସମୟ ସିଏ ଏମିତି ଚୁପ୍‌ଚାପ୍ ରହିପାରିବେ । ତମେ କ'ଣ କରିବ କି, ତାଙ୍କ ବିଛଣା ଆଡ଼କୁ ହାତ ଗୋଡ଼ ପକାଇ ଶୋଇପଡ଼ିବ । ସେ କର ତ ଲେଉଟାଇବେ । ଦେଖିବା କ'ଣ ହଉଚି ।" ରାଜାଝିଅ ଜମାରୁ ରାଜି ହେଲାନି । ମନ୍ତ୍ରୀଝିଅ ତାକୁ ବହୁତ ବୁଝାଇଲା – ହାତ ମୁହଁ ଧୋଇ ଦେଲା । ତା କାନରେ କ'ଣ ମନ୍ତ୍ର ଫୋଡ଼ିଲା କେଜାଣି ସେ ପୁଣି ତାଜା ହୋଇ ଶୋଇଲା ଘରକୁ ଗଲା । ସଙ୍ଗାତ କହିଲା ପରି ରାଜାପୁଅ ଆଡ଼କୁ ହାତ ଗୋଡ଼ ପକାଇ ଶୋଇପଡ଼ିଲା ।

ସେ ଯେମିତି ଶୋଇପଡ଼ିଛି ରାଜାପୁଅ ସେମିତି ଝଅଟ କରି ଉଠି ବସିପଡ଼ିଲା । ରାଜାଝିଅ ଆଡ଼କୁ ଚାହିଁ କହିଲା,

"ଅକୂଅ ଅତୁଠ ପାଣି ଯେମିତି
ତୁ ଲୋ କନିଆ ଦିଶୁ ସେମିତି"

ରାଜା ଝିଅ କିଛି କହିଲାନି, ହାତ ଗୋଡ଼ କାଢ଼ିଲାନି । ପୁଣି ରାଜା ପୁଅ କହିଲା,

"ଡାଳ ଭାଙ୍ଗି କନିଆ ଲୋ
ମଧୁ ବନ ତୋଟା,
କେତେ ଆଲୋ ରାଜ ଜେମା
କାଢୁଅଛୁ ଛଟା ।"

ତଥାପି ରାଜାଝିଅ କିଛି କହିଲାନି କି ହାତ ଗୋଡ଼ କାଢ଼ିଲାନି, ସେଠୁ ରାଜାପୁଅ ପୁଣି କହିଲା,

"ବିଚିତ୍ର ପୋଖରୀ ଲୋ ଚିତିରାଙ୍ଗୀ କୂଅ,
କେଡ଼େ ଗେଲ ବସର ତୁ ରାଜାଘର ଝିଅ ।"

ସେଇଠୁ ରାଜାଝିଅ ବିକଳରେ କଇଁ କଇଁ କାନ୍ଦି କାନ୍ଦି ବାହାରକୁ ଚାଲି ଆସିଲା। ରାଜା ପୁଅ ସେଇଠି ସେମିତି ଦାରୁଭୂତ ମୁରାରି ପରି ବସି ରହିଥିଲା।

ରାଜା ଝିଅ ଆସିଲା ତ ଆସିଲା... । କୋଉଠି ଆଉ ଦଣ୍ଡେ ନ ରହି, ନ ବସି, ସିଧା ଚାଲିବାକୁ ଲାଗିଲା। ମନ୍ତ୍ରୀ ଝିଅ ତ କ'ଣ ହଉଚି ଜାଣିବା ପାଇଁ ଛକି ରହିଥିଲା। ସେ ସଙ୍ଗେ ସଙ୍ଗେ ଦଉଡ଼ି ସଙ୍ଗାତ ପାଖକୁ ଚାଲିଆସିଲା। ତାକୁ ଦେଖି ଆଉ ସବୁ ସଙ୍ଗାତମାନେ ବାହାରି ଆସିଲେ। "ସିଆଡ଼େ କୁଆଡ଼େ ଯାଉଛ ସଙ୍ଗାତ", ସମସ୍ତେ ମିଶି ପଚାରିଲେ। ସେତେବେଳେ ରାଜଜେମା ଆଉ କାନ୍ଦୁ ନ ଥିଲା, ତା ମୁହଁରେ ଦୃଢ଼ ସଂକଳ୍ପର ଛାପ। ରାଜାପୁଅ ଯାହା ଯାହା କହିଛି, ସେ ତାକୁସବୁ ଦେଖିବାକୁ ଯିବ। ସେ ଆଗକୁ ଆଗକୁ ଚାଲିଲା, ସାଙ୍ଗମାନେ ଯେତେ ବୁଝାଇଲେ କିଛି ବୁଝିଲାନି କି ଥମିଲାନି। ଆଗକୁ ଆଗକୁ ମାଡ଼ି ଚାଲିଲା। ରାଜାଝିଅ ତ, ଭାରି ଅଝଟି, ଅଝର ଝଟି।

ସାଙ୍ଗମାନେ କହିଲେ, "ତା ହେଲେ ଆମେ ବି ତମରି ସାଙ୍ଗରେ ଯିବୁ। ଆମେ ତ ଜୀବନ ଦିଆଦିଇ ସାଙ୍ଗ। ଆଜି ଯାଏ ତ ଗୋଟିଏ ଫୁଲରେ ଫୁଟୁଥିଲେ, ଗୋଟିଏ ଦୀପରେ ଜଳୁଥିଲେ। ଏକାଠି ହସୁଥିଲେ, ଏକାଠି ବସୁଥିଲେ। ତମରି ଜୀବନ ଯଦି ଅସାର ହେଲା, ଆଉ ଆମର ଥାଏ କ'ଣ? ଚାରି ସଙ୍ଗାତ ଏକା ସାଥିରେ ବାହାରିଲେ। ନିଶୂନ ରାତି... କାଉ କୋଇଲିର ଠାବ ନାହିଁ। ନିଶା ସାଇଁ ସାଇଁ ଗରଜୁଛି। ଆକାଶରେ ଗୋଟା ଜହ୍ନ। ରାଣି ଫୁଲ ପରି ଜୋଛନା ଝରୁଛି। ଚାରିଆଡ଼ ଉଜ୍ଜ୍ୱଳ ଦେଖାଯାଉଛି। ଚାରି ସଙ୍ଗାତ ଚାଲିଛନ୍ତି ତ ଚାଲିଛନ୍ତି, ବାଟ ସରୁନି। କାହାରି ମୁହଁରେ ଭାଷା ନାହିଁ, କେବଳ ଜହ୍ନ ସାଥିରେ ସାଥିରେ ଚାଲିଛି।

ସେମାନେ ଶେଷରେ ଯାଇ ଅକୂଅ ଅତୁଠ ପାଖରେ ପହଞ୍ଚିଲେ। କାରଣ ରାଜାପୁଅ ପ୍ରଥମେ ଏଇ କଥାଟି କହିଥିଲା। ଅକୂଅ ପାଖକୁ ଯାଇ ଦେଖିଲେ ସେଥିରେ କିଛି ପାଣି ନାହିଁ। ଅଧା ପୋତି ହୋଇ ପଡ଼ିଛି। ଭିତରେ କଣ୍ଟା ଝଣ୍ଟା ଅଳିଆ ଅସନା ଭର୍ତ୍ତି ହୋଇଛି। ଗାଡ଼ିଆର ତୁଠ ନାଇଁ। ଅତୁଠ ପାଖରେ ବାଟ କାହୁଁ ଆସିବ? ଅଇଁଠା ପତର, ଖଲି, ଦାନ୍ତକାଠି, ଛିଣ୍ଡା ଛିଣ୍ଡି କାଗଜ, କନା ଗଦା ହେଇ ପଡ଼ିଛି। ଅଳିଆ ଅବରଜିଆ, ଦୁର୍ଗନ୍ଧରେ ନାକ ଫାଟି ପଡୁଛି। ତାକୁ ଦେଖି ରାଜାଝିଅ କହିଲା, "ହଁ, ରାଜାପୁଅକୁ ମୁଁ ଏମିତି ଅସନା ଅପରଛନିଆ ଦୁଶିଲି।" ଆଉ କାହାରି ପାଟିରେ କଥା ନାଇଁ।

ରାଜାଝିଅ ଆଗକୁ ଚାଲିଲା। ସଙ୍ଗାତମାନେ ସାଥିରେ। ମଧୁବନ ତୋଟା ଦେଖିଲା ବେଳକୁ ମାଙ୍କଡ଼ମାନେ ଡାଳ ପତ୍ର ଭାଙ୍ଗି ଛିନ୍‌ଛତ୍ର କରି ପକାଇଛନ୍ତି। ସତେ ଅବା ଗୋଟେ ବଡ଼ ଝଡ଼ ହୋଇ ଗଛ ସବୁ ଅଧା ଉପୁଡ଼ି ଭଙ୍ଗାଭଙ୍ଗି ହୋଇ ପଡ଼ିଛି। ଅସ୍ତବ୍ୟସ୍ତ ହୋଇ ପଡ଼ିଛି ମଧୁବନ ତୋଟା, ନାରଖାର ହୋଇଯାଇଛି ସବୁ। ସେଇଠୁ ରାଜା ଝିଅ ଗୋଟିଏ ଗଛରୁ ଡାଳ ଟିକିଏ ଭାଙ୍ଗି ଚାଖିଲା – ଛିଃ ଛିଃ... ଆଃ ଥୁ ଥୁ କରି ଫୋପାଡ଼ି ଦେଲା। ପିତାରେ ପାଟି ଦି ଖଣ୍ଡ ହୋଇଗଲା। ସତେ ଅବା ମଥାରୁ କେଶ ଉପୁଡ଼ି ଯିବ। ରାଜା ଝିଅ କହିଲା, "ହଁ! ରାଜାପୁଅକୁ ମୁଁ ଏମିତି ଛିଃ... ଛିଃ... କର ବିଷ ପିତା ଲାଗିଲି! ଇଏ ରାଜାପୁଅର ଦ୍ୱିତୀୟ ପଦ ଥିଲା।

ରାଜାପୁଅର ଶେଷ ପଦଟିର କଥା ଦେଖିବାକୁ ରାଜାଝିଅ ଆଗକୁ ଆଗକୁ ଚାଲିଲା। ସଙ୍ଗାତମାନେ ଗୋଡ଼େଇ ଗଲେ। ଶେଷରେ ସେମାନେ ବିଚିତ୍ର ପୋଖରୀ ଆଉ ଚିତିରାଙ୍ଗୀ କୂଅ ପାଖରେ ପହଞ୍ଚିଲେ। ବିଚିତ୍ର ପୋଖରୀ ଦେଖି ପିଲାମାନଙ୍କର ଦିହ ଶୀତେଇ ଉଠିଲା। ଛେଲା

ଛେଲା ମାଂସ ରକ୍ତ, ଖଣ୍ଡିଆଖଣ୍ଡି ହାତ ଗୋଡ଼ ସବୁ ପଡ଼ିଛି। ପୋଖରୀ ଉବୁଟୁବୁ ହେଉଛି। ଟକମକ ହୋଇ ଖାଲି ଫୁଟୁଛି। କି ଭୟଙ୍କର ଦୃଶ୍ୟ! ମୁଣ୍ଡ ବୁଲେଇ ଯାଉଛି, ଅଇ ଉଠୁଚି। ତାକୁ ଦେଖି ଡରରେ ପିଲାଏ ସେଇଠୁ ଦଉଡ଼ି ଦଉଡ଼ି ପଳେଇ ଆସିଲେ। ଚିତିରାଙ୍ଗୀ କୂଅ ପାଖରେ ପହଞ୍ଚି ଝିଅମାନେ ଆଶ୍ଚର୍ଯ୍ୟ ଚକିତ ହୋଇ ଚାହିଁ ରହିଲେ। ଚିତିରାଙ୍ଗୀ କୂଅ ଭିତରୁ କଳା ଧୂଆଁ ବାହାରି ବାହାରି ଚାରିଆଡ଼େ ଛାଇ ଯାଇଛି। ଘୁ ଘୁ ଶବ୍ଦରେ କାନ ଅତଡ଼ା ପଡ଼ିଯାଉଛି, ହାତ ଗୋଡ଼ ଝିମ୍‌ଝିମ୍ ହେଇଯାଉଛି, ସତେ କି ଝିମା ମାରି ନେବ।

ରାଜାଝିଅ କୂଅକୁ ଏକ ଲୟରେ ଦଣ୍ଡେ ଚାହିଁ ରହିଲା, "କହିଲା ହଁ ରାଜା ପୁଅକୁ ମୋର ସାର ଧାର ଜୀବନ ଏମିତି ହୀନିମାନ ଲାଗିଲା। ଏ ଛାର ଜୀବନରେ ଆଉ କି ଆଶା?" ଇଆ କହି ସେଇ ରାଜାଝିଅ ଚିତିରାଙ୍ଗୀ କୂଅକୁ ଡେଇଁ ପଡ଼ିଲା। କୂଅରୁ କଳା ଧୂଆଁର କୁଣ୍ଡଳି ବୁଲିବୁଲି ଆହୁରି ଜୋରରେ ବାହାରିବାକୁ ଲାଗିଲା। ଘୁ ଘୁ ଗର୍ଜନ ଦୁଇଗୁଣ ହେଲା। ଏ କଥା ଏତେ ଚଞ୍ଚଳ ଘଟିଗଲା ଯେ ପ୍ରଥମେ ତ ସଙ୍ଗାତମାନେ କିଛି ବୁଝିପାରିଲେ ନାହିଁ। କାଠ ପରି ଚାହିଁ ରହିଲେ। ପୁଣି ଯେତେବେଳେ ସବୁ କଥା ଭାବି ପାରିଲେ, ଜ୍ଞାନ ଫେରିଲା, ମନ୍ତ୍ରୀଝିଅ କହିଲା, "ମୋର ତାରପରା ସଙ୍ଗାତ ଗଲା, ମୋର ଆଉ ଦିହ ଧରି ରହିବାରେ କି ଲାଭ?" ସିଏ ବି ସେ କୂଅକୁ ଡେଇଁଲା। ଅତି ଦୁଃଖରେ କଟୁଆଳଝିଅ ଓ ସାଧବଝିଅ ମଧ୍ୟ ସେଇ କୂଅକୁ ଡେଇଁ ପଡ଼ିଲେ। ଭଉଁରି ଖାଇ ଖାଇ କଳା କହ୍ଳଳ ଧୂଆଁ ସବୁ ଆକାଶ ଛାଇଗଲା। ଆହୁରି ଦଶ ଗୁଣରେ ଘୁ ଘୁ ଗର୍ଜନ ଉଠି ସାରା ବସୁଧା କମ୍ପି ଉଠିଲା। ଗଛରୁ ପତ୍ର ଫୁଲ ସବୁ ଝଡ଼ିଗଲା, ନିମିଷକେ ସତେ ଯେମିତି ମହାପ୍ରଳୟ ଘୋଟିଗଲା।

ଇଆଡ଼େ କ'ଣ ହେଇଚି ନା, ମନ୍ତ୍ରୀପୁଅ ଅନେକ ସମୟ ଅପେକ୍ଷା କଲା ପରେ ମନ୍ତ୍ରୀଝିଅ ଆସିଲା ନାହିଁ। ସେ ବାହାରକୁ ଆସି ଦେଖିଲା ଚନ୍ଦନ ପୋଖରୀର ଚଉତରାରେ ରାଜାପୁଅ ବସିଛି। ଆଉ ଦୁଇ ସଙ୍ଗାତ ତା ପାଖରେ ପଥର ମୂର୍ତ୍ତି ପରି ଠିଆ ହୋଇଛନ୍ତି। କଥା କ'ଣ? କନିଆମାନେ ଗଲେ କୁଆଡ଼େ? ବୁଝୁ ବୁଝୁ ରାଜା ପୁଅ ଏମିତି ସବୁ କଥା କହିଛି। ମନ୍ତ୍ରୀ ପୁଅ କହିଲା, "ସଙ୍ଗାତ, କୋଉ ପିଲାଦିନର କଥା ତମେ ଆଜିଯାଏ ମନରେ ଗଣ୍ଠିକରି ଧରି ରଖି ବସିଥିଲ? ଆହା! ରାଜାଝିଅ ମନରେ କେତେ ଦୁଃଖ ନ ହେଇଥିବ ଟି? ସେ ନିଶ୍ଚୟ ସେଇ ଜାଗା ସବୁ ଦେଖିବାକୁ ଯାଇଥିବ। ଆଉ ତା'ର ପ୍ରାଣ ଦିଆଦିଇ ସାଙ୍ଗମାନେ ତା ସାଙ୍ଗରେ ଯାଇଥିବେ। ଚାଲ, ଆମେ ସବୁ ସେଇଆଡ଼େ ତାଙ୍କୁ ଖୋଜିବାକୁ ଯିବା।"

ଚାରି ସଙ୍ଗାତ, ଚାରି ସଙ୍ଗାତଙ୍କୁ ଖୋଜିବାକୁ ବାହାରି ପଡ଼ିଲେ। କାହାରି ମୁହଁରେ କଥା ନ ଥିଲା। ସମସ୍ତଙ୍କ ହୃଦୟ ଦୁଃଖରେ ଫାଟି ଯାଉଥିଲା। ନିଃଶବ୍ଦ ରାତିରେ ସେମାନଙ୍କ ପାଦ ଶବ୍ଦ ଛଡ଼ା ଆଉ କାହାରିକୁ କିଛି ଶୁଣା ଯାଉ ନ ଥିଲା। ଜହ୍ନ ସେଇମିତି ତାଙ୍କ ସାଥିରେ ସାଥିରେ ଚାଲୁଥିଲା। ଏମାନେ ପ୍ରଥମେ ଯାଇ ଅକୂଅ ଅତୁଠ ପାଖରେ ପହଞ୍ଚିଲେ। ନିରେଖି ଚାହିଁଲେ। ନିର୍ମଳ ଚନ୍ଦ୍ର କିରଣରେ ସେମାନେ ଛୋଟ ଛୋଟ ଚାରି ଯୋଡ଼ା ପାଦ ଚିହ୍ନ ଦେଖିଲେ। ଯାହା ଆଗକୁ ଯାଇ ପଛକୁ ଲେଉଟିଥିଲା। ସେମାନେ କହିଲେ, "ଆହା! ସେମାନେ ତ ନିଶ୍ଚୟ ଏଇଠିକୁ ଆସିଥିଲେ।" ତା ପରେ ମଧୁବନରେ ମଧ୍ୟ ଯିବା ଆଉ ଫେରିବାର ପାଦ ଚିହ୍ନ ସ୍ପଷ୍ଟ ବାରି ହେଇ ଯାଉଥିଲା। ସବା ଶେଷରେ ସେମାନେ ବିଚିତ୍ର ପୋଖରୀ ଚିତିରାଙ୍ଗୀ କୂଅ ପାଖରେ ପହଞ୍ଚିଲେ।

ସେଠାର ଅବସ୍ଥା ଦେଖି ଜୀବ ଛାଡ଼ିଗଲା ପରି ଲାଗୁଥିଲା । ସେମାନେ କଥାହେଲେ, ଆଜି କାହିଁକି ଏ ଭୟଙ୍କର ଗର୍ଜନ? ବିଚିତ୍ର ପୋଖରୀରେ ପାଣି ଟକମକ ଫୁଟୁଛି । ଏମିତି କାହିଁକି? ଘଟଣା କ'ଣ? ସେମାନେ ଦେଖିଲେ ଚିତା ଆଙ୍କିଲା ପରି ଚାରିଯୋଡ଼ା ପାଦ ଚିହ୍ନ କୂଅ ପାଖକୁ ଯାଇଛି, ହେଲେ ଆଉ ଫେରିବାର ପାଦ ଚିହ୍ନ ନାହିଁ । ସେମାନଙ୍କର ଆଉ କିଛି ଅବୁଝା ରହିଲା ନାହିଁ । ସେମାନଙ୍କର ପାଦ ତଳୁ ସତେ ଅବା ମାଟି ଖସିଗଲା ପରି ଲାଗିଲା, ସତେ ଅବା ଛାତିରେ ଦୁକୁ ଦୁକି ବନ୍ଦ ହୋଇଯିବ କି? ହଠାତ୍ ସାଧବପୁଅ ମୁଣ୍ଡକୁ ହାତରେ ବାଡ଼େଇ ବାଡ଼େଇ ଜୋରରେ କାନ୍ଦି ଉଠିଲା, ଆଉ କୂଅକୁ ଡେଇଁ ପଡ଼ିଲା । କଟୁଆଳପୁଅ ଥାଇ ବୋଇଲା, "ଏତେ ସୁନ୍ଦର ପ୍ରତିମା, ଯୋଗୀ ଦେଖିଲେ ମୋହ ଯିବ । ବଇରି ଦେଖିଲେ ଛ' ଘଡ଼ି ଚାହିଁବ । ଯାହାକୁ ନେଇ ସଂସାର ଗଢ଼ିବାକୁ ଏତେ ଆଶା ବାନ୍ଧିଥିଲି ସିଏ ତ ମୋ କପାଳକୁ ସହିଲାନି । ଏ ବିଅର୍ଥ ଜୀବନ ଧିକ", ଇଆ କହି ସିଏ କୂଅକୁ ଡେଇଁ ପଡ଼ିଲା । ମନ୍ତ୍ରୀପୁଅ କୂଅକୁ ଡେଇଁ ପଡ଼ିଲା ଆହା ଆହା କହି । ରାଜାପୁଅ ଗମ୍ଭୀର ଭାବରେ କହିଲା, ସମସ୍ତେ ମଲେ ସ୍ତ୍ରୀମାନଙ୍କ ପାଇଁ, ମୁଁ ମରୁଛି ମୋ ସଙ୍ଗାତମାନଙ୍କ ପାଇଁ । ସିଏ ବି ସେଇ କୂଅକୁ ଡେଇଁ ପଡ଼ିଲା । କୂଅ ଆହୁରି ଶହେ ଗୁଣରେ ଗର୍ଜୁଥିଲା, କଳା ଧୂଆଁ ହଜାର ଗୁଣରେ ଉଠି ଆକାଶକୁ ଘୋଡ଼ାଇ ପକାଇଲା । ଜହ୍ନ ତା ଭିତରେ କୋଉଠି ଲୁଚିଗଲା ।

ଏଇଠିତ କଥା ସରି ଯାଇଥାନ୍ତା, ହେଲେ ବିଧାତାର ବିଧାନ ବଡ଼ ବିଚିତ୍ର । ଏଇଠି କଥା ସରିଲାନି । ତେଣେ କ'ଣ ହୋଇଚି ନା ସବୁ ଦିନ ପରି ଈଶ୍ୱର ପାର୍ବତୀ ବିଶ୍ୱ ବ୍ରହ୍ମାଣ୍ଡ ଭ୍ରମଣ କରିବାକୁ ବୃଷଭ ଉପରେ ବସି ଉଡ଼ିଉଡ଼ି ଆସୁଥିଲେ । ଠିକ୍ ସେଇଠି ପହଞ୍ଚିଲା ବେଳକୁ ବୃଷଭ ଥମିଗଲା । ଧୂଆଁରେ ନାକ ରୁନ୍ଧିହୋଇଗଲା ପରି ଲାଗିଲା, ଘୁ ଘୁ ଗର୍ଜନରେ କାନ ଅତଡ଼ା ପଡ଼ି ଯାଉଚି । ମା' ପାର୍ବତୀ କହିଲେ, "ହେଇଟି ଶୁଣୁଚ ଟି, ସବୁଦିନ ତ ଏଇବାଟେ ଯାଏ, ଆଜି ଇଏ କି ବିପରୀତ କଥା? କଥା କ'ଣ ମତେ କୁହ ।" ଈଶ୍ୱର କହିଲେ, "ତମର ଏହି ଦୁର୍ଗୁଣ ଗଲାନି । ସବୁ କଥାରେ ଗୋଟିଏ ଖିଅ କାଢ଼ି ବସିବ । ଆମେ ତ ଆମ ବାଟରେ ଯିବା, ଏଥିରୁ କି ପାଇବା? ତେଣେ ରାତି ପାହିଯିବ ।" ପାର୍ବତୀ କହିଲେ, "ତମେ ନ କହିଲେ ମୁଁ ଏଠୁ ଠୁଳେ ଘୁଞ୍ଚିବିନି ।"

ଈଶ୍ୱର ତ ତ୍ରିକାଳଦର୍ଶୀ, ତ୍ରିପୁର କଥା ତାଙ୍କୁ ଜଣା । ଅଗତ୍ୟା ମାତାଙ୍କ ଆଗରେ ସବୁ ଘଟଣା ଠିକେ ଠିକେ କହିଦେଲେ । ଶେଷରେ କହିଲେ, "ହଉ ହେଲା ତ? ଏଥର ତ ଶାନ୍ତି?" ମା କହିଲେ, "ଶାନ୍ତି ଆଉ ହେଲି କୋଉଠି? ଆମେ ବାପ ମାଆ ହୋଇ ଯଦି କାହାରି ଦୁଃଖ ଦୂର ନ କରିପାରିବା ତା ହେଲେ ତମ ଯଶ ବାନାରେ କଳଙ୍କ ଲାଗିବନି? ତମେ ତ ତ୍ରାଣକର୍ତ୍ତା, ହର୍ତ୍ତା କର୍ତ୍ତା ଦଇବ ବିଧାତା । ହେ, ମହାପ୍ରଭୁ ହେ ଆଶୁତୋଷ, ହେ ତ୍ରୈୟମ୍ବକ, ଏ ପିଲାଏ କଢ଼ିରୁ ନ ଫୁଟୁଣୁ ମଉଳି ଧୂଳିରେ ଲୋଟିଲେ । ତାଙ୍କୁ ରକ୍ଷାକର । ତାଙ୍କୁ ଉଦ୍ଧାର କର ପ୍ରଭୁ । ତୁମକୁ ମୋ ରାଣ ତାଙ୍କୁ ଜୀବଦାନ ଦିଅ, ଆମକୁ ଦର୍ଶନର ଫଳ ପାଆନ୍ତୁ । ଶାନ୍ତିରେ ରହନ୍ତୁ ।"

ଦୟାମୟୀ ମାଆଙ୍କ ଆଖିରେ ଲୁହ ଦେଖି ପ୍ରଭୁ କି ସମ୍ଭଳା ପଡ଼ିବେ? କହିଲେ, "ସବୁ ମାଆଙ୍କର ଇଏ ଗୋଟିଏ ବଦ ଅଭ୍ୟାସ, ପିଲାଙ୍କ ଦୁଃଖ ସହି ପାରନ୍ତିନି । ତମକୁ ମାଆ ଜନ୍ମ କିଏ ଦେଲା କେଜାଣି? ହଉ ବୃଷଭ ତଳକୁ ଓହ୍ଲାଏ, ଆଜି ମୋତେ ନଡ଼ାଙ୍ଗ ଫଟାଙ୍ଗ ନ କରି ଛାଡ଼ିବେନି । "ବୃଷଭ ପିଠିରୁ ଦୁହେଁ କୂଅ ପାଖରେ ଓହ୍ଲାଇଲେ । ପ୍ରଭୁ ସେଇଠୁ କ'ଣ କଲେ ନା, ତଳୁ ଧୂଳି ଟିକିଏ

ମନ୍ତୁରେଇ କୂଅ ଭିତରକୁ ପକେଇ ଦେଲେ। ଚାହୁଁ ଚାହୁଁ କୂଅର ସେ ଧୂଆଁ, ସେ ଗର୍ଜନ କୁଆଡେ ଚାଲିଗଲା, ଆଠଟିଯାକ ଶବ ଆସି କୂଅ ବାହାରେ। ଦେଖୁ ଦେଖୁ ଈଶ୍ୱର ପାର୍ବତୀ ଥୁରୁଥୁରୁ ବୁଢ଼ା ବୁଢ଼ୀ ଯୋଡ଼ିଏ ହୋଇଗଲେ। ବୁଢ଼ା ଫୁଲ ପାଣି କରି ମୁଠିଏ ଲେଖାଏଁ ସଭିଙ୍କ ଉପରେ ଛିଞ୍ଚିଦେଲେ।

ପିଲାଏ ଝାଡ଼ି ଝୁଡ଼ି ହୋଇ ଉଠି ବସିଲେ। ସେମାନେ ବୁଝିପାରିଲେନି ଯେ ସମସ୍ତେ ତ କୂଅରେ ପଡ଼ି ମରିଥିଲେ, ଆଉ ବଞ୍ଚିଲେ କେମିତି? ଏ ବୁଢ଼ା ବୁଢ଼ୀ କିଏ? ତାଙ୍କୁ ଦେଖି ମନ ପ୍ରାଣରେ ଅପୂର୍ବ ସ୍ପନ୍ଦନ। ସେମାନେ ତାଙ୍କର ପାଦତଳେ ଲମ୍ବ ଲମ୍ବ ହୋଇ ପଡ଼ିଗଲେ। ବୁଢ଼ା ବୁଢ଼ୀ କହିଲେ, "ଉଠ ଉଠ ପିଲେ, ଆନନ୍ଦରେ ଘର ସଂସାର କର।" ସେମାନେ ଚାହିଁଲା ବେଳକୁ ବୃଷଭ ଉପରେ ବସି ଈଶ୍ୱର ପାର୍ବତୀ ଦୁହେଁ ଉପରକୁ ଉପରକୁ ଉଠି କୁଆଡ଼େ ଉଭାନ୍ ହୋଇଗଲେ। ଉପରୁ କେତେଗୁଡ଼ିଏ ଅଚିହ୍ନା ଫୁଲ ତଳେ ବିଛାଡ଼ି ହୋଇ ପଡୁଥିଲା। ମହକରେ ମହକି ଉଠୁଥିଲା ସାରା ରାଇଜ। ସେମାନେ ମୁଠିଏ ମୁଠିଏ ଫୁଲ ସାଉଁଟି କରି ଧରିଥିଲେ, ସେମାନଙ୍କୁ କିଛି ବୁଝାଯାଉ ନ ଥିଲା। କିଛି ଜଣା ଯାଉ ନ ଥିଲା କାରଣ ସେମାନେ ବର୍ତ୍ତମାନ ନିଜ ନିଜ କୋଠରୀରେ ଥିଲେ। କିଛି ସମୟ ପୂର୍ବରୁ କ'ଣ ସବୁ ଘଟି ଯାଇଥିଲା ସେମାନେ ସବୁ ଭୁଲି ସାରିଥିଲେ। ସେମାନେ ବଡ଼ ଆନନ୍ଦରେ ଘର ସଂସାର କଲେ।

ଏବେ ବି ତମେ ଯାଅ ଦେଖିବ ତାଙ୍କ ଫୁଲ ଦାନୀରେ ଅମଉଳା ଫୁଲସବୁ ସେଇମିତି ତାଜା ହୋଇ ସଜା ହୋଇ ରହିଛି। ବାସ ଚହଟୁଛି।



# କାଚଖୁମ୍ବ କଥା

ସାତ ରାଜାର ରାଜ୍ୟ ସୀମାରେ, ସାତ ଯୋଜନ ବ୍ୟାପୀ ସାତ ସାଗରର ସାତ ପରାର୍ଦ୍ଧ ଢେଉ ଆର ପାରିରେ, ସାତ ସ୍ୱର୍ଗର ସବା ଉପର ସ୍ତରର ସେପାରିରେ, ଗନ୍ଧର୍ବ ରାଜ୍ୟ ଅମରାବତୀ ପୁରରେ ରାଜୁତି କରନ୍ତି ଗନ୍ଧର୍ବ ରାଜ ଚିତ୍ରସେନ। ଚିତ୍ର ପ୍ରତିମା ପରି ଅନିନ୍ଦ୍ୟ ସୁନ୍ଦରୀ ସାତଟି ଝିଅ ତାଙ୍କର ଥିଲେ। ସମସ୍ତେ ସମସ୍ତଙ୍କୁ ବଳି ସୁନ୍ଦରୀ ସତ, ହେଲେ ସବା ସାନ ଝିଅଟି ଥିଲା ଅସାମାନ୍ୟ ସୁନ୍ଦରୀ। ସ୍ୱର୍ଗର ରାଜା ଇନ୍ଦ୍ରଙ୍କର ପତ୍ନୀ ସଚୀଙ୍କ ପରି। ସହଜେ ତ ଗନ୍ଧର୍ବ ରାଜ୍ୟ, ନୃତ୍ୟ ସଙ୍ଗୀତ, ବାଜାବଜନ୍ତରୀ, ହାସ୍ୟ କୋଳାହଳ ଆଉ ଆନନ୍ଦ ଉତ୍ସବ ସବୁବେଳେ ଲାଗି ରହିଥାଏ। ରାଜକନ୍ୟାମାନେ ସବୁବେଳେ ନାଚି ଖେଳି ବୁଲି ବେଳ କଟାନ୍ତି। ତାଙ୍କୁ କୋଉ କଥା ଅବା ଅପୂରୁବ? ଗନ୍ଧର୍ବ ରାଜ୍ୟରେ ଯାହା ଚାହିଁଲେ ତ ସଙ୍ଗେ ସଙ୍ଗେ ମିଳିଯାଏ। ଇନ୍ଦ୍ରଙ୍କର ସୁଧର୍ମା ସଭାରେ ଯେଉଁମାନଙ୍କର ଆତଯାତ ତାଙ୍କୁ ସବୁ କୋଉକଥା ଅବା ଦୁର୍ଲ୍ଲଭ? ହେଲେ ଗୋଟିଏ କଥା ପାଇଁ ତାଙ୍କ ମନରେ ଖଟକା ଥାଏ – ମର୍ତ୍ତ୍ୟ ଦେଖିବାର ଇଚ୍ଛା। ହେଲେ ମର୍ତ୍ତ୍ୟକୁ ଆସିବା ତ ଦୂରର କଥା, ସେଇ କଥା ମନରେ ଆଣିବାକୁ ମଧ୍ୟ ବଡ଼ ବଡ଼ିଆଙ୍କର ବାରଣ। କିନ୍ତୁ ମନ ଏମିତି ଉପାଦାନରେ ଗଢ଼ା ଯେ ଯେଉଁଥିପାଇଁ ଯେତେ ମନା, ସେଇଥିପାଇଁ ସେତେ ମନ। ବହି ଆସିଲା ଧୀର ପାଣିକୁ ବନ୍ଧ ବନ୍ଧେଇ ଦେଲେ ସେ ଉଚ୍ଛୁଳି କେମିତି ଡେଇଁ ଆସେ?

ଦିନେ ପିଲାଏ ଆନନ୍ଦରେ ପୁଚି, ଠିଆପୁଚି, ଚକାଚକା ଭଉଁରୀ, ଗଉଡ଼ ଗଉଡ଼ ଭାଇ, ତାତି ତାତି ପୁରି, ଉଦୁଉଦୁମା ତାଳ ଗୁଟୁମା, ଇଟିକିଲି ମିଟିକିଲି ଏମିତି ଏମିତି କେତେ କ'ଣ ଖେଳ ପରିଷ୍କାର ଜହ୍ନ ଆଲୁଅରେ ଖେଳୁଥିଲେ। ଗୋଟା ଜହ୍ନ ନୀଳ ଆକାଶରେ କେତେ ସୁନ୍ଦର ଦେଖାଯାଉଚି! ହଠାତ୍ ଜଣକ ମନରେ ଆସିଲା, ଏ ସୁନ୍ଦର ଜହ୍ନଟି କୋଉଠୁ ବାହାରିଚି? ତା'ର ଆରମ୍ଭ କୋଉଠୁ? ଚାଲ ଦେଖିବା। ଆଉ କିଛି କଥା ନାହିଁ, ଯେମିତି ମନ ସେମିତି କାମ। ସଙ୍ଗେ ସଙ୍ଗେ ବାହାରି ପଡ଼ିଲେ ଜହ୍ନର ଜନ୍ମସ୍ଥାନ ଦେଖି। କିରଣ ସିଡ଼ିରେ ପିଲାମାନେ ଓହ୍ଲାଇ ଆସିଲେ ତଳକୁ ତଳକୁ। ଓହ୍ଲେଇ ଆସି ପହଞ୍ଚିଲେ ପୃଥିବୀର ଗୋଟିଏ ରାଜ୍ୟରେ। ସେମାନେ ମୁହଁ ଚୁହାଁ ଚୁହିଁ ହେଲେ, ଆରେ ଏଇତ ମର୍ତ୍ତ୍ୟ ଭୁବନ। କି ସୁନ୍ଦର ନୂଆ ଜାଗା – ସବୁ ନୂଆ ନୂଆ ଲାଗୁଚି। ଗଛଲତା, ପାହାଡ଼ପର୍ବତ, ନଦୀନାଳ, ଫୁଲଫଳ ଜାତି ଜାତିକା ସବୁ ସୁନ୍ଦର। ଭାରି ସୁନ୍ଦର, ସବୁ ସୁନ୍ଦର। ସବୁ ନୂଆ ନୂଆ ଲାଗୁଚି, ସବୁ ଅପୂର୍ବ ଛବିଟି ପରି। ପିଲାଏ ଯେତେ ଦେଖୁଛନ୍ତି ସେତେ ଅପରୂପ ଲାଗୁଚି।

ଦେଖି ଦେଖି ଚାଲି ଚାଲି, ଚାଲ ଚାଲ ହୋଇ ଅନେକ ବାଟ ଚାଲି ଆସିଲେଣି। ଆଖି ପୂରୁନି କି ମନ ପୂରୁନି। ଜହ୍ନ ସେଇମିତି ତାଙ୍କ ସାଥିରେ ସାଥିରେ ଚାଲିଚି। ତା'ର ଆରମ୍ଭ କୋଉଠି, ଶେଷ

କୋଉଠି ଜମାରୁ ତ ଜଣା ପଡୁନି । ଖିଆଲ ନାହିଁ ରାତି ଆସି ପାହା ପାହା ହେଲାଣି । ଏଥର ଫେରିବା କଥା ମନକୁ ଆସିଲା ବେଳକୁ କିରଣ ସିଡ଼ି ଫିକା ଫିକା ଦେଖାହେଲାଣି । ଦେ ଦଉଡ଼ ଦଉଡ଼ । ପିଲାମାନେ ତରତରରେ ଗୋଡ଼ିଆଗୋଡ଼ି ହେଇ, ତା ଉପରେ ତା ଉପରେ ଚଢ଼ିଚଢ଼ି ଉପରକୁ ଉପରକୁ ଉଠି ଯାଉଛନ୍ତି । ବିଚରା ଛୋଟ ଗନ୍ଧର୍ବ ରାଜକନ୍ୟାଟି ତଳେ ରହିଯାଇଚି ଏକାକିନୀ । ଏ ପ୍ରତିଯୋଗିତାରେ ସିଏ ଉଠିପାରିନାହିଁ । ଉଠିପାରିଲା ନାହିଁ । କ'ଣ କରିବ ସିଏ, କୁଆଡ଼ିକି ଯିବ? ଚାରିଆଡ଼କୁ ଖାଲି ବୁଲୁବୁଲୁ କରି ଚାହୁଁଚି । ତା ମୁହଁରେ କିଛି ଭାବ ନାହିଁ । ଓଠରେ କିଛି ଭାଷା ନାହିଁ । ଫରଚା ହେଇ ହେଇ ଆସୁଛି । କାଉ କା କା କଲେଣି । ନାନା ଜାତିର ପକ୍ଷୀ କିଚିରି ମିଚିରି ହୋଇ ଉଡ଼ି ଉଡ଼ି କେମିତି ମନ ଭୁଲାଣିଆ ସଙ୍ଗୀତ ସୃଷ୍ଟି କରୁଚନ୍ତି । ଏପରି ମାଧୁର୍ଯ୍ୟଭରା ସଙ୍ଗୀତ ତାଙ୍କ ଗନ୍ଧର୍ବ ରାଜ୍ୟର ସଙ୍ଗୀତ ଠାରୁ ସମ୍ପୂର୍ଣ୍ଣ ଭିନ୍ନ । ସାନ ଗନ୍ଧର୍ବ କନ୍ୟାଟି ବିଭୋର ହେଇ ଯାଇଚି ଏଇ ସାଙ୍ଗୀତିକ ମୂର୍ଚ୍ଛନାରେ ।

ହଠାତ୍ ତା'ର ଅନ୍ୟମନସ୍କଭାବ ତୁଟିଗଲା, ସେ ଜ୍ଞାନ ଫେରିପାଇଲା । ଜହ୍ନ କେବେଠୁ ଲୁଚି ଗଲାଣି । ସେ ଆକାଶକୁ ଚାହିଁଲା ପୂର୍ବ ଆକାଶ ଲାଲ ହେଇ ଆସୁଛି । ସୁନ୍ଦରା ଫାଟୁଚି, ଏଇନେ ମଣିଷମାନେ ଉଠିଯିବେ । ସେ କ'ଣ କରିବ ସତେ? ଆଗକୁ ଚାହିଁଲା, ଆଗରେ ଗୋଟିଏ ବିରାଟ ମହଲ ପରି ଦେଖା ଯାଉଚି । କି' ସୁନ୍ଦର କାଚର ନଅର । ସେ ଦଉଡ଼ି ଦଉଡ଼ି ଫାଟକ ଭିତରେ ପଶିଲା । ଯୋଗକୁ ଦରୱାନ ପାଖକୁ ଆଖକୁ କୋଉଠିକୁ ଯାଇଚି ହୁଏତ । ଦରଜା ଖୋଲା ଅଛି । କୋଟିକାମକରା ରଙ୍ଗ ବିରଙ୍ଗ ବିରାଟ କାଚର ଖୁମ୍ବ ସାତଟି ଗୋଟିଏ ଗୋଲ ମଣ୍ଡପଟିରେ ଘେରା ହେଲା ପରି ରହିଚି । ଉପରେ ଚନ୍ଦ୍ରାତପ ପରି ରହିଚି କାଚର ଝିଲିମିଲି କାରୁକାର୍ଯ୍ୟ ମଣ୍ଡିତ ଚାନ୍ଦୁଆ, ତା ଦେହରେ ଲାଗିଚି ଝଲକା ଝୁମ୍ପା, ଝାଡ଼ ଆଲୁଅ ସବୁ । ଝିଅଟି ଦଣ୍ଡେ ଆଶ୍ଚର୍ଯ୍ୟ ହେଇ ଚାହିଁ ରହିଲା । ଏଇନେ ନଅରର ଭିତର ଦରଜା ଖୋଲା ହେବାର ଶବ୍ଦ ଶୁଣାଗଲାଣି । ଚମକି ପଡ଼ି ଝିଅଟି ଗୋଟିଏ ଖୁମ୍ବ ପାଖକୁ ଯାଇ କହିଲା, "ଆରେ କାଚଖୁମ୍ବ ତୁ ଯଦି ସତ୍ୟ ହେଇଥିବୁ ତେବେ ଫାଟିଯିବୁ, ମୁଁ ପଶିଯିବି, ତୁ ପୁଣି ବୁଜି ହେଇଯିବୁ ।" ସତକୁ ସତ କାଚ ଖୁମ୍ବ ଫାଟିଗଲା । ଝିଅଟି ତା ଭିତରେ ପଶିଗଲା । ସିଏ ପୁଣି ବୁଜି ହେଇଗଲା । ତରତରରେ ଆସୁ ଆସୁ ଝିଅଟିର ପାଦରୁ ନୂପୁର ପଟେ କେତେବେଳେ ଖସି ପଡ଼ିଯାଇଚି । ସେ ଜାଣିବାକୁ ନାଇଁ । ଜାଲିକାମ କରା କାଚଖୁମ୍ବଟି ବେଶ୍ ପ୍ରଶସ୍ତ । ଜଣେ ଲୋକ ଆରାମରେ ବସି, ଆଉଜି ଶୋଇ ମଧ୍ୟ ପାରିବ ।

ଫରଚା ହେଇଗଲା । ଗହଳ ଚହଳ ଆରମ୍ଭ ହୋଇଗଲାଣି । ଉଆସର ଭାଟ ଆସି ମଣିମା ମଣିମା ଡାକ ଦେଲାଣି । ଚାକର ନୌକର ଦାସୀ ପରିବାରି ସବୁ ଧାଁ ଧପଡ଼ କରି କାମରେ ଲାଗିଗଲେଣି । ରାଜାଙ୍କର ଗୋଟିଏ ବୋଲି ପୁଅ । ଯୁବରାଜ କାଳି ଅନ୍ଧାରୁ ଉଠନ୍ତି । ଭ୍ରମଣରେ ଯିବା ପୂର୍ବରୁ ଏଇଠି ବସି ଦନ୍ତମାର୍ଜନ କରନ୍ତି । ସେଇ କାଚଖୁମ୍ବ ପାଖରେ । ଟହଲିଆ ଆସି ସୁବର୍ଣ୍ଣ ଗଡୁରେ ପାଣି ଦାନ୍ତକାଠି ରଖିଦେଇ ଗଲାଣି । ଯୁବରାଜ ଆସି ରୁପା ପିଢ଼ାରେ ବସିଲେ । ଅକସ୍ମାତ ଚକିତ ହୋଇ କିଛି ସମୟ ଚାହିଁରହି ନୂପୁରଟିକୁ ଟୋକି ଧରିଲେ । ଚାହିଁଚନ୍ତି ତ, ଚାହିଁ ରହିଚନ୍ତି । ଆଖିରେ ପଲକ ପଡୁନାହିଁ । ସେ ମନେ ମନେ ଭାବିବାକୁ ଲାଗିଲେ, ଅଳଙ୍କାରଟି ତ ଏତେ ସୁନ୍ଦର, ଆଉ ଯାକୁ ଯେ ପିନ୍ଧିଥିବ ସେ କେତେ ସୁନ୍ଦରୀ ନ ହୋଇଥିବ ! ଯାକୁ କିଏ ଲଗେଇଥିଲା ? ମନରେ

ଆଶା ହେଲା, କାଲି ଉଚ୍ଛୁର ରାତିରେ କିଏ କାଳେ ଉଆସକୁ କୁଣିଆ ଆସିଛନ୍ତି । ତାଙ୍କୁ ଦେଖିବାକୁ ମନ ଉଚ୍ଛନ୍ନ ହେଲାଣି । ତାଙ୍କ ହୃଦୟର ସ୍ପନ୍ଦନ ବଢ଼ି ବଢ଼ି ଯାଉଚି ।

ସେ ନୂପୁରଟି ଧରି ଅନ୍ତପୁରକୁ ଆସିଲେ । ରାଣୀ ମାତାଙ୍କୁ ପଚାରିଲେ । ରାଣୀ ମାଆଙ୍କ ସହିତ ସମସ୍ତେ ନାସ୍ତିବାଣୀ ଶୁଣାଇଲେ । ମାତ୍ର ସେଇ ଅପୂରୁବ ଚିଜଟି ଯିଏ ଦେଖିଲା ସିଏ ଆଶ୍ଚର୍ଯ୍ୟ ମଣୁଥିଲା । କାହାର ଆଖି ଉଠିଲା ବେଳୁ କେହି ମଧ୍ୟ ଏପରି ଅଳଙ୍କାର କେବେ ଦେଖି ନାହାନ୍ତି । ସୁବର୍ଣ୍ଣ ଡାଲାରେ କାଇଁଚ ଚାଙ୍ଗୁଡ଼ି, ତା' ଉପରେ ନୂପୁରଟି ରଖି ଡଗର ଡେଙ୍ଗୁରା ବଜାଇ ରାଇଜସାରା ବୁଲାଇଲା । କାହା ପାଦର ଏଇ ନୂପୁରଟି? କିନ୍ତୁ ସବୁଆଡ଼ୁ ନିରାଶ ଖବର ମିଳିଲା । ରାଜାପୁଅ ହତାଶ ହେଲେ । ନିଶ୍ୱାସ ଉପରେ ନିଶ୍ୱାସ, ଘନ ଘନ ଦୀର୍ଘଶ୍ୱାସ ପଡ଼ିବାକୁ ଲାଗିଲେ । ନୂପୁରଟିକୁ ସେ କ୍ଷଣେ ହେଲେ ନିଜଠାରୁ ଅଲଗା କରୁ ନ ଥିଲେ । ବାରମ୍ବାର ସେଇଟିକୁ ଦେଖୁଥିଲେ ନିରେଖି ନିରେଖି । ଆଶ୍ଚର୍ଯ୍ୟର କଥା, ସେଇ ଅଜଣା ଅଶୁଣା ଅଦେଖା ଝିଅଟି ପାଇଁ, ଯିଏ ସେଇ ଅବିଶ୍ୱାସ୍ୟ ନୂପୁର ପିନ୍ଧିଥିବ, ତା'ରି ପାଇଁ ଅବିଶ୍ରାନ୍ତ ଝୁରି ହେଲେ । ଖାଇବା ପିଇବା ସଜହେବା ହସିବା ଖେଳିବା କଥା କହିବା, ଏମିତି କି ସବୁଠାରୁ ପ୍ରିୟ ଘୋଡ଼ା ଚଢ଼ିବା, ସବୁ ଭୁଲିଗଲେ । ଆଖିରେ ନିଦ ନାଇଁ, ସ୍ୱପ୍ନ ନାଇଁ, ଆନନ୍ଦ ନାଇଁ । ଦିହ କ୍ଷୀଣରୁ କ୍ଷୀଣ ହେବାକୁ ଲାଗିଲା । କୋଟିକାମକରା ଗଜଦନ୍ତ ପଲଙ୍କରେ ଦୁଗ୍ଧ ଫେନ ଶଯ୍ୟା ଉପରେ ସେ ସେଇମିତି ପଡ଼ି ରହିଲେ । ଛାତି ଉପରେ ନୂପୁର ପଟିକ ପଡ଼ିରହିଥିଲା । ପ୍ରାଣ ଆସି ନାକ ଦଣ୍ଡିରେ ରହିଲାଣି । ରାଜାରାଣୀ ମଧ୍ୟ ଆଧାର ଛାଡ଼ି ଦେଲେଣି । ଏକୋଇର ବଳା ବିଶିକେଶନ ପାଇଁ ଠାକୁରଙ୍କ ପାଖରେ ଅଖଣ୍ଡ ଦୀପ ଜଳେଇ ରାଜାରାଣୀ ସେଇଠି ପଡ଼ିରହିଥାଆନ୍ତି । ଆଖିରୁ ଲୁହ ଶୁଖୁ ନ ଥାଏ । ରାଜ୍ୟ ସାରା ପୂଜା ପୂଜି ଲାଗିଥାଏ ।

ରାଜକୁମାରଙ୍କର ଗୋଟିଏ ବୋଲି ଭଉଣୀ । ଦୂର ରାଇଜରେ ବାହା । ତାଙ୍କ ପାଖକୁ ବେଉରା ଗଲା । କୁଅଁରମଣି ଆଉ ହେବେନି । ବସିଲା ଠାବରୁ ଉଠିଆସ । ଜେମା ଦେଈ ନ ଖାଇ ନ ପିଇ ବସିଲାଠାରୁ ଉଠି ଆସିଲେ । ସବାରୀ ଉଠିଲା ବହୁତ ଦୂର ବାଟ । ବେହେରା ଗଉଡ଼ମାନେ 'ହୁଁ ମେରା ଭାଇରେ ଖବର ଖାଇରେ' ଡାକ ମାରି, ସବାରୀ ଉଠେଇ ଦଉଡ଼ ଲଗେଇଲେ । ପଛରେ ଧାଡ଼ି ଲାଗିଛି ଶଗଡ଼ ଲୋକ ଲସ୍କର । ବୋହୂ ମଣିମା ବାପଘରକୁ ବିଜେ କରୁଛନ୍ତି ବୋଲି କଥା । ସିଏ ଦୁଃଖର ହଉକି ଖୁସିର ହଉ । ବେଳ ଆସି ରତ ରତ ହେଲାଣି, ବେହେରା ଗଉଡ଼ମାନେ, ସେମିତି ସମସ୍ତେ ଅଖିଆ ଅପିଆ ଥକି ପଡ଼ିଲେଣି । କାଳି ଅନ୍ଧାରୁ ଯିଏ ଯିମିତିରେ ଥିଲେ ଉଠି ଆସିଛନ୍ତି । ଗହଳିଆ ଆମ୍ବ ତୋଟା ଦେଖି ସବାରୀ ଭିଡ଼ାହେଲା, ଶଗଡ ଠାକିଲା । ଗୋଲ କରି ମୁଣ୍ଡଳି କାଟିଲା ପରି ଶଗଡ଼ ସବୁ ଡେରାହୋଇ ସେଥିରେ ପାଲ, ଚଦର, ଘେରାହେଲା । ଗୋଡ଼ ହାତ ଆଉ କାହାରି ଚଳିବାକୁ ନାଇଁ । କ'ଣ ମୁଠେ ମୁଠେ ତୁଣ୍ଡରେ ଦେଇ ପାଣି ଦି ଢୋକ ନ ପିଇଲେ ନ ହୁଏ ।

ଶଗଡ଼ରେ ହଣ୍ଡା ହାଣ୍ଡି, ଜାଗା ବାସନ, ଚାଉଳ ଡାଲି, ପନିକି ପରିବା ସବୁ ଆସିଚି । ଦଣ୍ଡକ ଭିତରେ ଚୁଲି ଖୋଳାହୋଇ ପଥର ବସାଗଲା, ଜାଳ ଆଣି ଚୁଲିରେ ନିଆଁ ଧରାଗଲା । ଦି ଚୁଲିରେ ପାଣି ବସି ଚାଉଳ ଡାଲି ପଡ଼ି ଭାତ ଡାଲମା ବସିଗଲାଣି । ଶଗଡ଼ିଆ ଡାଲମା ହବ । ପାଲ ବିଛା ହେଇ ପରିବା କଟା ଲାଗିଚି । ଅଦାଲଙ୍କା ଛେଚା ହଉଚି । ଠାଆକେ ନଡ଼ିଆ କୋରା ଲାଗିଚି, ଗୋଲ

ମରିଚ ଗୁଣ୍ଡ ହଉଚି । ଶଗଡ଼ିଆ ଡ଼ାଲମା ଯିଏ ଥରେ ଖାଇଚି, ତା ଜୀବନ ସାରା ଭୁଲିବନି । ଭାତ ଫୁଟିଲାଣି, ଡାଲି ଫୁଟୁଚି । ଏଇନେ ପରିବା ପଡ଼ିବ – ସବୁ ସଜ ହେଇଗଲାଣି । ଜେମାମଣି ବାହାରକୁ ବାହାରିଲେ । ଗୋଡ଼ହାତ ଲାଗିଗଲାଣି । ଗୋଟିଏ ଝଙ୍କାଳିଆ ଆମ୍ବଗଛ ତଳ ସଫାହେଇ ଗାଲିଚା ବିଛାହେଇଚି । ବୋହୂମଣିମା ସେଇଠି ବସି ଗୋଡ଼ ହାତ ଟିକିଏ ସଳଖିବେ । ଅଣ୍ଟା ସିଧା କରିବେ । ମୁହଁରେ ପାଣି ଟୋପାଏ ନ ଦେଇ, ବସିଲା ଠାରୁ ସେଇମିତି ଉଠି ଆସିଚନ୍ତି । ଏକୋଇରବଳା ବିଶିକେଶନ ଭାଇଟି ପାଇଁ । ଧାଇ ବେହେରା ବହୁତ ବଳାବଳି କରି ଟିକିଏ ଜଳଯୋଗ କରିବେ ବୋଲି କ'ଣ ଟିକିଏ ରେକାବିରେ ଆଣି ପାଖରେ ଥୋଇଚି ।

ତେନ୍ତୁଳି ଗଛ ଉପରେ କିଚିରି ମିଚିରି ଶୁଭିଲା – କୁନି ଚଢ଼େଇ ଛୁଆଙ୍କର ଚିଁ ଚିଆଁ । ଫୁଲ ଶାଗୁଣା ଉଡ଼ି ଉଡ଼ି ଆସି ବସାରେ ପଶୁଚି, ସେଇଥିପାଇଁ ମା'କୁ ଦେଖି ଛୁଆଙ୍କର ଏମିତି ହର୍ଷଧ୍ୱନୀ । ସଞ୍ଜ ଢଳିଗଲାଣି, ଜାଲୁ ଜାଲୁଆ ମାଛି ଅନ୍ଧାରରେ କିଛି ଦେଖା ଯାଉନି । ଗଛ ଉପରୁ ରାବ ଶୁଣି ଜେମା କାନ ଡେରିଲେ । ଯୋଗକୁ ସେ ପକ୍ଷୀ ଚଢ଼େଇଙ୍କ ଭାଷା ବୁଝିପାରନ୍ତି । ହୁଏତ ପିଲାଏ ମାଆକୁ ଘେରି ଯାଇଥିବେ । ଜେମା ଧ୍ୟାନ ଦେଇ ଶୁଣୁଚନ୍ତି । କଥା ଶୁଣିଲା ବେଳକୁ ତାଙ୍କ ଦେହରେ ଶୀତ କଣ୍ଟା ମାରି ଯାଉଚି । ଫୁଲ ଶାଗୁଣା ଛୁଆମାନେ ମାଆକୁ କହୁଚନ୍ତି, "ଆମ ପାଇଁ ଆଜି କଅଣ ଖାଇବାକୁ ଆଣିଚୁ ମାଆ ? ଆଜି କ'ଣ ଏତେ ଡେରି କରିଦେଲୁ ? ଭାରି ଭୋକ କଲାଣି ।"

ମାଆ କହୁଚି, "ମରିଯାଉଥାଏଁରେ, ମୋ ଧନମାନେରେ, ଆଜି କିଛି ପାଇନି । ସେଇ ରାଜା ବଗିଚାରେ ଅନିସା କରି କରି ଏତେ ଡେରି ହେଇଗଲା ପରା । କିଛି ଆଣି ପାରିଲିନି ସିନା, ହେଲେ ବଢ଼ିଆ ଖବର ଆଣିଚି । କିଛି ମନ ଊଣା କରନି । ଟିକିଏ ସତାରି ଯାଆ । ଏଇ ଭୋର ଭୋରରୁ ରାଜାପୁଅ ମରିବ । ତାକୁ ଖାଇବ । ଭାରି ସୁଆଦିଆ ଲାଗିବ । କେତେ ବଢ଼ିଆ ବଢ଼ିଆ ଭଲ ଭଲ ଚିଜ ସିଏ ଖାଇଚି ।" ଫୁଲ ଶାଗୁଣା ପିଲାଏ ବିକଳ ହୋଇ କହିଲେ, "ଆହାଃ, ଆହାଃ, ଆମେ ପଛେ ନ ଖାଇଲେ ନ ଖାଉ, ରାଜାପୁଅଟି ନ ମରୁ । କେତେ ଭଲ କେତେ ସୁନା ସେ ରାଜାପୁଅ । ଆମେ ପରା ଦେଖିଚୁ, ସାଙ୍ଗମାନଙ୍କ ସାଥିରେ ଘୋଡ଼ାରେ ଚଢ଼ି ଏଇ ତୋଟାରେ ବଣ ଭୋଜି କରିବାକୁ ଆସିଥିଲେ । କି ସୁନ୍ଦର ରୂପ । ପୁଣି କେମିତି ଦୟାବନ୍ତ, କୁନି ଛୁଆଟି କହିଲା । ମତେ ଏଇ ପେଟୁଆ ଖେଞ୍ଚି ଦେଲା ଯେ ମୁଁ ତଳେ ପଡ଼ିଗଲି । ରାଜାପୁଅ ପରା ମତେ କେତେ ଆଉଁଶି ପାଉଁଶି କେତେ ଗେଲ କରି ତା ଲୋକ ଲଗେଇ ଏଇ ବସାରେ ପୁଣି ଭାରି ଯତ୍ନରେ ରଖିଦେଲା । ଆହା ତାର ଜୀଇଁବାର କ'ଣ ଆଉ କିଛି ଉପାୟ ନାହିଁ?"

ଜେମାମଣିର କାନ ଖୋଲା ଖୋଲା ହେଇଗଲା । ସେ ଭଲକରି କାନ ଡେରି ଶୁଣିଲା । ମାଆ କହୁଚି, "ଜୀଅଁନ୍ତାନି କାହିଁକି? କିଏ ଜାଣିବାର ଥାଆନ୍ତା, କାଚ ଖୁମ୍ବଟି ଭଙ୍ଗେଇ ଦିଅନ୍ତା । ଗନ୍ଧର୍ବ ରାଜାର ସବୁଠାରୁ ସାନଝିଅଟି ତା ଭିତରେ ଅଛି । ସବୁ ଭଉଣୀଙ୍କ ସାଥିରେ ସେ ଜହ୍ନର ଆରମ୍ଭ ଶେଷ ଦେଖି ଆସିଥିଲା । ଭୋର ହେଲାରୁ ସମସ୍ତେ କିରଣ ସିଡ଼ିରେ ତରତର ହେଇ ଉଠିଗଲେ । ବିଚରା ଛୋଟ ଝିଅଟି ଆସିଲା ବେଳକୁ କିରଣ ଧୀରେ ଧୀରେ ଲିଭି ସାରିଥିଲା । ଲୋକ ଚଳାଚଳ ଆରମ୍ଭ ହେଇ ଆସୁଥିଲା । ଝିଅଟି କିଛି ଉପାୟ ନ ପାଇ ସେଇ କାଚଖୁମ୍ବଟି ଭିତରେ ରହିଯାଇଚି । ତରତରରେ ତାର ପଟେ ନୂପୁର ତଳେ ପଡ଼ିଗଲା । ଆଉ ତାକୁ ଝୁରି ଝୁରି ରାଜା ପୁଅ ଏତେ ସରି

ହେଲାଣି । ଝିଅଟିକୁ ତା ଭିତରୁ ବାହାର କରି କିଏ ଯଦି କୁଅଁରମଣିକୁ ଥରଟିଏ ଦେଖେଇ ଦିଅନ୍ତା, ତା ହେଲେ ତା'ର ତ ଅଧାଦିହ ସଙ୍ଗେ ସଙ୍ଗେ ଭଲ ହୋଇଯାଆନ୍ତା । ତା'ର କ'ଣ ରୋଗ ହେଇଚି ନା ବଇରାଗ ହେଇଚି ଯେ ଔଷଧ ମଉଷଧି ଖୋଜା ପଡ଼ିଚି । ଝିଅଟି ପାଖରେ ପାଖରେ ରହିଲେ ଦି ଦିନରେ ଝାଡ଼ି ଝୁଡ଼ି ହେଇ ଉଠି ବସନ୍ତା । ହେଲେ ଏକଥା କିଏ ଜାଣିଚି ଯେ କରିବ? ରାଜାପୁଅ ମରିବା ନିଶ୍ଚିତ ।"

ଝିଅ ଯେମିତି ଏକଥା ଶୁଣିଚି, ଉଠିଲା । ଆଉ କି ଖିଆ, ଆଉ କି ପିଆ । ସାତ ଥଳି ସୁନା ମୋହର ଆଣି ଗଉଡ଼ମାନଙ୍କ ଆଗରେ ଝଣ କରି ଫୋପାଡ଼ି ଦେଲା । "ନିଅରେ ପିଲେ ଜଳଖିଆ କରିବ । ଉଠ ଉଠ ଟିକିଏ ଉଛୁର ହେଲେ ଆଉ ଭାଇକି ପାଇବିନି । ବାଟରେ ଯାହା ହେଲେ ଭୂଜାମୁଆଁ ପାଟିରେ ପକେଇ ପକେଇ ଚାଲ । ରାଜ୍ୟକୁ ଫେରିଲେ ବାଟିଏ ବାଟିଏ ନିଷ୍କର ଭୂମି ବାବା ମଣିମାଙ୍କୁ କହି ତୁମ ସମସ୍ତଙ୍କ ନାଁରେ ଖଞ୍ଜି ଦେବି । ପିଲାଏ, ଯଦି ତୁମମାନଙ୍କର ମୋ ପ୍ରତି ଟିକିଏ ବି ଶ୍ରଦ୍ଧାଥାଏ ତେବେ ମୋ ଭାଇଟିକୁ ବଞ୍ଚାଅ ।" ଭାତ ଡାଲମା ଚୁଲି ଉପରେ ଫୁଟୁଚି । ଚୁଲିରେ ପାଣି ପୁରେଇ ଦେଲେ । ଯିଏ ଯେଉଁଠି ଯେମିତି ଥିଲା, ସବୁ ସେଇଠି ସେମିତି ପଡ଼ିରହିଲା । 'ହୁଁ ମେରା ଭାଇରେ, ଖବର ଖାଇରେ' ହୁଁକାର ଛାଡ଼ି ଗଉଡ଼ ବେହେରାମାନେ ସବାରୀ ଉଠେଇ ଦଉଡ଼ ଲଗେଇଦେଲେ । କୋଶେକ ବାଟ ପାହୁଣ୍ଡେ କଲେ । ରାତି ଅଧକ ବେଳକୁ ଯାଇ ରାଜ୍ୟରେ ପାଇଗଲେ ।

ଜେମା ଆଗ ଉଆସ ଭିତରକୁ ଯିବ କ'ଣ ଲୋକ ଲଗାଇ କାଚ ଖୁମ୍ବଟିକୁ ଭଙ୍ଗେଇ ପକେଇଲା । "ଖବରଦାର – ଧୀରେ ଧୀରେ । ତା ଭିତରେ ମୋ ଭାଇର ଜୀବନ ଅଛି ।" ଗହଳ ଚହଳ ଶୁଣି ଉଆସ ଭିତରୁ ସବୁ ଲୋକ ବାହାରି ଆସିଲେ । କଥା କ'ଣ? ଜେମାଦେଇ ଇଏ କ'ଣ କରୁଚନ୍ତି? କେତେ କାଳର ଏମିତି ସୁନ୍ଦର ଏମିତି ଦୁର୍ମୂଲ୍ୟ ପଦାର୍ଥଟିକୁ ଜେମା ବାଇ ଲାଗିଲା ପରି ଭଙ୍ଗେଇ ପକାଉଚନ୍ତି କାହିଁକି? ଜେମା ସମସ୍ତଙ୍କୁ ଆଡ଼ କରିଦେଲା । ରାଜା ରାଣୀ ଆଶ୍ଚର୍ଯ୍ୟ ହେଇ ଚାହିଁ ରହିଚନ୍ତି । ମୁହଁରେ କଥା ନାହିଁ । କାଚଖୁମ୍ବ ଭିତରୁ ଲାବଣ୍ୟବତୀ ବିଜୁଳି କନ୍ୟାଟିଏ ବାହାରି ଆସୁଚି । ସତେ ତା ଦେହରୁ ଜ୍ୟୋତି ବାହାରି ଚଉଦିଗ ଝଲମଲ ହେଇଯାଉଚି । ତା ପାଦରେ ପଟେ ନୂପୁର । ରାଜାରାଣୀ ଦେଖିଲେ ଅବିକଳ କୁମର ପାଇଥିବା ନୂପୁର ପରି ।

ଜେମା ଝିଅଟିକୁ ରାଜକୁମାର ଶୋଇଲା ଘରକୁ ନେଇ ଆସିଲେ । ସେଠୁ କଅଣ କଲେ ନା ଗନ୍ଧର୍ବ ରାଜ୍ୟର ସାନ ରାଜକୁମାରୀର ହାତରେ ସୁନା ଗିଲାସରେ ଗୋଲାପ ଜଳ ସର୍ବତ ଗିଲାସେ ଧରେଇ ଦେଇ କହିଲେ, "ମୋ ମାଳିଆ, ମୋ ମଣି, ମୋ ସୁନାଧନ ଏଇ ଗିଲାସଟି ନେଇ ମୋ ଭାଇକି ଟୋପିଏ ପିଆଇ ଦେଲୁ ଦେଖି । ତାକୁ ଜୀବନଦାନ ଦେଇ ଦେ ମୋ ମାଣିକ ।" ଝିଅଟିକୁ ତ ସବୁ କିଛି ନୂଆ ନୂଆ ଲାଗୁଥିଲା । ସବୁ କିଛି ଆଚମ୍ବିତ ଲାଗୁଥିଲା ସତ, ହେଲେ ଏମାନଙ୍କୁ ଦେଖି ତାକୁ ବହୁତ ଭଲ ଲାଗୁଥିଲା । ବିଶେଷକରି ରାଜକୁମାରଙ୍କର ଅପୂର୍ବ ସୁନ୍ଦର କମନୀୟ ସୁକୁମାର ମୁହଁଟି । ସେ ଗିଲାସଟି ଧରି, ଜେମା ସାଙ୍ଗରେ ଧୀରେ ଧୀରେ ଯାଇ କୁମାର ପାଖରେ ଠିଆ ହେଲା । ଜେମା ରାଜକୁମାର କପାଳରେ ହାତ ବୁଲେଇ ଆଉଁସି ଆଉଁସି ଡାକିଲା, "ଏ ଛୁଆଭାଇ ଉଠୁ ଉଠୁ ଆଖି ଖୋଲି ଦେଖ । ତୋ ଆର ନୂପୁର ପଟିକ ମିଳିଗଲାଣି ।"

ନୂପୁର କଥାଟି ଶୁଣି କୁମାରମଣି ଝଟ୍ କରି ଆଖି ଖୋଲି ଦେଲା । ତା ଓଠ ପାଖରେ ସୁବାସିତ ସର୍ବତ ଗିଲାସଟିଏ ଛୁଆଁଇ ତାକୁ ମୁଗ୍ଧ ଆଖିରେ ଚାହିଁ ରହିଛି ଗୋଟିଏ ଅପରୂପା ଲାବଣ୍ୟ ପ୍ରତିମା । ଧାରଟିଏ ସ୍ନିଗ୍ଧ ହସ ତା ଓଠ ଧାରରେ ଲାଗିରହିଚି । ନୂଆ ଜୀବନ ପାଇଲା ପରି ରାଜାପୁଅ ଆସ୍ତେ ଆସ୍ତେ ଉଠି ବସିଲା । ଝିଅଟିକୁ ଚାହିଁଲା ଗୋଡ଼ରୁ ମୁଣ୍ଡ ଯାଏ । ତା' ଗୋଟିଏ ପାଦରେ ନୂପୁର ପଟିଏ ଦେଖିଲା ସେ ପାଇଥିବା ନୂପୁର ପରି । ସେ ତା ପାଖରେ ଥିବା ନୂପୁର ପଟିକ ଭଉଣୀକୁ ଦେଲା । ରାଜଜେମା ଖାଲି ପାଦରେ ପିନ୍ଧାଇ ଦେଲା । ରାଜାପୁଅ ଖାଲି ଦେଖୁଥିଲା ଆଉ ଦେଖୁଥିଲା । ଦି'ଟା ଦିନରେ ରାଜାପୁଅ ଝାଡ଼ି ଝୁଡ଼ି ହୋଇ ଉଠିଲା, ପୂରୁବ ଶିରୀ ଫେରି ପାଇଲା ।

ଝିଅଠାରୁ ସମସ୍ତେ ସବୁକଥା ଶୁଣିଲେ । ଗନ୍ଧର୍ବ କନ୍ୟା ହୋଇଥିବାରୁ ଆଉ ପୃଥିବୀର କୌଣସି ମଣିଷକୁ ଛୁଇଁ ନ ଥିବାରୁ ତାକୁ ଏତେ ଦିନ ଯାଏ ଭୋକ ଶୋଷ ବାଧୁ ନ ଥିଲା । ସମସ୍ତଙ୍କର ଆନନ୍ଦ କହିଲେ ନ ସରେ । ଶଗଡ଼ ଶଗଡ଼ ଖାଦ୍ୟପଦାର୍ଥ ନେଇ ସେଇ ଫୁଲ ଶାଗୁଣା ଗଛ ପାଖରେ ଢାଳିଦିଆଗଲା । ବଡ଼ ଜାକଜମକରେ ବାହାଘର ହେଲା । ବିଭାକାଳେ ହଠାତ୍ ବରକନ୍ୟାଙ୍କର ମଥାରେ ଉପରୁ ପୁଷ୍ପବୃଷ୍ଟି ହେଲା । ସେ ଫୁଲକୁ ଆଗରୁ କେହି ଦେଖି ନ ଥିଲେ କି ଏବେ ବି କେହି ଦେଖୁ ନାହାଁନ୍ତି । ସେ ଫୁଲର ମହକରେ ଏବେ ମଧ୍ୟ ରାଜ୍ୟସାରା ମହକୁଚି । ତୁମେ ଗଲେ ମଧ୍ୟ ମହକିଯିବ । ଆକାଶରେ ତୋଫାଜହ୍ନ ଥିଲା । ଆଉ ସେଇ ଚନ୍ଦ୍ର କିରଣର ସିଡ଼ି ଦେଇ ଛୋଟ ଝିଅର କିନ୍ନରୀ ଭଉଣୀମାନେ, ସାଙ୍ଗମାନେ ଓହ୍ଲାଇ ଆସି ବରକନ୍ୟାଙ୍କର ଚାରି ପାଖରେ ଘୂରିଘୂରି ନାଚୁଥିଲେ । ହେଲେ ରାଜାରାଣୀ ଆଉ ବରକନ୍ୟାଙ୍କ ବ୍ୟତୀତ ତାଙ୍କୁ କେହି ଦେଖି ପାରୁ ନ ଥିଲେ । କିନ୍ତୁ ମନମୋହକାରୀ ସ୍ୱର୍ଗୀୟ ବାଜ ବାଜଣାର ସ୍ୱର ଅବଶ୍ୟ ସମସ୍ତେ ଶୁଣି ପାରୁଥିଲେ । ପାହାନ୍ତି ରାତିରେ ଗନ୍ଧର୍ବ କନ୍ୟାମାନେ ଯେମିତି ଆସିଥିଲେ ସେମିତି କୁଆଡ଼େ ଅଦୃଶ୍ୟ ହୋଇଗଲେ, ଉଭାନ ହେଇଗଲେ । ମଣିଷ ଦିହ ଛୁଇଁ ସାନ ଗନ୍ଧର୍ବ କନ୍ୟାଟି ଆଉ ଅମରାବତୀ ଫେରି ପାରି ନ ଥିଲା । ହେଲେ ତା ମନରେ କୌଣସି ଅବଶୋଷ ନ ଥିଲା ।

କିନ୍ତୁ ମୋ ମନରେ ବହୁତ ଅବଶୋଷ ରହିଗଲା ଯେ ସେମାନେ ମୋତେ ଦେଖି, ନ ଚିହ୍ନିବାର ବାହାନା କଲେ । କିନ୍ତୁ ସେଦିନ ମୁଁ ଯାହା ଦେଖିଥିଲି ଆଉ ଶୁଣିଥିଲି ତା ସବୁ ଆଜି ଯାଏ ସ୍ମରଣ କରୁଚି । ଅଳସ ଅବସରରେ ତା' ମୋତେ ବହୁତ ଆନନ୍ଦ ଦେଉଚି ।



# ସୁନାରୁଖା କଥା

ଅନେକ ଅନେକ ବର୍ଷ ଆଗେ... ଆଜିକୁ ଢେର ଢେର ବର୍ଷ ତଳେ, ଗୋଟିଏ ଦେଶରେ ଜଣେ ଭାରି ଜିଦ୍‌ଖୋର ଚଉକଷ ରାଜା ଥିଲେ। ଦିଗ୍‌ବିଜୟ କରିବାରେ ତାଙ୍କର ବଡ଼ ସଉକ। ସେଥିପାଇଁ ତାଙ୍କୁ ବହୁତ ସମୟ ବାହାରେ କଟାଇବାକୁ ପଡୁଥିଲା। କଦବା କ୍ୱଚିତ ରାଜଧାନୀକୁ ଆସୁଥିଲେ। ବାହାରେ ରହିଲେ ମଧ ପ୍ରଜାଙ୍କର ହିତ କଥା ଦୃଷ୍ଟିରେ ରଖି ଯାହା କରିବାର କଥା ତାହା ସୁଚାରୁ ରୂପେ ନିର୍ବାହ କରୁଥିଲେ। ତାଙ୍କ ରାଜ୍ୟରେ ଅନ୍ୟାୟ ଅତ୍ୟାଚାର, ଚୋରି ଡକେଇତି ଜମାରୁ ନ ଥିଲା। ବେଳ ଜାଣି ଇନ୍ଦ୍ର ଦେବତା ପାଳକ କରୁଥିଲେ। ଯାବତି ଓଷା ବାର ବ୍ରତ, ସେ ଦେଶେ ଅଛଇ ସମସ୍ତ। ବାରମାସରେ ତେର ପର୍ବ ସେ ଦେଶରେ ବଡ଼ ଧୂମ୍‌ଧାମ୍‌ରେ ପାଳନ କରାଯାଉଥିଲା। ମୋଟ ଉପରେ ରାଜ୍ୟବାସୀ ବଡ଼ ସୁଖ ଶାନ୍ତିରେ ଥିଲେ। ପ୍ରଜାମାନେ ରାଜାଙ୍କୁ ଯେମିତି ସମ୍ମାନ କରୁଥିଲେ, ସେତିକି ମନପ୍ରାଣ ଦେଇ ଭଲ ପାଉଥିଲେ।

ସତର ବର୍ଷ ପରେ ରାଜା ରାଜଧାନୀକୁ ଫେରୁଚନ୍ତି। ତାଙ୍କର ବାହାରେ ରହିବାର ନିଶା ଛାଡ଼ିଗଲାଣି। ଦିଗ୍‌ବିଜୟର ତୃଷ୍ଣା ମେଣ୍ଟି ସାରିଲାଣି। ଖବର ପାଇ ରାଜ୍ୟରେ ଚହଳ ପଡ଼ିଗଲା। ଲୋକମାନେ ଠା ଠା'କେ ତୋରଣମାନ କରି ସ୍ୱାଗତ ସମ୍ବର୍ଦ୍ଧନା ପାଇଁ ସଜ ହେଲେଣି। ନିଜ ନିଜର ଘର ଦ୍ୱାର କୋଠାବାଡ଼ି ସବୁ ନୂଆ ରଙ୍ଗ ଲାଗି ଝକଝକ କରୁଚି। ରାଜ୍ୟରେ ଉତ୍ସବ, ସବୁରି ଘରେ କୁଣିଆ ମଇତ୍ରାଙ୍କ ଭିଡ଼। ଦେଉଳ ଅଟ୍ଟାଳୀ ସବୁ ଆଲୋକ ମାଳାରେ ସଜ୍ଜିତ। କୋଉଠି ପାଲା, କୋଉଠି ଅଷ୍ଟପ୍ରହରୀ, କୋଉଠି ଯାତ୍ରା, କୋଉଠି ମୋଗଲ ତାମସା ଚାଲିଚି। ଖିଆଣ ପିଆଣ ଦିଅଣ ନିଅଣର ଧୂଳା ଉଡ଼ୁଚି। ରାଜବାଟୀର ସାଜସଜା କଥା କ'ଣ କହିବି? ମାଉସୀ ଘରୁ, ପିଇସୀ ଘରୁ ସବୁ ନିମନ୍ତ୍ରିତ ହୋଇ ଆସିଥାଆନ୍ତି। ରାଜରାଣୀମାନେ ରାଜକୁମାରୀମାନେ ସଜବାଜ ହୋଇ ଅର୍ଘ୍ୟଥାଳିମାନ ଧରି ରାଜାଙ୍କୁ ବନ୍ଦାପନା କରିବାକୁ ପ୍ରସ୍ତୁତ ହୋଇ ସାରିଲେଣି।

ରାଜା ଆସୁଚନ୍ତି ତାମଜାନରେ। ପାଟ ହାତୀ ସଜ ହୋଇ ଦଣ୍ଡଛତ୍ର ଧରି ଆଗେ ଆଗେ ଆସୁଚି। ବାଜା ବଜନ୍ତରୀ ବାଜୁଚି। ଗୋଟିପୁଅ ନାଚ, ରାଜରାଣୀ ନାଟ, କଳାଘୋଡ଼ା–ଧଳାଘୋଡ଼ା, ଚଢ଼େୟା–ଚଢ଼େୟାଣୀ, କେଳା–କେଳୁଣୀ, ଶବରୀ–ଶବରୁଣୀ ଆହୁରି କେତେ କ'ଣ କେଜାଣି ନାଚି ନାଚି ପଛେ ପଛେ ଚାଲିଛନ୍ତି, ସବୁ ପ୍ରଜାମାନଙ୍କ ତରଫରୁ। ଘର ଅଟ୍ଟାଳୀମାନଙ୍କରୁ ଦୁବ ଫୁଲ ହଳଦିଆ ଚାଉଳ ସବୁ ବୃଷ୍ଟି ହେଉଚି। ମହା ଉତ୍ସବରେ, ମହା ସମାରୋହରେ, ମହା ପଟୁଆରରେ ରାଜା ଆସି ସିଂହଦ୍ୱାରରେ ଓଲ୍ହାଇଲେ। ବୀର କାହାଳୀ ବାଜି ଉଠିଲା। ବାଘମୁହଁରେ ରାଣୀ ରାଜକୁମାରୀ, ଆଉ ରାଣୀମାନେ ରାଜକୁମାରୀମାନେ, ପୁରସ୍ତ୍ରୀରୀମାନେ ବନ୍ଦାଣ ଥାଳି ଧରି

ବନ୍ଦାପନା କଲେ । ରାଜା ଦୃଷ୍ଟି ବୁଲାଇ ଆଣିଲେ । ଏ ବର୍ଣ୍ଣାଳୀ ରତ୍ନ ଭଣ୍ଡାର ମଧ୍ୟରେ ଏ ମଣିଟି କିଏ? ରାଣୀଙ୍କ ପାଖେ ପାଖେ ସଜ ସଜ ଗୋଲାପଟି ପରି, ହୋମଶିଖାଟି ପରି ଯିଏ ବନ୍ଦାଣ ଥାଳି ଧରି ଠିଆହେଇଚି । ଦର୍ପଣ ବାଡ଼ ପରି ଜଳୁଚି, ବିଜୁଳି ପରି ଝଟକୁଚି । ସେଇ ଝିଅଟି ଉପରେ ରାଜାଙ୍କ ଆଖି ଲାଖି ରହିଗଲା । ଏଇପରି ଝିଅଟି ତ କେବେହେଲେ କାହିଁ କୋଉଠି ବି ସେ ଦେଖି ନାହାନ୍ତି? ଏମିତି ଅସାମାନ୍ୟ ସୁନ୍ଦରୀ, ଏମିତି ଅପରୂପ ଲାବଣ୍ୟ ।

ରାଜା ମନ ସ୍ଥିର କରିନେଲେ, ଜଳଯୋଗରେ ବସିଲେ । ରାଣୀ ଆଲଟ ପକାଉଛନ୍ତି । ହଠାତ୍ ଖାଉ ଖାଉ ହାତ ଅଟକି ଗଲା । ରାଜା କହିପକେଇଲେ ରାଣୀ ସାହେବ, ତୁମ ପାଖରେ ସେତେବେଳେ ଯୋଉ ଦିବ୍ୟ ସୁନ୍ଦରୀ ଝିଅଟି ଥିଲା ସିଏ କିଏ? ସେଇଟିକୁ ମତେ ଦେଇଦିଅ । ରାଣୀ କାହିଁକି ଅବା ଆଉ କୋଉ କଥା ଚିନ୍ତା କରନ୍ତେ । ହସି ହସି କହିଲେ, "ମୁଁ ଦେବି କ'ଣ? ସେଇଟି ତ ଆପଣଙ୍କର । ଏତେ ଦିନ ପରେ ଆସିଲେ ସେଇଟିକୁ ଆପଣଙ୍କୁ ଭେଟି ଦେବି ବୋଲି ଏତେ ଯତ୍ନରେ ରଖିଚି ।" ରାଜା ଭାରି ଖୁସି ହେଇଗଲେ । ରାଣୀ ପୁଣି କହିଲେ, "ସତର ବର୍ଷ ତଳେ ଯାହା ଅଦୃଶ୍ୟ ଭାବରେ ମୋତେ ଦେଇ ଯାଇଥିଲେ, ଆପଣଙ୍କୁ ସୁମରି ମୁଁ ତାକୁ ବହୁ କଷ୍ଟରେ ଏଡ୍ଡୁଟିଏ କରିଚି । ଯା ପାଇଁ ଆପଣ ମୋତେ କି ଉପହାର ଦେଉଚନ୍ତି?"

ରାଜାଙ୍କ ଭ୍ରୁରୁ କୁଞ୍ଚିତ ହେଇଗଲା । ତାଙ୍କ ଛାତିରୁ ଅତଡ଼ା ଖସିଗଲା ପରି ଲାଗିଲା । ସତର ବର୍ଷ ତଳେ ରାଣୀ ଗର୍ଭବତୀ ଥିଲେ । ଝିଅଟିଏ ହେବା କଥା ଶୁଣିଚନ୍ତି । ଏକୋଇଶାରେ ଦୋଳି ଶେଯରେ ହୁଏତ ସେ ଦେଖିଥାଇ ପାରନ୍ତି । ଏବେ ମନେ ପଡୁଚି ସେ ନିଜେ ହିଁ ତା'ର ନାମକରଣ କରିଥିଲେ ଶ୍ୱେତପଦ୍ମା । ସେଇ କୁନି ଝିଅଟି ଏମିତି ଏତେ ବଡ଼ ହୋଇ ଯିବଣି, ସେ ତ କଳ୍ପନା ମଧ୍ୟ କରିପାରି ନାହାଁନ୍ତି । ତା ହେଲେ କ'ଣ ଆଉ ହବ ଯାହା ମନସ୍ଥ କରିଚନ୍ତି? ରାଜା ହଠାତ୍ ଗମ୍ଭୀର ହୋଇ ସେଠୁ ଉଠି ଆସିଲେ । ରାଣୀ କିଛି ବୁଝିପାରୁ ନାହାଁନ୍ତି । କ'ଣ ହେଲା, ଏତେ ଦିନ ପରେ ଉଆସକୁ ବିଜେ କଲେ । ଏତେ ଖୁସି, ଏତେ ଆନନ୍ଦ ଏମିତି ସୁସମାଚାର ପାଇ ହୃଦୟ ପରିପୂର୍ଣ୍ଣ ହେଇ ଯାଆନ୍ତା । କିନ୍ତୁ ସେ ଏମିତି ବିଷର୍ଣ୍ଣ ଭାବରେ ଉଠିଗଲେ କାହିଁକି?

ରାଜା ନିରୋଳାରେ ବସି ଭାବୁଚନ୍ତି । ମନ ବିଚଳିତ, ବିବେକ କହୁଚି, "ଛିଃ ଛିଃ । ଏମିତି ପାପ କଥା ମନକୁ ଆଣନ୍ତି?" ମନ କହୁଚି, "ପାପ କ'ଣ? ପୁଣ୍ୟ କ'ଣ? ଏ ତ ଦୁର୍ବଳ ମନର ଗୋଟିଏ ପ୍ରତିକ୍ରିୟା ମାତ୍ର । ଗୋଟାଏ ବାହାନା କେବଳ, ପାପ ପୁଣ୍ୟ, ଆଚାର ବିଚାର, ଏଇଟା କର, ସେଇଟା କରନି । ନୀତି ନିୟମ, ପୂଜାପୂଜି ଏ ବାହ୍ୟ ଆଡ଼ମ୍ବର ସଂସ୍କୃତି ନାଁରେ ଯାହା ଚଳି ଆସିଚି । ନାଁ, ନାଁ, ଆମେ ଚଳେଇ ଆସୁଚୁ, ସଂସ୍କାର ନାଁରେ ଏ କୁସଂସ୍କାରକୁ । ଚରାଚର ଜୀବ ଜଗତରେ ତ କାଇଁ କିଛି ବାରଣ ନାଇଁ । କ'ଣ ଭୁଷୁଡ଼ି ପଡୁଚି? ତେବେ ମଣିଷ ପାଇଁ କାହିଁକି ଏତେ ଲକ୍ଷ୍ମଣଙ୍କର ତିନିରେଖା? ଜୀବନ ପାଇଁ ଇଆର କିଛି ମାନେ ଅଛି ଭଲା? ନାଁ, ପୁରୁଣା କାଳର ଏ କଳଙ୍କି ଧରା ଲୌହପ୍ରାଚୀର ଭାଙ୍ଗିବାକୁ ପଡ଼ିବ । ସେତେବେଳେ ଲୋକଙ୍କର କିଛି କାମ ନ ଥିଲା । ହାତେ ମାପି ଚାଖଣ୍ଡେ ଚାଲୁଥିଲେ । ସମୟର ମୂଲ୍ୟ ବୁଝୁ ନ ଥିଲେ । ଇଏ ପ୍ରଗତିର ଯୁଗ । କାହା ପାଖରେ ଏତେ ସମୟ ଅଛି! ଦଉଡ଼ ଦଉଡ଼ । ନ ହେଲେ ପଛରେ ପଡ଼ିଯିବ ଯେ ।" ରାଜାଙ୍କ ମନରେ ଦ୍ୱନ୍ଦ୍ୱ, ଦ୍ୱିବିଧା । ରାଜସଭା ବସିଚି ।

ସଭାସଦ୍‌ଗଣ, ମନ୍ତ୍ରୀ ପାରିଷଦବୃନ୍ଦ ସମସ୍ତେ ନୀରବ ବସି ରହିଚନ୍ତି । ରାଜା ଅସ୍ଥିର ଭାବରେ ପଦଚାରଣା କରୁଚନ୍ତି ମୁଖ ମଣ୍ଡଳ ଗମ୍ଭୀର । ରାଜା ଏବେ ସିଂହାସନରେ ଉପବେଶନ କଲେ । କିଛି ସମୟ ଚୁପ୍ ରହିଲେ । ଗଳାଝାଡ଼ି କଥା ଆରମ୍ଭ କଲେ, "ଆପଣମାନେ ଭାବି କିଛି କୁହନ୍ତୁ । ଯେଉଁ ମଣିଷ ବୃକ୍ଷ ରୋପଣ କରେ ତାର ଫଳ ଗ୍ରହଣ କରିବାରେ କ'ଣ ତା'ର ଅଧିକାର ନାହିଁ? ତା'ର ଫୁଲ ନିଜେ ଆଘ୍ରାଣ କରିବାକୁ ତାକୁ କ'ଣ ବାରଣ?" ସଭାରେ ମୃଦୁ ଗୁଞ୍ଜନ ତା ପରେ ସମସ୍ତେ ଉଚ୍ଚ ସ୍ୱରରେ କହିଲେ, "ଇଏ କି କଥା ଛାମୁଁ? ତା'ର ତ ପୂରା ହକ୍ ଅଛି ସେଇ ଫୁଲ ଫଳ ଉପରେ । ପୂରା ଅଧିକାର ଅଛି ତା ସବୁ ଭୋଗ କରିବାରେ ।" ଜିଦ୍‌ଖୋର୍ ରାଜା ଏଥର ତାଙ୍କ ମନକଥା ଆଗତ କଲେ ସଭାରେ – "ତାହେଲେ ମୋ ଝିଅକୁ ମୁଁ ବିବାହ କରିବି ।" ଏଇ କଥା ଘୋଷଣା କରି ରାଜା ରାଜସଭା ତ୍ୟାଗ କରି ଚାଲିଗଲେ । ସଭାରେ ସତରେ ଯେମିତି ବଜ୍ରପାତ ହେଲା । ସମସ୍ତେ ସ୍ଥାଣୁ ହୋଇ ରହିଗଲେ । ଯିଏ ଶୁଣିଲା, ସିଏ କାନରେ ହାତଦେଲା । କି ପାପ କଥା, କେହି କି ଶୁଣିଚ ଏମିତି କଥା କାନ ଉଠିଲା ଦିନୁ? ମହି କି ସହିବ ଏଭଳି ପାତକ, ସର୍ବଂସହା ନାମ କରିବ ସାର୍ଥକ?

ବିଦେଶରେ ରହିରହି ଏ ରାଜାଟାର କ'ଣ ମୁଣ୍ଡ ଖରାପ ହୋଇ ଯାଇଚି? ଏ ରାଜ୍ୟ ଉପରକୁ ଘୋର ବିପତ୍ତି ଘୋଟି ଆସିଲା । ଯେତେ କୁଣିଆ ମଇତ୍ର ଆସିଥିଲେ ନିଜକୁ ଧିକ୍କାରି ଧିକ୍କାରି ଚାଲିଗଲେ । ଏ ପାତକୀ ରାଜ୍ୟରେ କାହିଁକି ପାଦ ପକାଇଲେ । କର୍ଣ୍ଣ ଅପବିତ୍ର ହୋଇଗଲା । ନିମିଷକରେ ହର୍ଷୋତ୍‌ଫୁଲ୍ଲ ନଗରୀ ଘୋର ବିଷାଦ କାଳିମାରେ ବୁଡିଗଲା । ରାଣୀ ତ ବିଛଣାରୁ ଉଠୁ ନାହାଁନ୍ତି । କାନ୍ଦି କାନ୍ଦି ଆଖି ଶାମୁକା ପରି ହୋଇଗଲାଣି । କେବଳ ଜେମା ସ୍ଥିର ରହିଚି । କଠିନ ମୁଖମଣ୍ଡଳ, ସେ ତ ମହାଯୋଗ୍ୟା । ଲୋକେ କହନ୍ତି ପାଠ ପଢ଼ିପଢ଼ି ପାଠ ସମୁଦ୍ର ଶେଷ କରିସାରିଚି । ଯେତେ ସବୁ ବିଦ୍ୟା ଅଛି ସବୁର ସାର ଶିକ୍ଷକମାନଙ୍କଠାରୁ ସେ ଶିକ୍ଷା ପାଇଚି । ସବୁଠାରୁ ବେଶି ଆଗ୍ରହ ତା'ର କାରିଗରୀ ବିଦ୍ୟାରେ । ସେଥିରେ ସେ ବିଶାରଦା, ନିପୁଣା ।

ଜେମା ଉଠିଲେ । ରାଣୀଙ୍କୁ ବୁଝାଇ ଶୁଝାଇ ତୁନି କଲେ । କାନେ କାନେ ତାଙ୍କର କ'ଣ କହିଲେ କେଜାଣି, ମହାଖୁସିରେ ସେ ଝାଡ଼ି ଝୁଡ଼ି ହୋଇ ଉଠି ବସିଲେ । ରାଣୀ ରାଜାଙ୍କ ପାଖକୁ ଯାଇ କହିଲେ, "ଶୁଣନ୍ତୁ, ଜେମା ବିଭା ପାଇଁ ରାଜି । ଆପଣ କାହିଁକି ମନ ଊଣା କରି ବସିଚନ୍ତି?" ଜିଦ୍‌ଖୋର ରାଜା ସିନା ଜିଦ୍‌ରେ ସେମିତି ଘୋଷଣା କରିଦେଲେ, ହେଲେ ତାଙ୍କର ସଂସ୍କାରୀ ବିବେକ ତାଙ୍କୁ ନାଲି ଆଖି ଦେଖାଉଥିଲା । ହେ ଭଗବାନ୍, ଜେମା ହେଲେ ରାଜି ହୋଇ ନ ଥାନ୍ତା । ରାଣୀ କହିଲେ, "ତା'ର ଗୋଟିଏ ସର୍ତ୍ତ ଅଛି ।" ରାଜା ନିରାଶକ୍ତ ଭାବରେ ପଚାରିଲେ, "କ'ଣ ସେ ସର୍ତ୍ତ?" ରାଣୀ କହିଲେ, "ଜେମା ଠାରୁ ହାତଚାପଡ଼େ ଉଚ୍ଚାରେ ସୁନାରେ ଗୋଟିଏ ରୁଖା ତିଆରି ହେବ । ଦୁଇଜଣ ବସିଲା ପରି ବେଦି ତିଆରି ହେବ । ସେଇଠି ବିଭାଘର ହେବ । ଥାକମାନଙ୍କରେ ସମସ୍ତ ସରଞ୍ଜାମ ରହିପାରୁଥିବ । କବାଟ ଝରକା କେବଳ ଭିତରୁ ମୁଦା ହେଇ ପାରୁଥିବ, ଖୋଲା ହୋଇ ପାରୁଥିବ ।" ରାଜା ସେହିପରି ନିର୍ଲିପ୍ତ ଭାବରେ କହିଲେ, "ବରାଦ କରିଦିଅ ।"

ବହୁତ କାରିଗର ଲାଗି ଆଠ ଦିନରେ ସୁନାରୁଖା ତିଆରି କରିଦେଲେ । ଦୁଇଦିନ ଭିତରେ ଜେମା ତା ଭିତରେ ପଶି କ'ଣ ଠୁକ୍‌ଠାକ୍ ହୁସ୍‌ହାସ ଫୁସ୍‌ଫାସ୍ କରୁଥିଲା । କେବଳ ତାକୁ ହିଁ ଜଣା,

ଆଉ ଜଣା ଭଗବାନଙ୍କୁ । ବର୍ତ୍ତମାନ ବିଭା ପାଇଁ ଜେମା ପ୍ରସ୍ତୁତ । ଥାକ ଭର୍ତ୍ତି, ତା ଭିତରେ କ'ଣ କ'ଣ ସବୁ ରଖାହେଇଚି । ବିବାହ ପାଇଁ ଦରକାର ସବୁ ଜିନିଷ ରାଣୀ ରଖିଲେ । ଆୟ ଅଳଙ୍କାର ମଣ୍ଡିତା ରୂପସୀ ବିଦୁଷୀ ରାଜଜେମା ତା ଭିତରକୁ ଗଲା । ପୁରୋହିତ ମନ୍ତ୍ର ଉଚ୍ଚାରଣ କଲାବେଳକୁ ରାଜା ବାରଣ କଲେ । ସେ ଛେଳି ବଳି ପଡ଼ିବା ପାଇଁ ଗଲା ପରି ପୁରୋହିତମାନଙ୍କ ସହିତ ବିଭା ପାଇଁ ରୁଖା ଦୁଆର ମୁହଁରେ ଆସି ଠିଆ ହେଲେ ।

ହଠାତ୍ କ'ଣ ହେଲା କେଜାଣି ରୁଖାର ଝରକା କବାଟ ସବୁ ବନ୍ଦ ହେଇଗଲା । ରୁଖା ଭିତରୁ ପ୍ରଥମେ ସୁ ସୁ ଶବ୍ଦ ଶୁଣାଗଲା... ତା ପରେ ଆସିଲା ଘୁଁ ଘୁଁ ଶବ୍ଦ । ରୁଖା ହଲିଲା, ତା ତଳୁ କୁଆଡ଼ୁ ଚକ ବାହାରି ଆଗ ପଛ ଟିକିଏ ଗଡ଼ିଲା । ତା ପରେ ଉଠିଲା । ଉଠିଲା ଉପରକୁ... ଉପରକୁ... ଆହୁରି ଉପରକୁ... ଆହୁରି ଆହୁରି ଉପରକୁ । ସମସ୍ତେ ଜଳକା ପରି ଚାହିଁ ରହିଚନ୍ତି । ରୁଖା ଉଡୁଚି, ଉଡ଼ିଲା ତ ଉଡ଼ିଲା । ଏତେ ବେଗରେ ଉଡ଼ିଲା ଯେ ତାକୁ ଧରିବାକୁ କେତେ ଜଣ ସିପାହୀ ସେନାପତିଙ୍କ ସହିତ ଘୋଡ଼ା ଦଉଡ଼େଇ ନିରାଶ ହୋଇ ଫେରିଲେ । ଚାହୁଁ ଚାହୁଁ ନିମିଷକ ମଧ୍ୟରେ ରୁଖା ଆଖି ଆଗରୁ କୁଆଡ଼େ ଓଝାଲ୍ ହୋଇଗଲା ।

ରାଣୀଙ୍କ ହାତ ଧରି ରାଜା ସେଇଠି ସେମିତି ବସିପଡ଼ି ଗୋଟାଏ ଦୀର୍ଘ ନିଶ୍ୱାସ ଛାଡ଼ିଲେ ସ୍ୱସ୍ତିର । କାନ୍ଦ କାନ୍ଦ ହୋଇ କହିଲେ, "ମତେ କ୍ଷମା କରିଦିଅ ରାଣୀ । ତୁମର ଧର୍ମ ବଳରେ ମୁଁ ଆଜି ମହାପାତକରୁ ରକ୍ଷା ପାଇଲି ।" ସେଇଠୁ ଉଠି ସିଧା ଠାକୁର ଘରକୁ ଯାଇ ସିଂହାସନ ତଳେ ଗାଲିପାରି ଶୋଇ କ'ଣ ସବୁ ଜଣାଇଲେ । ତାଙ୍କ ମନର କଳ୍ପନା ସବୁ ଲୁହ ହୋଇ ବହିଗଲା । ସବୁ ଧୋଇ ଗଲା, ତାଙ୍କ ମନରେ ପୂରା ବିଶ୍ୱାସ ଆସିଲା । ତାଙ୍କ ପରି ତାଙ୍କର ଏକମାତ୍ର ଅଲିଅଳି ଝିଅଟିକୁ ପ୍ରଭୁ ନିଶ୍ଚୟ ରକ୍ଷା କରିବେ । ତହିଁ ଆରଦିନ ରାଜା ପୂର୍ବପରି ସତେଜ ହୋଇ ସଭାକୁ ଆସିଲେ । ତାଙ୍କ ମନରେ ଆଉ କୌଣସି ଗ୍ଲାନି ନ ଥିଲା । ଏତେ ଦିନ ପରେ ସଭା କକ୍ଷରେ ପ୍ରବେଶ କରି ପ୍ରଥମେ ନିଜେ ହାତ ଯୋଡ଼ି ସଭାସଦ୍‌ମାନଙ୍କୁ ସମ୍ଭାଷଣ କରି କହିଲେ, "ଆପଣମାନଙ୍କର ସ୍ନେହ ଶ୍ରଦ୍ଧା ସଦ୍‌ଇଚ୍ଛା ଏବଂ ଧର୍ମବଳରୁ ମୁଁ... ମୁଁ ମହାପାପରୁ ମୁକୁଳି ଆସି ପାରିଚି । ଆପଣମାନେ ଏ ଅଧମକୁ କ୍ଷମା କରିଦିଅନ୍ତୁ ।" ହର୍ଷଧ୍ୱନୀ ସହିତ କରତାଳି ଆଉ ରାଜାଙ୍କର ଜୟ ଜୟ କାରରେ ଚତୁର୍ଦିଗ ପ୍ରକମ୍ପିତ ହୋଇ ଉଠିଲା । କ୍ରମେ ଗୋଟାଏ ଦୁଃସ୍ୱପ୍ନ ପରି ସମସ୍ତେ ସବୁକଥା ଭୁଲିଗଲେ । ରାଜ କାର୍ଯ୍ୟ ପୂର୍ବପରି ସୁରୁଖୁରୁରେ ଚାଲିଲା ।

ତେଣେ କ'ଣ ହେଇଚି ନାଁ ସୁନାରୁଖା ଉଡ଼ି ଉଡ଼ିକା ଚାଲିଚି । କେତେ ନଦୀ ନାଳ ପାହାଡ଼ ପର୍ବତ ଖାଲ ଢିପ ବନ ପାରି ହୋଇ ଯୋଉ ସୁନ୍ଦର ରାଜ୍ୟଟିରେ ତଳକୁ ଖସିଲା, ସେଇଠି ବିସ୍ତୀର୍ଣ୍ଣ ସବୁଜ ଘାସ ଜମି ଉପରେ ରାଜାପୁଅ, ମନ୍ତ୍ରୀପୁଅ, କଟୁଆଳପୁଅ, ସାଧବପୁଅ ଘୋଡ଼ା ଦଉଡ଼ କରୁଥିଲେ । ଝିଅର ପିତା ତ ଥିଲେ ଜଣେ ପ୍ରସିଦ୍ଧ ରାଜା । ମାତ୍ର ଏ ରାଜ୍ୟ ଥିଲା ସମ୍ରାଟଙ୍କର । ରାଜା ଝିଅ ଶ୍ୱେତପଦ୍ମା ସୁନାରୁଖା ଭିତରୁ ଝରକାରେ ସବୁ ଦେଖୁଥିଲା । ମାତ୍ର ସେମାନେ ଏ ସୁନାରୁଖା କେବେ ଜୀବନରେ ଦେଖି ନ ଥିଲେ । ତାକୁ ଧରିବାକୁ ସମସ୍ତେ ଝପଟିଲେ । ରୁଖା ହାତ ପାହାପାହାକୁ ଆସି ପୁଣି ଉପରକୁ ଉଠିଯାଉଥିଲା । ଏ ଖେଳ ଏମିତି କେତେବେଳ ଚାଲିଥାଏ । ରାଜାଝିଅକୁ ବହୁତ ମଜା ଲାଗୁଥାଏ । ସେମାନଙ୍କ ବେଶ ପୋଷାକରୁ ତାଙ୍କର ପରିଚୟ ବୁଝା ପଡୁଥିଲା ପରା ।

ସେମାନେ ଥକି ପଡ଼ିଲେଣି। ସେ ଆଉ ତିନିଜଣ କାହାରି ହାତରେ ଧରା ଦେଲାନି। ଯେତେବେଳେ ସମ୍ରାଟପୁତ୍ର ଶ୍ୱେତକୁମାର ହାତ ପତେଇ ଆ... ଆ... ଡାକିଲେ, ସେତେବେଳେ ସେ ଧୀରେ ଓହ୍ଲେଇ ଧରାଦେଲା। ସେତେବେଳକୁ ସବୁ ଝରକା ବନ୍ଦ ହୋଇ ସାରିଥିଲା। ଏମାନେ ଚାରିପାଖ ଘୂରି ଘୂରି ଯେତେ ଚେଷ୍ଟା କଲେ ମଧ୍ୟ କିଛିବାଟ ପାଉ ନ ଥିଲେ ଖୋଲିବା ପାଇଁ। କିଛି ଦେଖି ମଧ୍ୟ ପାରୁ ନ ଥିଲେ ଭିତରେ କ'ଣ ଅଛି। କିନ୍ତୁ ଶ୍ୱେତପଦ୍ମା ଭିତରୁ ସବୁ ଦେଖି ପାରୁଥିଲା। ଶ୍ୱେତକୁମାରକୁ ଦେଖି ତାକୁ ବହୁତ ଭଲ ଲାଗୁଥିଲା। ତା'ର ମନେ ହଉଥିଲା, ପୁଅଟି କେମିତି ଗୋଟିଏ ଚାଉଳରେ ଗଢ଼ା! ସେ ଯେମିତି ସୁନ୍ଦର, ସେମିତି ଧୀମାନ ହୋଇଥାଇପାରନ୍ତି। ତାଙ୍କର ଚାଲିଚଳନ କଥାବାର୍ତ୍ତାରୁ ତାଙ୍କ ବ୍ୟକ୍ତିତ୍ୱର ପରିଚୟ ମିଳୁଥିଲା। ଶ୍ୱେତପଦ୍ମାର ସୁନାରୁଖା ତାଙ୍କର ହାତରେ ଜାଣି ଜାଣି ଧରାଦେଲା।

ଚାରି ବନ୍ଧୁ ତାକୁ ମୂଳରୁ ଚୂଳ ଯାଏ ପରଖିଲେ। ହେଲେ କିଛି ସୁରାକ ପାଇ ପାରିଲେନି। ସେମାନେ ଠେଲି ଠେଲି ତାକୁ ଉଆସ ପାଖକୁ ଆଣିଲେ। ତାକୁ ଦେଖିବାକୁ କେତେ କେତେ ଲୋକ ଆସିଲେ... ଗଲେ। ବେଳ ରତ ରତ ହେଲାଣି। ଶ୍ୱେତକୁମାର ପିତାଙ୍କ ବାରଣ ସତ୍ତ୍ୱେ ତାକୁ ନେଇ ଆପଣାର ଶୋଇଲା ଘରେ ରଖିଲା। ତାକୁ ଭାରି ଶ୍ରଦ୍ଧା ଲାଗୁଥିଲା। କେତେ କିଏ କ'ଣ କହିଲେ ବି ସେ ଚୁପ୍ ରହୁଥିଲା। ଗଭୀର ରାତି ପର୍ଯ୍ୟନ୍ତ ସେ ଶୋଇ ପାରିଲାନି। ଖାଲି ଘଡ଼ି ଘଡ଼ି କ'ଣ ହେଇପାରେ, କ'ଣ ଏଥିରେ ଥାଇପାରେ, ଏମିତି ସାତ ପାଞ୍ଚ ହେଇ ହେଇ ପାହାନ୍ତି ପ୍ରହରକୁ ତାଙ୍କ ଆଖି ଟିକିଏ ଲାଗିଗଲା। ସେ ନିଘୋଡ଼ ନିଦରେ ଶୋଇଗଲା। ଶ୍ୱେତପଦ୍ମା ନିତ୍ୟକର୍ମ ସାରି ଗାଧୋଇ ପାଧୋଇ ରୁଖା ଭିତରେ ବେଲାରେ ଥିବା ଚୁଆ ଚନ୍ଦନ ଘୋରା ଶ୍ୱେତକୁମାର ଦେହରେ ବୋଳି ଦେଇ ରୁଖା ଭିତରେ ପଶି ପୁଣି ମୁଦ ପକେଇ ଦେଲା।

ଶ୍ୱେତକୁମାର ଉଠୁନାହାଁନ୍ତି, ଓଳିଏ ବେଳ ହେଲାଣି। କାଳି ଅନ୍ଧାରରୁ ଉଠି ସେ ବୁଲିବାକୁ ଯାଆନ୍ତି। ମାଆ ଡାକି ଡାକି ଥକିଲେଣି। ତାଙ୍କ ମନରେ କେତେ ଆଶଙ୍କା। କ'ଣ ଗୋଟାଏ ଆଣି ଘର ଭିତରେ ରଖିଚି। କ'ଣ ହେଲାଣି କେଜାଣି। ବିକଳରେ କବାଟ ଠୁକି ଚାଲିଚନ୍ତି। ଚାଉଁକିନା ନିଦ ଭାଙ୍ଗିଗଲା। ଶ୍ୱେତକୁମାର ଉଠି ବସି ପଡ଼ିଲେ। ତାଙ୍କ ଦେହ ମହମହ ବାସୁଥିଲା। ମାଆ କହିଲେ, "କୋଉ ଦେବା ଦେବୀ ଡାହାଣୀ ପିଶାଚୁଣୀ ଏ ଭିତରେ ଅଛି। ମୋ ପୁଅକୁ କ'ଣ କରି ଦେବ।" ଶ୍ୱେତକୁମାର କିନ୍ତୁ ଅନ୍ୟ କିଛି ଭାବୁଥିଲେ। ଏ ଘଟଣା ବାହାରେ ପ୍ରକାଶ ନ କରିବାକୁ ମାଙ୍କୁ ଅନୁରୋଧ କଲେ। ଯଦି କିଛି ହବାର କଥା, ଏଇ ରାତିରେ ହେଇଯାଆନ୍ତା। ମାତ୍ର ଆଜି ରାତିଟି ଘରେ ରଖିବା ପାଇଁ ମାଆଙ୍କ ପାଖରେ ବିନତି କଲେ। ତା ଦେହରେ ଚୁଆ ଚନ୍ଦନ କୋଉ ଠାକୁର ଠାକୁରାଣୀ ବୋଳିବାକୁ ଯିବେ କାହିଁକି? ଆଜି ରାତିରେ ସେ ଏ ସମସ୍ୟାର ସମାଧାନ କରିବେ ନିଶ୍ଚୟ। ତାଙ୍କ ମୁହଁରେ ଦୃଢ଼ତାର ଛାପ।

ସାରା ଦିନ ଇଆଡୁ ସିଆଡୁ ହେଇ କଟିଗଲା। ରାତି ଆସିଲାଣି, ଡେରି ଡେରିରେ ଭୋଜନ ସମାପ୍ତ ହେଲା। ଶ୍ୱେତକୁମାର ପହୁଡ଼କୁ ବିଜେ କଲା। ଜାଣି ଜାଣି କାଣି ଆଙ୍ଗୁଠି ନଖ ପାଖରୁ ଟିକିଏ କାଟି ଦେଲେ। ଲଙ୍କା ମରିଚ ମାରିଦେଲା। ହାତ ହୁ ହୁ ପୋଡୁଚି। ନିଦ ଆସୁଚି କେତେବେ? ଗାଲେଇ ପଡ଼ି ରହିଲା। ରାତି ବଢ଼ି ବଢ଼ି ପାହାନ୍ତି ଆଡ଼କୁ ଢଳିଲା। ତାଙ୍କର ଉତ୍କଣ୍ଠା ବଢ଼ିବାରେ

ଲାଗିଚି । ସେ ସେମିତି ପଡ଼ି ରହି ଥାଆନ୍ତି । ସବୁର ଶେଷ ଥାଏ । ତାଙ୍କ ଚାହିଁବାର ଶେଷ ମଧ୍ୟ ହେଲା । ତାଙ୍କର ଛାତିର ସ୍ପନ୍ଦନ ହଠାତ ବଢ଼ିଗଲା । ସେ ଦେଖିଲା ରୁଖାର ଝରକା ଖୋଲିଗଲା, ଦରଜା ଖୋଲିଲା । ରୁଣୁ ଝୁଣୁ ଶୁଣାଯାଉଚି । ତା ଭିତରୁ ଆୟ ଅଳଙ୍କାର ମଣ୍ଡିତା ଶ୍ୱେତପଦ୍ମା ବାହାରି ଆସିଲା । ଶ୍ୱେତକୁମାରଙ୍କ ଛାତି ଛନ୍ ଛନ୍ ହେଇଗଲା । ସେ ନିଶ୍ୱାସ ରୁଦ୍ଧ କରି ଚାହିଁଲା । ପ୍ରକୃତରେ ଇଏ ନିଶ୍ଚୟ କୌଣସି ଦେବୀ ଅବା କିନ୍ନରୀ । ନ ହେଲେ କୌଣସି ମାନବୀ କ'ଣ ଏପରି ସୌନ୍ଦର୍ଯ୍ୟମୟୀ ହେଇପାରେ? ଛାଇ ଛାଇ ଆଲୁଅରେ ଶ୍ୱେତପଦ୍ମା ଝଟକୁ ଥିଲା । ଶ୍ୱେତକୁମାର ନିର୍ଜୀବ ପରି ପଡ଼ି ରହିଲେ । ସିଏ ତାଙ୍କରି ଆଡ଼କୁ ଆସୁଚି । ହାତରେ ସ୍ୱର୍ଣ୍ଣପାତ୍ର । ଶ୍ୱେତକୁମାର ନିସ୍ତେଜ ହୋଇ ପଡ଼ିଲା । ପ୍ରକୃତରେ ତାଙ୍କର ହାତ ଗୋଡ଼ ଚଳୁ ନ ଥିଲା । ଶ୍ୱେତପଦ୍ମା ତାଙ୍କ ପାଖକୁ ଆସିଲା । ପାଖକୁ... ଆହୁରି ପାଖକୁ । କିଛି କ୍ଷଣ ମୁଗ୍ଧ ହୋଇ ଚାହିଁରହିଲା ।

ଶ୍ୱେତପଦ୍ମା ଭାବିଲା ସେ ନିଘୋଡ଼ ନିଦରେ ଶୋଇ ଯାଇଚନ୍ତି । ତା ପରେ ପାଦ ଛୁଇଁ ପ୍ରଣାମ କଲା । କାରଣ ସେତେବେଳେ ସେ ତାଙ୍କୁ ପତି ରୂପରେ ବରଣ କରି ସାରିଥିଲା ମନେ ମନେ । ଯେତେବେଳେ ସୁବର୍ଣ୍ଣ ପାତ୍ରରୁ ଗୋଳା ଚୁଆ ଚନ୍ଦନ ଆଣି ତାଙ୍କ ବେକରେ ବୋଳି ଦେଲା ଶ୍ୱେତକୁମାର ଉଠିପଡ଼ି ତା ଲହୁଣୀ କୋମଳ ହାତଟିକୁ ଧରି ଦେଲା । ଶ୍ୱେତପଦ୍ମା ହାତଟିକୁ ଟାଣି ନେଇଯିବାର ନିଷ୍ଫଳ ପ୍ରଚେଷ୍ଟା କରୁଥିଲା । ସେ ଲାଜରେ ସଢ଼ିଗଲା । ସେ ଏଇଠି ପାଣି ହୋଇ ବୋହିଯିବ ଅବା । ଶ୍ୱେତକୁମାର ତାକୁ ପାଖରେ ବସାଇ ନିରେଖି ନିରେଖି ଦେଖୁଥିଲା । ପୁଣି ପଚାରିଲା ପ୍ରକୃତରେ ତୁମେ କେହି ଦେବୀ କି କୌଣସି ଶାପଗ୍ରସ୍ତା କିନ୍ନରୀ? ଶ୍ୱେତପଦ୍ମା ତାଙ୍କ ପ୍ରଶ୍ନର ସବୁ ଉତ୍ତର ଠିକ୍‌ଭାବେ କହୁଥିଲା । ଭୋର୍ ହେଇ ସାରିଥିଲା । ରାଣୀମା ଭାରି ବ୍ୟାକୁଳ ଭାବରେ ଅପେକ୍ଷା କରୁଥିଲେ । କାରଣ ଭିତରୁ ଟୁପୁରୁ ଟାପୁରୁ ଶବ୍ଦ ସେ ଶୁଣିପାରୁଥିଲେ । କବାଟ ଖୋଲିବା ପାଇଁ ସେ ଇଶାରା ଦେଲେ । ଶ୍ୱେତକୁମାର କବାଟ ଖୋଲିଦେଇ ବାହାରକୁ ଚାଲିଗଲା ।

ଶ୍ୱେତପଦ୍ମାକୁ ଦେଖି ରାଣୀ ମାଆଙ୍କର ଆଖି ଖୋସି ହେଇଗଲା । ସେ ସେଇଠି ଠିଆ ହୋଇ ଚିତ୍ର ପ୍ରତିମା ପାଲଟି ଗଲେ । ଝିଅଟି ତାଙ୍କ ପାଦ ଛୁଇଁ ପ୍ରଣାମ କଲା । ତା'ର ଛୁଆଁରେ ସେ ସମ୍ବିତ ଫେରିପାଇ ଝିଅଟିକୁ କିଛି ନ ବୁଝି ନ ବିଚାରି ଛାତିକୁ ଆଉଜେଇ ଆଣିଲେ । ବାରମ୍ବାର ଗେଲରେ ଛାଇଦେଲେ ଚୁମ୍ବନରେ ତା ମୁହଁକୁ । ସମ୍ରାଟଙ୍କ ପାଖରୁ ତାଙ୍କ ପୁଅ ବାହଘରର ନିମନ୍ତ୍ରଣ ପାଇ ଶ୍ୱେତପଦ୍ମାର ବାପ ମାଆ ନିଜକୁ ଧନ୍ୟ ମନେକଲେ । ସବୁଠାରୁ ବଢ଼ିଆ ଉପଢୌକନ ଧରି, ବହୁ ସମ୍ବର୍ଦ୍ଧନା ପାଇ, ଅତ୍ୟନ୍ତ ହର୍ଷିତ ଉତ୍‌ଫୁଲ୍ଲ ହୋଇ ସେମାନେ ଯେତେବେଳେ ସମ୍ରାଟଙ୍କ ପାଖରେ ପହଞ୍ଚିଲେ ତାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲାନି । ବଧୂ ବେଶରେ ସେ ଯାହାକୁ ଦେଖିଛନ୍ତି ସେଇ ତ ତାଙ୍କରି ନୟନ ପିତୁଳା, ହଜି ଯାଇଥିବା ଶ୍ୱେତପଦ୍ମା !



# ଚୌରଚନ୍ଦ୍ର ଚୂଡ଼ାମଣି

ବାପ ବଙ୍କା, ପୁଅ ସଳଖା, ନାତି ଟୋକା ବଡ଼ ତରକା । ଆଜି ସେଇ ନାତି ଟୋକାର କାହାଣୀ କହୁଚି । ଗୋଟିଏ ରାଜ୍ୟରେ ଗୋଟିଏ ପାରିବାର ରାଜା ଥାଆନ୍ତି । ତାଙ୍କ ସରିସା ତାଙ୍କ ମନ୍ତ୍ରୀ । ରାଜକାର୍ଯ୍ୟ ଭାରି ସୁରୁଖୁରୁରେ ଚାଲିଥାଏ । ସବୁ ଖୁସିହାଲିରେ ଚଳୁଥାଏ ସିନା ରାଜା ରାଣୀଙ୍କ ମନରେ ହରଷ ନାହିଁ । ରାଜାପୁଅ କାର୍ତ୍ତିକ ପରି ସୁନ୍ଦର, ବୃହସ୍ପତିଙ୍କ ପରି ବିଜ୍ଞ । ବାପ ମାଆଙ୍କର ଆଖିର ମଣି । ପ୍ରଜାମାନଙ୍କର ଗଳାର ହାର । ସବୁ ଭଲ ଯେ ହେଲେ ରାଜକୁମାର ଜମା ବିଭାହେବାକୁ ମଙ୍ଗୁ ନାହାଁନ୍ତି । ଯୁବରାଜ କ'ଣ ସନ୍ୟାସୀ ହେଇ ଯିବେକି? ହେଲେ ସନ୍ୟାସର ଲକ୍ଷଣ ତ କିଛି ଦେଖା ଯାଉନି । ସମସ୍ତଙ୍କ ମନ ଦୁଃଖ । ଉତ୍ତରାଧିକାରୀ କିଏ ହେବ, ସେତ ପଛକଥା । ଏଇନେ ନାତିଟିଏ ପାଇଁ ରାଣୀ ମାଆଙ୍କ ମନ ଡହଳ ବିକଳ । ରାଜାରାଣୀଙ୍କ ମନ ଦୁଃଖ ମନ ଭିତରେ ଚାପି ହୋଇ ଥାଏ । ରାଜକାର୍ଯ୍ୟ ତା ବାଟରେ ଚାଲୁଥାଏ । ସମୟ ଗଡ଼ି ଗଡ଼ି ଯାଉଥାଏ ।

ସେଦିନ କ'ଣ ହେଇଚି ନା ରାଜକାର୍ଯ୍ୟ ବଡ଼ ଜୋରରେ ଚାଲିଚି । ମନ୍ତ୍ରୀ ପାରିଷଦମାନେ ଯେଝା ଆସନକୁ ଯିଏ ଅଳଙ୍କୃତ କରିଛନ୍ତି । ଯୁବରାଜଙ୍କ ଆସନ ଖାଲି ପଡ଼ିଚି । ବାହାରକୁ କୁଆଡ଼େ ବୁଲିଯାଇଚନ୍ତି । ଦିନ ଢଳି ଢଳି ଆସୁଚି । ସଭା ଟିକିଏ ଶିଥିଳ ହେଇ ଆସିଲାଣି । ଇଆଡୁ ସିଆଡୁ ଲଘୁକଥା ଆରମ୍ଭ ହେଇଗଲାଣି । ହଠାତ୍ ରାଜାଙ୍କ ମନରେ କ'ଣ ଆସିଲା କେଜାଣି ! ପଚାରିଦେଲେ, "ଆଛା, ଆପଣମାନେ ସମସ୍ତେ ଭାବିଚିନ୍ତି କହନ୍ତୁ ତ ଏଇ ସଂସାରରେ ସବୁଠାରୁ କୋଉ ବିଦ୍ୟାଟି ଭଲ?" କିଏ ଉତ୍ତର ଦେଇ ପାରିବେ? କେତେ ମନକୁ ଆସୁଚି, କେତେ ମନକୁ ଆସୁନି । ତାଙ୍କ ବିଶ୍ୱାସୀ ମନ୍ତ୍ରୀ ଶେଷରେ ଉତ୍ତର ଦେଲେ, "ମଣିମା ନେଇ ଆଣି ଥୋଇ ପାରିଲେ ଚୋରି ବିଦ୍ୟାଟି ଭଲ ।" ସମସ୍ତେ ଢେର ହସିଲେ । କିନ୍ତୁ ରାଜାଙ୍କ ମନକୁ କଥାଟା ପାଇଯାଇଛି । ରାଜା କହିଲେ, "ଠିକ୍ ଅଛି, ତେବେ କେବେ ଦିନେ ପରୀକ୍ଷା କରିବା ।"

ଠିକ୍ ସମୟରେ ସଭା ଭଙ୍ଗ ହେଲା, ଯେଝା ଘରକୁ ଯିଏ ବିଦା ହେଲେ । ରାତିକି ରାଜା ଖାଇପିଇ ପହଡ଼କୁ ବିଜେ କଲେଣି । ହେଲେ ଆଖିକୁ ନିଦ ନାଇଁ । ନେଇଆଣି ଥୋଇପାରିଲେ ଚୋରି ବିଦ୍ୟାଟି ଭଲ କଥାଟି ବାରମ୍ବାର ମନକୁ ଆସୁଚି । ତେବେ ପରୀକ୍ଷା କରାଯାଉ । କେବେ ଦିନେ କାହିଁକି? ଆଜି ହିଁ କରାଯାଉ । ଚଞ୍ଚଳ ଦାନ – ମହାପୁଣ୍ୟ । ବଡ଼ ପୁରୁଷେ କହିଚନ୍ତି, ଯାହା କାଲି କରିବା କଥା ତା ଆଜି କର, ଯାହା ଆଜି କରିବା କଥା ତା ତତ୍କ୍ଷଣାତ୍ କର । ତେବେ କରାଯାଉ । ରାଜା ଉଠି ବସିଲେ । ଯୋଗକୁ ଆଜି ରାଣୀହଂସପୁରକୁ ଯାଇନାହାନ୍ତି । ରାଜା ବେଶ ବଦଳାଇଲେ । କଳା ପୋଷାକ ସାଙ୍ଗକୁ ଦେହସାରା କଳାବୋଳା । ସିଂହ ଦରଜାରେ ପାଇକମାନେ



ସଜ ହତିଆରରେ ଜାଗ ତିଆର। ରାଜା ଚୋରା ଦରଜାଦେଇ ବାହାରି ଆସିଲେ। ଯାହା କେବଳ ରାଜା ରାଣୀ ଆଉ ଯୁବରାଜଙ୍କ ବ୍ୟତୀତ ଆଉ ସମସ୍ତଙ୍କୁ ଅଜଣା।

ବାହାରକୁ ଆସି ଚଉଦିଗକୁ ଚାହିଁଲେ। କୁଆଡ଼େ ଯିବେ। କେଉଁଆଡ଼କୁ ଯିବେ। ଯୋଗକୁ ସେଦିନ ଉଆଁସ ରାତି। ଘୁଟ୍‌ଘୁଟି ଅନ୍ଧାର। ମୁହଁକୁ ମୁହଁ ଦେଖା ଯାଉନି। ରାଜାଙ୍କ ମନ ଖୁସି ହେଇଗଲା – ଚୋରଙ୍କୁ ସୁଆଦ ଉଆଁସ ରାତି। ରାଜା ଲୁଚି ଲୁଚି ଛପି ଛପି ଚାଲିଛନ୍ତି। ଚାରିଆଡ଼ ନିଶୂନ, ଖାଲି ଝିଙ୍କାରିର ଝିଁ ଝିଁ ଶବ୍ଦ। ରାତି ଆସି ଅଧ ହେଲାଣି। ଯିଏ ଯୁଆଡ଼େ ତାଟି କବାଟ କିଳି ଶୋଇଲେଣି। ରାଜା ରାଜରାସ୍ତା ଛାଡ଼ି ପାଖ ରାସ୍ତା ଦେଇ ଆଗେଇଲେ। ବଜାର ଆଡ଼େ ଆଲୁଅ ଅଛି। ବଡ଼ ବଡ଼ ଦୋକାନ ଆଗରେ ଆଲୁଅ ଅଛି। ସିପେଇ ଜଗିଛନ୍ତି। ଧରା ପଡ଼ିଯାଇପାରନ୍ତି।

ବାଘର ତ ପୁଣି ଫାଗକୁ ଡର । ପରୀକ୍ଷା ତ ପରୀକ୍ଷା । ସେଥିରେ ବଡ଼ କ'ଣ ସାନ କ'ଣ? ଗଳି ଗଳିରେ ଖଣ୍ଡେ ଦୂର ଆଗେଇ ଆସିଲେଣି ରାଜା ।

ଆଗରେ ଡାହାଣ ପଟେ କୁମ୍ଭାର ଶାଳ । ଶାଳକୁ ଲାଗି କୁମ୍ଭାରର ଘର । ଅନ୍ଧାର ଘରର ଚାଳ ଦେଇ ଯାହା ଟିକିଏ ମିଞ୍ଜି ମିଞ୍ଜି ଲଣ୍ଠନ କି ଡିବି ଆଲୁଅର ଧାସ ଦେଖାଯାଉଛି । ଛାଇ ଛାଇଆ । ରାଜା ମନସ୍ଥ କଲେ, ଏଇଠି ଚୋରି କରିବେ, ହାଣ୍ଡି । ଏହେ, ଛି ଛି, ହାଣ୍ଡି ଗୋଟାଏ ସାମାନ୍ୟ ଜିନିଷ । ତାକୁ କ'ଣ ଚୋରି କରିବେ ମ? ମନରେ ଦୋ ଦୋ ପାଞ୍ଚ । ଚୋରି ତ ଚୋରି, ଛୋଟ ଚୋରି କ'ଣ? ଖାଲି ପରୀକ୍ଷା କରିବା କଥା ସିନା – ରାଜାଙ୍କୁ କ'ଣ ଦାରିଦ୍ର୍ୟ ଘୋଟିଚି ଯେ ଚୋରି କରି ଆସିଛନ୍ତି? ଶାଳ ଦୁଆରେ ପହଞ୍ଚି ସାରିଲେଣି, ଟିଣ କବାଟରେ ତାଲା ପଡ଼ି ନାଇଁ । କେବଳ ଛିଟିକିଣି ଲାଗିଚି । ରାଜା ଭିତରେ ପଶିଲେ । ଛାଇ ଛାଇ ଅନ୍ଧାର ଆଲୁଅରେ ଦେଖିଲେ ଧାଡ଼ି ଧାଡ଼ି ହାଣ୍ଡି । ହାଣ୍ଡି ଉପରେ ହାଣ୍ଡି ଥୁଆ ହେଇ ଚାଳକୁ ବୋଲି ଲାଗିଚି । ବଡ଼ ହାଣ୍ଡି... ଛୋଟ ହାଣ୍ଡି । ତାଡ଼ିଆ, ଆଟିକା, ପଲମ... ତା ଉପରକୁ ତା ଉପର । ତା ଉପରକୁ ତା ଉପର । ହାତ ପାଉନି ।

ରାଜା କ'ଣ କଲେ ନା, ତଳୁ ଧରି ଗୋଟାଏ ବଡ଼ ହାଣ୍ଡି ଭିଡ଼ି ଆଣିଲେ। ଧାଡ଼ିକ ଯାକ ହାଣ୍ଡି ଧଡ଼ଧାଡ଼ ହୋଇ ତଳକୁ ଖସି ପଡ଼ିଲା । ଯୋଉ ଭୀଷଣ ଶବ୍ଦ ହେଲା ସେଥିରେ କୁମ୍ଭାର ଘରର ପିଲାରୁ ମାଇପି ଯାଏ ସଭିଏଁ ଉଠି ପଡ଼ିଲେ । କ'ଣ ଷଣ୍ଢ ଟିଣରେ ଶିଙ୍ଘ ମାରି ପଶିଗଲା କି? ଦିନେ ନାଇଁ କି କାଳେ ନାଇଁ । ପୁଣି ପାଖରେ ଭାଟି ଲାଗିଚି । ଠେଙ୍ଗା, ବାଡ଼ି, ଲଉଡ଼ି, ଡିବି ଲଣ୍ଠନ ଧରି ସବୁ ଭିଡ଼ି ଆସିଲେ ଶାଳକୁ । ଅତରଛରେ ରାଜା ବାଟ ପାଉ ନାହାଁନ୍ତି । କୁଆଡ଼େ ବାହାରିବେ । କୋଉବାଟେ ବାହାରିବେ । ସେମାନେ ତ କୁଢ଼େଇ ଦେଇ ଗଲେ । ମାଡ଼ ଯେ ମାଡ଼, ଛତ୍ରଛାଳ ମାଡ଼ ।

ରାଜା ବିକଳରେ କହୁଥାନ୍ତି, "ହେ ମାରନା ମାରନା – ମୁଁ ରାଜା – ମୁଁ ତମ ରାଜା ।" ସେମାନେ କହିଲେ, "ତୁ ରାଜା, ତୁ ଆମ ରାଜା । ରାଜା ଉଆଁସ ରାତିରେ ଆସିଛନ୍ତି ହାଣ୍ଡି ଚୋରି କରିବାକୁ, ଦେ ଦୁଆଙ୍ଗି ।" ଖାଲି ଚାରିଆଡ଼େ ହାଣ୍ଡି ଗଦା ଥିବାରୁ ପାହାର ଠିକ୍ ଭାବରେ ବସୁନଥାଏ । ସେମାନେ ହାଣ୍ଡିକି ବି ଟିକିଏ ଜଗୁ ଥାଆନ୍ତି । ନ ହେଲେ ରାଜା ସେଇଠି ତ ତୁଳାଭିଣା ହେଇଯାଇଥାନ୍ତେ । ଯାହା ହଉ ହାଣ୍ଡି ଆଢୁଆଳରେ କଦର କରି ରାଜା କୌଣସି ମତେ ବାହାରକୁ ବାହାରି ଆସିଲେ । ଦିହ ଖାଲି ହାଉ ହାଉ ହେଇ ପୋଡୁଚି । ପାଦରେ ହାଣ୍ଡି ଖପରା ଖଣ୍ଡି ପଶି ବନି ବୋହିଯାଉଚି । ସୁକୁମାରିଆ ଦିହ, ସେଥିରେ ପୁଣି ଯୋଉ ମାଡ଼ । ଆଲୋ ମୋ ବୋପାଲୋ ।

ସବୁ ରାଗ ଯାଇ ମନ୍ତ୍ରୀ ଉପରେ ପଡ଼ିଲା । କାଲି ତା'ର ଦିନେ କି ମୋର ଦିନେ । ଲୁଚି ଲୁଚି ଯାଇ ସେଇ ପାଖ ଦରଜା ଦେଇ ଘରେ ପଶିଲେ । ଆଗ ନଖ ଉଷୁମ ପାଣି ଭର୍ତ୍ତିକରି ଶଙ୍ଖମଲମଲ ଗାଧୁଆ କୁଣ୍ଡ ଭିତରେ ଶୋଇ ରହିଲେ । ଆରାମ ଲାଗୁଚି । ଭଲ କରି କଳା ଛଡ଼େଇ ଶୁଖିଲା ପିନ୍ଧି ପଲଙ୍କର କଅଁଳ ଗଦି ରେଜେଇ ଭିତରେ ପଶିଗଲେ । ଓହୋ ବଞ୍ଚିଗଲା ମଣିଷ । କିଛି ସମୟ ପରେ ଉଠି ଆପେ ଆପେ ଔଷଧ ମାରିହେଲେ ଖଣ୍ଡିଆ ଜାଗାରେ ସବୁ । ତା ପରେ ଶୋଇ ପଡ଼ିଲେ । ଗଭୀର ନିଦରେ । ଦିନ ଆସି ଓଳିଏ ହେଲାଣି, ରାଜା ଉଠିବାକୁ ନାହାଁନ୍ତି । ରାଣୀମା ଆସି କେତେଥର ଦେଖି ଫେରି ଯାଉଛନ୍ତି । କ'ଣ କଥା? ରାଜା ଉଠୁ ନାହାଁନ୍ତି, ଖାଉ ନାହାଁନ୍ତି କି ପିଉ ନାହାଁନ୍ତି । ରାଣୀ ପାଖରେ ବସି ଧୀରେ ଧୀରେ ପାଦ ମଞ୍ଚାଳିଲେ । ହାଣ୍ଡି ଖପରା ପଶିଥିବା ଜାଗାରେ ହାତ ବାଜି

ଚାଉଁକିନା ଲାଗିଲା । ରାଜା ଧଡ଼ପଡ଼ ହୋଇ ଉଠି ବସିଲେ ।

କାଲି ରାତି କଥା ମନେ ପଡ଼ିଗଲା । ବାପାରେ କି ମାଡ଼ । ରାଗ ତାଳୁକୁ ଉଠିଗଲା । ଖବର ପଠାଗଲା । ଆଜି ଦରବାର ବନ୍ଦ । ମନ୍ତ୍ରୀଙ୍କୁ ନେଇ କାଳ କୋଠରୀରେ ବନ୍ଦ କରି ଦିଅ । ଗରମ କ୍ଷୀରରେ ମଜରା ବୁଟି ପକାଇ ପିଇ ଦେଇ ରାଜା ପୁଣି କଅଁଳ ବିଛଣାରେ ଦିହକୁ ଢାଳିଦେଲେ । ସେଦିନ ଦରବାର ବନ୍ଦ ରହିଲା । ପଚରା ନାଇଁ କି ଉଚୁରା ନାଇଁ, କେହି କହିବାର ନାଇଁ କି ବୋଲିବାର ନାହିଁ । ମନ୍ତ୍ରୀଙ୍କୁ କାଳ କୋଠରୀ ଭିତରେ ବନ୍ଦୀ କରିଦିଆଗଲା । ଏକଥା କାହିଁକି ହେଲା, କୋଉଥିପାଇଁ ହେଲା ଜାଣିବାକୁ କାହାରି ଜୁ ନ ଥିଲା । କଥା ଯେମିତି ଉଠି ଥିଲା, ସେଇମିତି ପୋତି ହୋଇଗଲା । ତା ଉପରେ ସାତ ପରସ୍ତ ମାଟି ପଡ଼ି ଗଲା । ସବୁ ଦିନ ପରି ସୂର୍ଯ୍ୟ ଦେବତା ପୂର୍ବ ଦିଗରେ ଉଇଁ ପଶ୍ଚିମ ଦିଗରେ ବୁଡୁଥିଲେ । ଯିଏ ଯେମିତି କାମ କରୁଥିଲେ, ଯାହା ଯେମିତି କାମ ହଉଥିଲା, ସେମିତି ହଉଥିଲା । ବିନା ମନ୍ତ୍ରୀରେ ସେମିତି ରାଜ୍ୟସଭା ମଧ୍ୟ ଚାଲିଥିଲା, ହେଲେ କାହାରି ମନରେ ସୁଖ ନ ଥିଲା । ରାଜାଙ୍କ ମନରୁ ରାଗ କମି କମି ଆସୁଥିଲା । ଏମିତି ଦିନ କଟୁଥିଲା... କଟିଯାଉଥିଲା ।

ଦିନେ ସକାଳୁ ସକାଳୁ ସମସ୍ତେ ଦେଖିଲେ ଏଡ଼େ ଏଡ଼େ ଅକ୍ଷରରେ ପ୍ରାଚୀର ପତ୍ରମାନ ମରା ହେଇଚି ଏଠି ସେଠି, ସେଠି ଏଠି, ଗଡ଼ ସାରା । "ଆସିଲା, ଆସିଲା, ଗଡ଼କୁ ଆସିଗଲା । ସାବଧାନ । ଇତି – ଚୌରଚନ୍ଦ୍ର ଚୂଡ଼ାମଣି" । କିଏ ଲେଖିଚି । କ'ଣ ପାଇଁ ଲେଖିଚି, କାହିଁକି ଲେଖିଚି, କେହି ଏଥିପାଇଁ ମୁଣ୍ଡ ଖର୍ଚ୍ଚ କଲେନି । ଯେଝା ବାଟରେ ଯେଝା କାମରେ ଯିଏ ଗଲେ । ହେଲେ ସମସ୍ତଙ୍କ ମନରେ ଗୋଟିଏ ଛୋଟ କିନ୍ତୁ ରହିଯାଇଥାଏ । ତା ପରଠାରୁ ଦିନେ ଛାଡ଼ି ଦି ଦିନ ଛାଡ଼ି, ଚାରି ଦିନ ଛାଡ଼ି ଗଡ଼ ଭିତରେ ଛୋଟ ମୋଟ ଚୋରି ହେବାକୁ ଲାଗିଲା । କିନ୍ତୁ ଏମିତି ବାଗରେ ଚୋରି ହଉଥିଲା ଯେ, ଚୋର ଜମାରୁ ଧରା ପଡୁ ନ ଥିଲେ । ଯଦିଓ ଚୋର ଆଗରୁ ଲେଖି ଜଣେଇ ଦଉଥିଲା ଆଜି କୋଉଠି ଚୋରି ହେବାକୁ ଯାଉଚି । ସେଦିନ ପ୍ରକୃତରେ ସମସ୍ତେ ଚଉକନ୍ନା ହେଇଗଲେ, ଯୋଉଦିନ ମନ୍ତ୍ରୀଙ୍କ ଦରଜାରେ ବଡ଼ ବଡ଼ ନାଲି ଅକ୍ଷରରେ ଲେଖା ହେଲା, "ଆଜି ମନ୍ତ୍ରୀଙ୍କ ଘରର ପାଳି – ଇତି ଚୌରଚନ୍ଦ୍ର ଚୂଡ଼ାମଣି ।" ଯାହାଘରୁ ଚୋରି ହଉଥିଲା, ସେଦିନ ଏହିପରି ତା ଦୁଆରେ ନାଲି ଅକ୍ଷରରେ ଲେଖା ମରା ହେଉଥିଲା, ଆଉ ଭଣିତାରେ ଚୌରଚନ୍ଦ୍ର ଚୂଡ଼ାମଣିର ନାଁ ରହୁଥିଲା ।

ଏଥର ପ୍ରକୃତରେ ରାଜା ଭାରି ଚିନ୍ତିତ ହେଇଗଲେ । କାରଣ ଘରେ ମନ୍ତ୍ରୀ ନାହାଁନ୍ତି । ଚାରିଦିଗରୁ ଜାଗ୍ରତ ପ୍ରହରୀମାନଙ୍କୁ ଜଗେଇ ଦିଆଗଲା । ସବୁମନ୍ତେ ସବୁ ପ୍ରକାର ନିରାପତ୍ତାର ବ୍ୟବସ୍ଥା କରିଦିଆଗଲା । ରାଜା ନିଶ୍ଚିନ୍ତ ହେଲେ । ବହୁ ଦିନୁ ଚୋରି କଥା ରାଜାଙ୍କ କାନକୁ ଆସୁ ନ ଥିଲା ନୁହେଁ । କିନ୍ତୁ ମନ୍ତ୍ରୀଙ୍କ କଥା ଅଲଗା । ସକାଳୁ ସକାଳୁ ହୁଲସ୍ଥୁଲ । ଏଡ଼େ କଡ଼ା ପ୍ରହରା ସତ୍ତ୍ୱେ ଦେଖାଗଲା ମନ୍ତ୍ରୀଙ୍କର ଭଣ୍ଡାର ଘର ଠିଆ ମୁକୁଳା । ଚାରିଆଡ଼େ କଳାକନା ବୁଲି ଯାଇଚି । ଯେଝା କୋଠରୀ ଭିତରେ ଯାହାକୁ ବାହାରୁ କୋଲପ ପକାଇ ଦେଇ ଚୋର ସବୁ ମୂଲ୍ୟବାନ ସମ୍ପଦ ନେଇ ଛୁ । ସବୁ ଧନବାନ କପାଳରେ ହାତ ଦେଲେ, ବିପଦ ଗଣିଲେ ।

ଦି ଚାରିଦିନ କଟିଗଲା । ସେଦିନ ବର୍ଣ୍ଣାଳୀ ରତ୍ନ ଭଣ୍ଡାର ଫାଟକରେ ଟଙ୍ଗା ଥିଲା ସେଇ ନାଲିକାଳିର ଦସ୍ତାବିଜ । "ନିକଟରେ ତୁମ ପାଳି – ଇତି ଚୌରଚନ୍ଦ୍ର ଚୂଡ଼ାମଣି ।" ସମସ୍ତେ ଚମକି

ଉଠିଲେ । ବର୍ଣ୍ଣାଳି ରତ୍ନ ଭଣ୍ଡାର ଥିଲା ରାଜ୍ୟର ସବୁଠାରୁ ବୃହତ୍ତମ ଅଳଙ୍କାର ଦୋକାନ । କୋଟି କୋଟି ଟଙ୍କାର ହୀରା, ନୀଳା, ରତ୍ନ ଖଚିତ ହାର ମାଳ ଅଳଙ୍କାରମାନ ଏହିଠାରେ ହିଁ ନିତି କ୍ରୟ ବିକ୍ରୟ ହୋଇଥାଏ । ଦୂରଦୂରାନ୍ତ ରାଜ୍ୟମାନଙ୍କର ଧନାଢ଼୍ୟ ବ୍ୟକ୍ତି ବିଶେଷଙ୍କ ସହିତ, ରାଜା ମହାରାଜାମାନଙ୍କ ସହିତ, ତା'ର କାରବାର । ପହରା ଦ୍ୱିଗୁଣିତ କରିଦିଆଗଲା । ଦିନେ ଗଲା, ଦି ଦିନ ଗଲା, ଚାରିଦିନ ମଧ୍ୟ ଚାଲିଗଲା । ଏମିତି ଏମିତି ଦିନ ଗଡ଼ିବାରେ ଲାଗିଲା । ସବୁ ଉତ୍ତେଜନା ଶିଥିଳ ହେଇ ଆସିଲା । କାରବାର ଯେମିତି ଚାଲୁଥିଲା, ସେମିତି ଜୋର୍ ସୋର୍‌ରେ ଚାଲୁଥିଲା । ରାଜ୍ୟ ବାହାରୁ ଦୂରଦୂରାନ୍ତରୁ ଗାଡ଼ି ମଟର ସବାରୀ ସବୁ ଦୁଆର ମୁହଁରେ ଗଦା ହଉଥିଲା ।

ଦିନେ ମୁହଁ ସଞ୍ଜବେଳେ, ଆଗରେ ପଛରେ ସିପେଇ ଭର୍ତ୍ତି ଦୁଇଟା ଗାଡ଼ି ମଝିରେ, ଗୋଟାଏ ଦାମିକା ଗାଡ଼ି ଆସି ରହିଲା ବର୍ଣ୍ଣାଳୀ ରତ୍ନ ଭଣ୍ଡାର ସାମ୍ନାରେ । ସମସ୍ତେ ଚିହ୍ନିଲେ ଏ ପାତିଆଲା ମହାରାଜାଙ୍କ ଗାଡ଼ି । ମୂଲ୍ୟବାନ ବସନ ଭୂଷଣରେ ଦୁଇଟି ସୁନ୍ଦରୀ ଝିଅ ମଝି ଗାଡ଼ିରୁ ବାହାରି ସିପାହୀମାନଙ୍କ ସହିତ ଭିତରକୁ ଆସିଲେ । ପାତିଆଲା ରାଜବଂଶ ସହିତ ରତ୍ନ ଭଣ୍ଡାରର ପୁରୁଷାନୁକ୍ରମିକ କାରବାର । ଲକ୍ଷ ଲକ୍ଷ କୋଟି କୋଟି ଟଙ୍କାର ରାଜକୁମାରୀଙ୍କ ବିଭାଘର ପାଇଁ ଅଳଙ୍କାରର ବରାଦି ଅଛି । ମାଲିକର ଆଶା, ବଡ଼ ଧରଣର ଗୋଟେ ବଡ଼ ବଢ଼ିଆ ବ୍ୟବସ୍ଥା ନିଶ୍ଚୟ ହେବ । ଏମାନଙ୍କୁ ଦେଖି ମାଲିକଙ୍କ ସହିତ ସବୁ କର୍ମଚାରୀ ସମାଦର ସହିତ ଅଭିନନ୍ଦନ କରି ଆସନ ଗ୍ରହଣ କରିବାକୁ ଅନୁରୋଧ କଲେ । ଝିଅମାନେ କହିଲେ, "ନିଜେ ରାଜକୁମାରୀ ଗାଡ଼ିରେ ଅଛନ୍ତି । ତାଙ୍କୁ କିଛି ଅଳଙ୍କାର ଦେଖାନ୍ତୁ ।" ମାଲିକ କେତେକ କର୍ମଚାରୀମାନଙ୍କ ଗହଣରେ ସୁବାସିତ ପାନୀୟ ଆଉ କିଛି ରତ୍ନଖଚିତ ଅଳଙ୍କାର ଧରି ରାଜକୁମାରୀଙ୍କ ପାଖକୁ ଆସି ତାଙ୍କୁ ଭବ୍ୟ ସମ୍ବର୍ଦ୍ଧନା କଲେ ।

ନାନା ଅଳଙ୍କାର ଭୂଷିତ, ପଟ୍ଟବସ୍ତ୍ର ପରିହିତା, ପରୀ ସଦୃଶା ରୂପସୀ ରାଜକୁମାରୀ ପାନୀୟ ଗ୍ରହଣ ନ କରି ଧନ୍ୟବାଦ ସହ ତାଙ୍କର ଅଭିବାଦନ ଗ୍ରହଣ କଲେ ଏବଂ ଆଣିଥିବା ଅଳଙ୍କାରମାନଙ୍କ ଆଡ଼କୁ ଦୃଷ୍ଟିଦେଲେ । ଅଳଙ୍କାରଗୁଡ଼ିକ ଅତ୍ୟନ୍ତ ମୂଲ୍ୟବାନ ଏବଂ ସୌନ୍ଦର୍ଯ୍ୟସମ୍ପନ୍ନ ଥିଲା । ରାଜକୁମାରୀଙ୍କ ପସନ୍ଦ ଅନୁରୂପ ହାର, ଚୁଡ଼ି, କର୍ଣ୍ଣଫୁଲ, ବଳା ଇତ୍ୟାଦି ପାଞ୍ଚୋଟି ସେଟ୍ ରତ୍ନ ଅଳଙ୍କାର ଦେଇ ତାଙ୍କଠାରୁ ଦୁଇ ଲକ୍ଷ ଟଙ୍କା ନଗଦ ଏବଂ ଏକ କୋଟି ସତୁରୀ ଲକ୍ଷର ଚେକ୍ ରଖିଲେ । ରାଜକୁମାରୀ ନିଜସ୍ୱ ବହିରୁ ଚେକ୍ କାଟିଥିଲେ ଓ ଏଠାରେ ଥିବା ପାତିଆଲା ବ୍ୟାଙ୍କରୁ ଭଙ୍ଗାଇ ଆଣିବାକୁ କହିଥିଲେ । ତାକୁ ନେଇ ବର୍ଣ୍ଣାଳୀ ରତ୍ନ ଭଣ୍ଡାରର ମାଲିକ ଏବଂ କର୍ମଚାରୀମାନେ ରାଜକୁମାରୀଙ୍କୁ ସମ୍ବର୍ଦ୍ଧନା ଜଣାଇ ସହର୍ଷେ ସଗର୍ବେ ବିଦାୟ ଦେଲେ । ଆଗରେ ପଛରେ ସିପାହୀ ଗାଡ଼ି ସହିତ ସଖୀମାନଙ୍କ ସଙ୍ଗରେ ରାଜକୁମାରୀଙ୍କ ଗାଡ଼ି ରାଜହଂସ ପରି ଗତି କରୁଥିଲା ।

ଠିକ୍ ପନ୍ଦର ମିନିଟ୍ ପରେ ବର୍ଣ୍ଣାଳୀ ରତ୍ନ ଭଣ୍ଡାରର ମାଲିକଙ୍କ ମୁଣ୍ଡକୁ ତେନ୍ତୁଳିଆ ବିଛା କ'ଣ... ସପ୍ତଫଣା ବିଶିଷ୍ଟ ମହାନାଗ ଦଂଶନ କଲା । ତାଙ୍କ ସହିତ ଆକାଶ ପୃଥିବୀ ସପ୍ତସ୍ୱର୍ଗ ତଳ ଅତଳ ପାତାଳ ରସାତଳ ସବୁ ଘିରିଘିରି ଘୂରିବାକୁ ଲାଗିଲା । ସେ ଘଡ଼ି ଘଡ଼ି ଚେତା ହରାଉଥିଲେ । ଯେତେବେଳେ ତାଙ୍କ ଲୋକ ବ୍ୟାଙ୍କରୁ ଫେରି ଆସିଲେ ଜଣାଗଲା ଯେ ସେ ଟଙ୍କା ଆଉ ଚେକ୍ ବହି ସବୁ ନକଲି ଥିଲା । ସେନାପତିଙ୍କ ସହ ରାଜାଙ୍କ ସିପାହୀମାନେ ଚଉଦିଗ ଖେଦି ପକାଇଲେ । ପନ୍ଦର କୋଡ଼ିଏ ମାଇଲ୍ ଦୂରରେ ତିନୋଟି ଗାଡ଼ି ମିଳିଲା ଯେଉଁଥିରେ ରାଜଜେମା ଆଉ ତାଙ୍କ ସଖୀମାନେ

ପଧାରିଥିଲେ। ସେ ଗାଡ଼ି, ଆଉ ତା'ର ଆଗରେ ପଛରେ ଚାଲୁଥିଲା ସିପାହୀମାନଙ୍କ ଗାଡ଼ି ଧାଡ଼ି ବାନ୍ଧି ଠିଆ ହୋଇ ରହିଥିଲା। ଆଉ କାହାରି ଚିହ୍ନ ବର୍ଣ୍ଣ ବି ନ ଥିଲା। କନା ପଡ଼ିଥିଲା, କର୍ପୂର କାହିଁ କୁଆଡ଼େ ଉଡ଼ି ଯାଇଥିଲା। ରାଜମହଲରୁ ମଧ୍ୟ କୌଣସି ସୁସମାଚାର ମିଳି ନ ଥିଲା। ଜେମାଙ୍କର ବିବାହ ତାରିଖ ଅନିର୍ଦ୍ଦିଷ୍ଟ କାଳ ପାଇଁ ଘୁଞ୍ଚି ଯାଇଥିବାରୁ ଏବଂ ରାଜକୁମାର ରାଜ୍ୟ ବାହାରେ ଥିବାରୁ ରତ୍ନ ଅଳଙ୍କାର ଭଣ୍ଡାରକୁ ରାଜବାଟୀ ତରଫରୁ କେହି ଆସିବାର ପ୍ରଶ୍ନ ହିଁ ଉଠୁନାହିଁ।

ଚୋରମାନେ ଛାଡ଼ି ଯାଇଥିବା ଗାଡ଼ିରୁ କାଳେ କିଛି ସୂରାକ ମିଳିଯାଇପାରେ ଭାବି, ସେନାପତି ଆଉ ସିପାହୀମାନେ ଖୋଜୁଥିଲେ। କିଛି ତ ହେଲେ ପାଇଲେ, ହେଲେ ଅକଲ ଗୁଡ୍ଡୁମ୍। ଜେମା ବସିଥିବା ଜାଗାରୁ ଚାରି ପରସ୍ତ ଭଙ୍ଗା ଯାଇଥିବା ସୁନେଲି ରଙ୍ଗର ଗୋଟିଏ ସିଲ୍କ ରୁମାଲ ପାଇଲେ ଯେଉଁଥିରେ ଲାଲ କାଳିରେ ଲେଖାଥିଲା – "ଏଥର ସେନାପତିଙ୍କ ପାଳି। ଇତି ଚୌରଚନ୍ଦ୍ର ଚୂଡ଼ାମଣି।" ସେନାପତି ଆହୁରି ଚଉକନ୍ନା ହୋଇଗଲେ। ଗଡ଼ର ଚଉସୀମାରେ ଦିଗୁଣା ସିପାହୀ ମୁତୟନ କରାଗଲା। ରାଜାଙ୍କ କାନରେ ସବୁ ଖବର ପହଞ୍ଚୁଥାଏ। ହେଲେ ଆଉ କ'ଣ କରାଯାଇପାରେ ସେ କିଛି ଚିନ୍ତା ମଧ୍ୟ କରି ପାରୁନଥାନ୍ତି।

ଏମିତି ଏମିତି ଆହୁରି ଦି ତିନି ଦିନ ବିତିଗଲାଣି। ଉଆସର ପାଖାପାଖି ସେନାପତିଙ୍କ କୋଠି। ସେ ନିଜେ ନିଜର କାମ ହାତକୁ ନେଇଛନ୍ତି ଗୋଟିଏ ନୂଆ ପ୍ରକାରର ଯୋଜନାରେ। ବିରାଟ ଗୋଟାଏ ହରିକାଠ ରଖି ସେ ନିଜେ ପଇଁତରା ମାରୁଥିଲେ। ନୂଆ ପ୍ରକାରର କଏଦୀ ଯନ୍ତ୍ର ଦେଖିବାକୁ ସାରା ଦିନ କେତେ ଲୋକ, ପିଲା ବୁଢ଼ା ମରଦ ମାଇପି ସବୁ ଜମା ହଉଥିଲେ। ସେ ଗୋଟାଏ ଯନ୍ତା, ସେଇ ଯନ୍ତା ଭିତରେ ଚୋରର ହାତ ଗୋଡ଼ ପୂରାଇ ଖିଲ ମାରିଦେଲେ ସେ ଆଉ ନ ଚଳନ୍ତି। ଦେଖିବାକୁ ଆସିଥିବା ରାଜା ରାଣୀ ଯୁବରାଜଙ୍କୁ ଗର୍ବିତ ହସ ହସି ବୁଝାଉଥିଲେ ସେନାପତି। ଏତେ ବିରାଟ ବିରାଟ ଦି'ଟା କାଠକୁ ଘୋଷାଡ଼ି କୁଆଡ଼େ କେତେଦୂର ଯାଇପାରିବ ଚୋର। ରାଜା ରାଣୀ ଯୁବରାଜ ସେନାପତିଙ୍କ ବୁଦ୍ଧିକୁ ଢେର ତାରିଫ କରିଛନ୍ତି। ଏଥିପାଇଁ ନିଜକୁ ସେ କମ୍ ଧନ୍ୟବାଦ ଦେଉ ନାହାଁନ୍ତି। କେତେ ରାତି ହେଲାଣି କେଜାଣି?

ଉଆସ ଭିତରୁ ଜେମାଦେଇ ବାହାରି ଆସୁଛନ୍ତି। ସେନାପତି ଦେଖିଲେ, ତାଙ୍କରି ଆଡ଼କୁ ଆସୁଛନ୍ତି। ହୁଏତ ହରିକାଠ ଦେଖି। ସେ ସାଲ୍ୟୁଟ ମାରି ତାଙ୍କୁ ମାନ୍ୟ କଲେ। ଜେମା ଦେଇ କହିଲେ ସମସ୍ତେ ହରିକାଠ ଦେଖି ଆସିଲେ। ସେ ନ ଥିଲେ, ଥିଲେ ମଧ୍ୟ ତାଙ୍କୁ ଏଠିକୁ ଆସିବାକୁ ମନା – ସେଥିପାଇଁ ସମସ୍ତେ ଶୋଇଗଲା ପରେ ସେ ଏଇ ବହୁ ଚର୍ଚ୍ଚିତ ହରିକାଠ ଦେଖି ଆସିଛନ୍ତି। ଏ ଭିତରେ ଚୋର କେମିତି ରହିବ କ'ଣ କରିବ ସେନାପତି ତାଙ୍କୁ ତନ୍ନ ତନ୍ନ କରି ବୁଝାଇଲେ। ହେଲେ ରାଜକୁମାରୀ ଜମାରୁ ବୁଝିପାରୁ ନାହାନ୍ତି। ଜେମା କହିଲେ, "ଆପଣ ମୋର ହାତ ଗୋଡ଼ ଏଥିରେ ପୂରାଇ ଖିଲ ମାରି ଦିଅନ୍ତୁ। ତା ହେଲେ ମୁଁ ଠିକ୍ ଭାବରେ ବୁଝିପାରିବି।" ସେନାପତି ହାତେ ଲମ୍ବର ଜିଭ କାଢ଼ିଲେ। ଆରେ ବାପ୍ ରେ... ରାଣୀ ମାଆ ଏକଥା ଜାଣିଲେ ମତେ ଆଉ ରଖିବେଟି? ଜେମା ଜିଗର କଲେ। କାହାକୁ ବି ଏକଥା କହିବେନି ବୋଲି ପ୍ରତିଜ୍ଞା କଲେ। ହେଲେ ସେନାପତି ଏପାଖରୁ ସେପାଖ ଯାଏ ତାଙ୍କ ବିଶାଳ ମୁଣ୍ଡ ହଲେଇ କହିଲେ, "ନା... ନା... ନା। କୋଉ କଥା କୋଉଠି ଲୁଚିଲାଣି ନା ଆଜି ଲୁଚିବ? ଆପଣ ସିନା ପିଲା ମଣିଷ। ମୁଁ ତ ଜାଣିବା

ଶୁଣିବାର। ମୋତେ କେହିଆଉ କ ଡାକରେ ଗଣିବେଟି?"

ହତାଶରେ ଜେମା କାନ୍ଦି ପକାଇଲେ। କହିଲେ, "ତା ହେଲେ ଆପଣ ମତେ ଦେଖେଇବେ ନି?" ଜେମାଙ୍କ କାନ୍ଦ ଦେଖି ସେନାପତି ତ ଛାନିଆ। କହିଲେ, "ହଉ ଶୁଣନ୍ତୁ। ମୁଁ ବରଂଚ ମୋର ହାତ ଗୋଡ଼ ଏଥିରେ ପୂରାଉଚି। ଆପଣ ଧୀର କରି ଖିଲ ମାରନ୍ତୁ।" ଜେମା ଖୁସି ହେଇଗଲେ। ସେନାପତି ଆପଣାର ହାତ ଗୋଡ଼ ସେଥିରେ ରଖିଲେ। ଜେମା ଖିଲ ମାରି ମାରି କହିଲେ, "ମୁଁ ଏଥର ଭଲ କରି ବୁଝିଗଲି। ଆପଣ କେତେ ଭଲ। ମୁଁ ରାଜା ମଣିମାଙ୍କୁ ଜଣାଇ ପ୍ରମୋଶନ କରାଇ ଦେବି। ଏବେ ଖିଲ ଖୋଲୁଚି", କହି ଭିତରକୁ ଭିତରକୁ ଆଉ ଠୁକି ଚାଲିଲେ। ସେନାପତି ଏ ପାଖରୁ ନୁହଁ ସେ ପାଖରୁ ବୋଲି କହିହେଲେ। ଅବୁଝା ଜେମା ଖିଲ କାଢ଼ିବାକୁ ପ୍ରାଣ ପଣେ ଚେଷ୍ଟା କରୁଥିଲେ। ହେଲେ ଜମାରୁ ଜମାରୁ ତ ବାହାରୁନି... । ସିଏ ଆଉ କ'ଣ କରନ୍ତେ। ଶେଷରେ କହିଲେ, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ। ଅପେକ୍ଷା କରନ୍ତୁ ମୁଁ ଖୋଜାକୁ ଡାକି ଆଣେ। ସେ ଅତି ସହଜରେ ଖୋଲି ଦେବ। ଅପେକ୍ଷା କରିବା ଛଡ଼ା ସେନାପତିଙ୍କର କ'ଣ ବା ଆଉ ଗତି ଥିଲା। ଜେମା ଗଲେ ଯେ ଗଲେ। ଆଉ ଫେରି ନାହାଁନ୍ତି। କାଇଁ କିଏ? ଖୋଜା ନା ପେଜା?

ସକାଳ ପାହି ପାହି ଆସୁଚି। ଲାଜରେ ସେ ଆଉ ମୁହଁ ଟେକି ପାରୁନାହାଁନ୍ତି। ରାଜ୍ୟର ସେନାପତି ଏମିତି ମାତବରିଆ ମଣିଷ ହୋଇ ପୁଣି ହରିକାଠରେ? ରାଜା ତେଣେ ଧଡ଼ ପଡ଼ ହୋଇ ତରବରିଆରେ ଧାଇଁଲା ପରି ଚାଲି ଆସୁଚନ୍ତି। ତାଙ୍କୁ କେହି ନିଦରୁ ଉଠେଇ କହିଲା ପରି ଲାଗିଲା, "ମହାରାଜ, ମହାରାଜ, ଚଞ୍ଚଳ ଯାଆନ୍ତୁ, ଦେଖିବେ ହରିକାଠରେ ଚୋର।" ମହାରାଜ ମହାଖୁସିରେ ଦଉଡ଼ିଛନ୍ତି ଚୋର ଦେଖି। କେତେ ଚାଲାକ୍, କେତେ ହୁସିଆର। ସାରା ରାଜ୍ୟରେ ହୁଲ୍‌ସ୍ଥୁଲ୍ କରି ସାରିଲାଣି ସେ। କିନ୍ତୁ ରାଜା ଆଶ୍ଚର୍ଯ୍ୟରେ ଚାହିଁ ରହିଲେ। ତାଙ୍କ ସେନାମାନଙ୍କର ମୁଖ୍ୟ... ସେନାପତି ଏମିତି ଅବସ୍ଥାରେ। ସେନାପତି ଲଜ୍ଜିତ ହୋଇ ରାଜାଙ୍କୁ ଅଭିବାଦନ କରି ଜେମାମଣିଙ୍କ ଲାଗି ତାଙ୍କର ଏ ଅବସ୍ଥା ଜଣାଇଲେ। ସବୁ କଥା ରାଜାଙ୍କୁ ବୁଝାଇ କହିଲେ। ରାଜାଙ୍କୁ ବଡ଼ ଆମୋଦ ଲାଗିଲା। ସେ ଠୋ ଠୋ ହସିଲେ। "ତା ହେଲେ ସେଇ ଚତୁର ଚୋର ଆପଣଙ୍କୁ ହରିକାଠ ଚଖେଇ ଦେଲା ନା। ଜେମା ତ ଚାରିଦିନ ହେଲା ମାମୁ ଘର ଯାଇଚନ୍ତି। ଆପଣ ତ ନିଜକୁ ରକ୍ଷା କରି ପାରିଲେନି ଆଉ ରାଜ୍ୟ ରକ୍ଷା କରିବେ କ'ଣ?"

ଚୋର କଥା ରାଜାଙ୍କୁ ବଡ଼ କୌତୁକ ଲାଗୁଥିଲା – ସେ ହସି ହସି ସେନାପତିଙ୍କର ଖିଲ କାଢ଼ିବାକୁ ବ୍ୟର୍ଥ ଚେଷ୍ଟା କରୁଥିଲେ। କିନ୍ତୁ କିଳା ଏତେ ଜୋର୍‌ରେ ବସି ଯାଇଥିଲା ଯେ ଖୋଲିବାର ନାଁ ଧରୁ ନ ଥିଲା। ଏଇ ସମୟରେ ସେନାପତିଙ୍କର ଖାସ୍ ପରିଚାରକ ଆସି ଜଣାଇଲା, "ରାତିରେ ଚୋର କିଛି ନିଦ ମାଟି ପକେଇଦେଇଥିଲା। ସମସ୍ତେ ଗହଳ ନିଦରେ ଶୋଇଗଲେ। ବଡ଼ ସହଜରେ ଲୁହା ସିନ୍ଦୁକ ଖୋଲି ଚୋର ସବୁ ଖାଲି କରି ଦେଇଚି ଆଜ୍ଞା।"

ରାଜା ବୁଲିପଡ଼ି ଉଆସ ଆଡ଼କୁ ମୁହାଁଇଲେ। ଆଗରେ ଗୋଟାଏ ବିରାଟ ଧଳା ଷଣ୍ଢ ଠିଆ ହୋଇ ପାକୁଳି କରୁଚି। ତା ପିଠିରେ ବଡ଼ ବଡ଼ ନାଲି ଅକ୍ଷରରେ ଲେଖା ହୋଇଚି – "ଏବେ ଆପଣଙ୍କ ଗନ୍ତାଘର ସମ୍ଭାଳନ୍ତୁ ମଣିମା। ଇତି ଚୌରଚନ୍ଦ୍ର ଚୂଡ଼ାମଣି।" ରାଜା ଚମକି ପଡ଼ିଲେ। ମୁହଁ କଠିନ ହୋଇ ଆସିଲା। ସେ ବଡ଼ ପାଟିରେ କହିଲେ, "ମୁଁ ତମ ଚାଲେଞ୍ଜ ଗ୍ରହଣ କଲି ଚୌରଚନ୍ଦ୍ର

ଚୂଡ଼ାମଣି।" ରାଜା ଉଆସକୁ ବିଜେ କଲେ। ନିଜେ ଚୋର ଧରିବାର ଲାଳସା। କିନ୍ତୁ ମନେ ମନେ ସେ ତାକୁ ବାହାବାଃ ଦେଉଥିଲେ। ତା ବାହାଦୁରୀକୁ ସାବାସୀ ଦେଉଥିଲେ। ତା ବୁଦ୍ଧିମତାକୁ ପ୍ରଶଂସା କରୁଥିଲେ। ତାକୁ ଏକାକୀ ଧରିବାର ତୀବ୍ର ଇଚ୍ଛା।

ସେଦିନ ରାତିରେ ଉଆସର ଜଗମଗ କରୁଥିବା ସମସ୍ତ ଆଲୋକ ବନ୍ଦ କରିଦିଆ ଯାଇଥିଲା। ରାଜବାଟୀର ମୁଖ୍ୟ ଦରଜାରେ ପ୍ରକାଶ୍ୟ ଭାବରେ କେହି କୋଉଠି ଜଗୁଆଳ ନ ଥିଲେ। ରାଜାଙ୍କ ନିର୍ଦ୍ଦେଶରେ ସେମାନେ କୋଉ କୋଉ ଗୁପ୍ତ ଜାଗାମାନଙ୍କରେ ଛପି ରହିଥିଲେ କାହାରିକୁ ଜଣା ନ ଥିଲା। ରାଜା ନିଜେ ଘୋଡ଼ାରେ ଚଢ଼ି ଗଡ଼ର ଏମୁଣ୍ଡରୁ ସେ ମୁଣ୍ଡ କଦମ ଚାଲି ପକାଉଥିଲେ। ରାତି ଧିରେ ଧିରେ ଘନ ହେଉଥିଲା। ଲୋକମାନଙ୍କୁ କଡ଼ା ନିର୍ଦ୍ଦେଶ ଥିଲା, କେହି ନିଜ ଘର ବାହାରକୁ ମଧ୍ୟ ବାହାରି ପାରିବେ ନାହିଁ। ରାତି ଆହୁରି ଗଭୀରରୁ ଗଭୀରତର ହେଉଥିଲା। କେବଳ ଘୋଡ଼ାର ଟାପୁ ଶବ୍ଦ ଶୁଣାଯାଉଥିଲା। ଚୋରର କାହିଁ ଚିହ୍ନ ବର୍ଣ୍ଣ ନ ଥିଲା।

ରାଜା ମନେ ମନେ ହସୁଥିଲେ। ବିଚରା ଚୋର ବାପୁଡ଼ା ଆଜି ଭାରି ଡରି ଯାଇଚି। ସେ ଭଲ କରି ଜାଣି ସାରିଚି ଯେ କାହା ପାଲରେ ସେ ପଡ଼ିଚି। ଆଜି ନିଶବ୍ଦ ନିଶ୍ଚଳ ରାତ୍ରିର ଜାଗ୍ରତ ପ୍ରହରୀ ଘୋଡ଼ାରେ ବୁଲି ବୁଲି ଚାରିଆଡ଼କୁ ଦୃଷ୍ଟି ଦଉଚନ୍ତି। କୋଉ ଗଳି କନ୍ଦି ଅରମା ଜାଗା ସବୁ ଯାହା ସେ ଜୀବନରେ କେବେ ଦେଖି ନ ଥିଲେ ଆଜି ସିଆଡ଼େ ବୁଲି ଦେଖୁଛନ୍ତି। ରାତି ବଢ଼ି ଚାଲିଚି... ବଢ଼ି ବଢ଼ି ଚାଲିଚି। ସମୟ ଗଡ଼ି ଚାଲିଚି... ଗଡ଼ି ଗଡ଼ି ଚାଲିଚି। ରାଜା ନିରାଶ ହେଲେଣି। ଆଜି ଆଉ ଚୋର ବାବୁଙ୍କର ଦର୍ଶନ ମିଳିବନି। ସକାଳ ହେବାକୁ ଆଉ ଢେର ବେଳ ବାକି ନାହିଁ, ବୋଧହୁଏ। ରାଜା ଏବେ ଫେରିବେ। ତୁଚ୍ଛାଟାରେ ଖାଲି ବୁଲିବୁଲି ଥକି ପଡ଼ିଲେଣି ସିନା, କିଛି କାମର ନୁହଁ।

ହଠାତ୍ କାନ ଠିଆ ଠିଆ ହୋଇଗଲା। ଏଇ ନିକଟରେ ରହି ରହି କିଛି ଅସ୍ପଷ୍ଟ ଶବ୍ଦ ଶୁଣାଯାଉଚି। ଛୁକ... ଛୁକ..., ସତର୍କ ଲୁଗା କଟାର ଶବ୍ଦ। ଆଗରେ ଅରମା ଅପରାନ୍ତରେ, କିଆ ବୁଦା ଆଢୁଆଳରେ ଗୋଟିଏ ଛୋଟ ଟୁବି ଗାଡ଼ିଆରେ କେହି ଜଣେ ଲୁଗା କାଟୁଛି। ଆଦେଶ ଜାରି ହେଇଚି କେହି ଯେମିତି ବାହାରକୁ ନ ବାହାରନ୍ତି। ତେବେ କିଏ ସିଏ ଏତେ ରାତିରେ ଏଇ ଅପନ୍ତରା ଭୁଇଁରେ ବସି ଲୁଗା କାଟୁଚି? ରାଜାଙ୍କ ମନରେ ଘୋର ସନ୍ଦେହ। ଚାଲଚାଲ ହେଇ ବହୁ କଷ୍ଟରେ ସେ କୁଜି ଗାଡ଼ିଆ ପାଖରେ ପହଞ୍ଚିଲେ। ଦେଖିଲେ ସତୁରୀ କି ଅଶୀ ବର୍ଷର ହେବ ଧୋକଡ଼ି ବୁଢ଼ୀଟିଏ ବସି ବେଶ ଦାମିକା ପୋଷାକଗୁଡ଼ିଏ କାଟୁଛି।

ରାଜାଙ୍କୁ ଦେଖି ବୁଢ଼ୀ ଥରି ଥରିକା ଠିଆ ହେଇପଡ଼ିଲା – ପଡ଼ିଯିବ ପରା। ଛାପଛାପକା ଜହ୍ନ ଆଲୁଅ ପତ୍ର ଫାଙ୍କରେ ବୁଢ଼ୀର କାଳି ବିଲେଇ ମୁହଁରେ ପଡ଼ି ବିଚିତ୍ର ଦେଖାଯାଉଛି। ଚମ ଧୁଡୁଧୁଡୁ। ରାଜାଙ୍କ ଧମକାଣିରେ ବୁଢ଼ୀର କଥା କହୁ କହୁ ଖନି ମାରି ଯାଉଚି। ରାଜାଙ୍କ ପାଦ ତଳେ ପଡ଼ି ଡରି ଡରିକା ବୁଢ଼ୀ କହିଲା, "ମୋର କିଛି ଦୋଷ ନାହିଁ ମଣିମା। ପାଞ୍ଚ ହାତ କି ଦଶ ହାତର ମରଦଟା ମୋ ଘରୁ ମୋତେ ଘୋଷାଡ଼ି ଆଣିଲା, ନ ଆସିଲେ ମାରିଦେବ କହିଲା। ମତେ ଏଇ ନୁଗା କାଟିବାକୁ ଦେଇଯାଇଚି। ସେ କୁଆଡ଼େ ଛାମୁଙ୍କୁ ଦର୍ଶନ କରିବାକୁ ଯାଇଚି। ଫେରିଲା ବାଟରେ ମୋଠୁ ନୁଗା ନେଇକି ଯିବ।" ରାଜାଙ୍କ ମନରେ ଆଶାର ସଂଚାର ହେଲା। ସେଇ ନିଶ୍ଚୟ ଚୋର। ବୁଢ଼ୀକୁ ଧମକେଇ ପଚାରିଲେ, "ସତ କହୁଛୁ ବୁଢ଼ୀ?" ବୁଢ଼ୀ ଧକେଇ ଧକେଇ କହିଲା, "ଆଖି

ଛୁଉଁଚି ଆଜ୍ଞା ମଣିମା । ମିଛ କହିଲେ ଜିଭ ଖଣ୍ଡ ଖଣ୍ଡ ହେଇ ଛିଡ଼ି ପଡିବ । ଦେଖୁ ନାହାଁନ୍ତି ଦି'ଟା ବଡ଼ ମୋହର ମତେ ଦେଇ ଯାଇଚି ।" ବୁଢ଼ୀ ତା କୋତରା ଲୁଗା କାନିରୁ ଦି'ଟା ନୂଆ ଚକମକିଆ ସୁନା ମୋହର ଫିଟେଇ ଦେଖାଇଲା ।

ରାଜାଙ୍କର ଆଉ ସନ୍ଦେହର ଅବକାଶ ରହିଲାନି । ରାଜା ପଚାରିଲେ, "ଆଛା ସିଏ ଏକୁଟିଆ ଥିଲା ନାଁ ତା ସାଥିରେ ଆଉ କେହିଥିଲେ ?" "ମୋ ଦିହ ଶୀତେଇ ପଡୁଚି ହଜୁର୍ । ସେମାନେ ଗଣ୍ଡାଏ ଲୋକ । କାଳିଆ–ଭୂଷୁଣ୍ଡା ଭୁଷୁଣ୍ଡା । ଏଡ଼େ ଏଡୁଟା ମାନ ମୁଛ । ଜଣଙ୍କର ମୁଣ୍ଡ ବାଳ ସାଙ୍ଗରେ ଲାଗି କରି ଦାଢ଼ି ଅଛି ।" ରାଜା କହିଲେ, "ଏଇ... ଚୁପ୍ ।" ଚୋରଙ୍କର ରୂପ ବର୍ଣ୍ଣନା ସେତିକିରେ ବନ୍ଦ ହେଇଗଲା । ବୁଢ଼ୀକି ରାଜା ପଚାରିଲେ, "ସେମାନେ କେତେବେଳୁ ଗଲେଣି ?" ବୁଢ଼ୀ କହିଲା, "ତିନି ଘଡ଼ି କି ପାଞ୍ଚ ଘଡ଼ି କି ସାତ ଘଡ଼ି ହେବ । ଏବେ ନେଉଟିବେଣି ମହିମା । ନୁଗା ନେଲା ବେଳେ ମତେ ଆହୁରି ତିନିଟା ମୋହର ଦେବେ କହିଚନ୍ତି ।" ରାଜା କହିଲେ, "ହଉ ଶୁଣ । ତୁ ଏଇ ମୋହର ସାତଟା ରଖିଥା । ତୁ ମୋର ଏଇ ବେଢ଼ାଣ ପିନ୍ଧି ମୋ ପୋଷାକ ଧରି ସେଇ ଅଧାକାନ୍ଥ ପାଖରେ ଅନ୍ଧାରୁଆରେ ବସିଥା । ଆଉ ଏଇ ହୁଇସିଲ୍‌ଟା ଧରିଥା, ଦୂରରୁ ଦେଖିଲେ ଧୀରେ କରି ବଜେଇ ଦେଲେ ମୁଁ ଜାଣିଯିବି ।" ବୁଢ଼ୀ ଜିଭ କାମୁଡ଼ି କହିଲା, "ଛି ମଣିମା, ପାତକ ଲାଗିବ ମୋ ପାଲଟା ଲୁଗା...।" ରାଜା ରାଗିଯାଇ କହିଲେ, "ଦେ କହୁଚି ।"

ବୁଢ଼ୀ ଅଡୁଆରେ ଦୋସଡ଼ା ବଦଳେଇ, କୋତରା, ଅଖା ପରିକା ଶାଢ଼ୀ ରାଜାଙ୍କୁ ଦେଲା । ରାଜା ବଦଳେଇ ଥିବା ପୋଷାକ ନେଇ ଘୋଡ଼ା ବନ୍ଧାଥିବା ଠାଆକୁ ଆସିଲା । ଦିହରୁ ରାମ୍ପି ରାମ୍ପି ଧୁଡୁ ଧୁଡ଼ିଆ ଚମଡ଼ା ସବୁ ଟାଣି ଟାଣି ବାହାର କରି ଆଣିଲା । ଫର୍ ଫର୍ ହେଇ ଉଠି ଆସିଲା ଫଡ଼ା ଫଡ଼ା ବୁଢ଼ୀ ଚମଡ଼ା ସବୁ । ସେ ତ ବାହାରେ ଫେସନ ଡିଜାଇନରେ ବିଭିନ୍ନ ବେଶ ପରିବର୍ତ୍ତନ, ଫଟୋଗ୍ରାଫି, ମିମିକ୍ରିରେ ବିଭିନ୍ନ ଭାବରେ କଥା କହିବାର ଶୈଳୀର ପାଠ ପଢ଼ିଆସିଚି । ଦଣ୍ଡକରେ ରାଜାଙ୍କର ବେଶ ପୋଷାକ ବଦଳାଇ ଘୋଡ଼ାରେ ଚଢ଼ି ମାଇଲା ଛାଟେ ଯେ ଆସି ସିଂହ ଦରଜାରେ ।

ସେଠି ତ ପ୍ରକାଶ୍ୟରେ କେହି ନ ଥିଲେ । ଗୁପ୍ତ ଭାବରେ ଯେଉଁମାନେ ଥିଲେ ସେମାନେ ଛାଇଛାଇ ଆଲୁଅ ଅନ୍ଧାରରେ ରାଜମୁକୁଟ ପୋଷାକ ଦେଖି ରାଜାଙ୍କୁ ଭିତର ପୁରକୁ ଯିବାକୁ ବାଧା ଦିଅନ୍ତେ କାହିଁକି ଅବା ? ରାଜାଙ୍କ ଭିତରକୁ ଗଲା ବେଳର ନିର୍ଦ୍ଦେଶ ଥିଲା, ସିପାହୀମାନେ ଆପଣା ଆପଣା ସ୍ଥାନକୁ ଚାଲିଯିବେ, ଉଆସ ଚାରି ପାଖରେ ଘେରାଉ କରି ସତର୍କ ହୋଇ ରହିବେ । ସେ ସବୁ ବ୍ୟବସ୍ଥା କରି ଆସିଚନ୍ତି । ସ୍ତ୍ରୀ ଲୋକର ବେଶରେ ଚୋର ଏଇନେ ଆସିବ । ତାକୁ କୌଣସି ପ୍ରକାରର ଆଘାତ ନ କରି, ଟିପଟିଏ ମଧ୍ୟ ନ ଛୁଆଇଁ ତାକୁ ତାଙ୍କ ସମ୍ମୁଖରେ ପେଶ୍ କରାଯିବ । ଗୋଟିଏ ମୁଦା ଲଫାପା ସେଇ ଚଉତରା ଉପରେ ରଖି ଏଇଟିକୁ ଚୋରକୁ ଦେଇ ଦେବାକୁ କହି ରାଜା ଅନ୍ଦର ମହଲକୁ ବିଜେ କଲେ । ନିଜ କୋଠରୀ ଭିତରୁ ଗୁପ୍ତ ରାସ୍ତା ଦେଇ ଗନ୍ତାଘରକୁ ଗଲେ । ସେଠାରୁ ବହୁ ମୂଲ୍ୟବାନ ସାମଗ୍ରୀ ଯାହା ରୌପ୍ୟ ସିନ୍ଦୁକରେ ଥିଲା ସେ ସିନ୍ଦୁକ ସହିତ କୋଠରୀକୁ ଆଣି, ଭଲ କରି କିଳିଣୀ ଲଗାଇ ଦେଲେ । ଗନ୍ତାଘରର କୋଳପ ବାହାରୁ ସେମିତି ପଡ଼ିଥିଲା ।

ରାତି ପାହି ପାହି ଆସିଲା । ଏତେବେଳ ଯାଏ ରାଜା ସେଇମିତି ଲୁଗା ଧରି ଧୋବା ତୁଠରେ ବସିଚନ୍ତି । ଅଣ୍ଟା ଧରିଗଲାଣି । କିଛି ସମୟ ପରେ ସମସ୍ତେ ଦେଖିଲେ ଗୋଟାଏ ଶଗଡ଼ ଗାଡ଼ି ଆସି

ସିଂହଦ୍ୱାରରେ ଲାଗିଲା । ସେଥିରୁ ଜଣେ ସ୍ତ୍ରୀ ଲୋକ ବାହାରିଲା, ତାକୁ ଚାରିପାଖରୁ ସମସ୍ତେ ଘେରି ଗଲେ । ତା ପରେ ସେମାନେ କ'ଣ କଥାବାର୍ତ୍ତା ହେଲେ ଶୁଣାଯାଉ ନ ଥିଲା । ଦଣ୍ଡକରେ ଦେଖାଗଲା ସମସ୍ତେ ତାଙ୍କୁ ସାଲ୍ୟୁଟ ମାରିଲେ । ସେ ସ୍ତ୍ରୀ ଜଣକ ସମ୍ଭ୍ରାନ୍ତ ପୁରୁଷ ପାଲଟି ଯାଇଥିଲେ । ସେ ଚିଠି ଖୋଲି ପଢ଼ିଲେ, ଲେଖାଥିଲା –

ମହାରାଜାଙ୍କର ମହାରାଜସଭା ପରଖ ହେଉଚି ଛୁଞ୍ଚିମାଛି,
ମହାଜାଣିବାର ମହାମନ୍ତ୍ରୀ ପୁଣି କଥା କହିଦେଲେ ବାଛିବାଛି ।
ସବୁ ବିଦ୍ୟାଠାରୁ ଚୋରିବିଦ୍ୟା ଭଲ ନେଇଆଣି ଯଦି ଥୁଅ,
ଚାଲି ନ ଜାଣି ଅଗଣାର ଦୋଷ, ମନ୍ତ୍ରୀ ବନ୍ଦୀଶାଳ ଯାଅ ।
ରାଇଜ ସାରା ତ ଯୁର କଲା ଚୋର, ସେନାପତି ହରିକାଠେ,
ସାରା ରାଇଜର ମଉଡ଼ମଣି ସେ ଜଗିଛନ୍ତି ଧୋବା ତୁଠେ ।
ମଣିମା ମଣିମା ଗୁହାରୀ ଶୁଣିମା, ମୁଁ ଛାର ସେବକ ପୁଣି,
ଦୋଷ କ୍ଷମାକର ବିନତି କରୁଚି ଚୌରଚନ୍ଦ୍ର ଚୂଡ଼ାମଣି ।

ରାଜା ଚିଠି ପଢୁ ପଢୁ ଅଳ୍ପ ଅଳ୍ପ ହସୁଥିଲେ ।

ଆପଣା ଶୟନ କକ୍ଷ ଭିତରୁ ବନ୍ଦ । ରାଜା ଠୁକ୍ ଠୁକ୍ କରି ଖୋଲିବା ପାଇଁ ସଂକେତ କଲେ । ଏଇ ସମୟରେ ଖାଜାଞ୍ଚି ଆସି ଜଣାଇଲା, "ମହାରାଜ ଗନ୍ତାଘର ବାହାରୁ ମୁଦ ପଡ଼ିଚି । କୋଲପ ସେଇମିତି ଦିଆରହିଚି । ଭିତରୁ ଅତ୍ୟନ୍ତ ଗୋପନୀୟ କାଗଜପତ୍ର ସହ ସବୁଠାରୁ ଦୁର୍ମୂଲ୍ୟ ପଦାର୍ଥ ଥିବା ରୌପ୍ୟ ସିନ୍ଦୁକ ଉଭାନ୍ ।" ରାଜା କୌଣସି ଉତ୍ତର ନ ଦେଇ ତାକୁ ଯିବାକୁ ଇଶାରା ଦେଲେ । ପୂର୍ବପରି କବାଟ ଖୋଲିବାର ସଂକେତ ଦେଇ ଚାଲିଲେ ।

ଭିତରବାଲା ଭିତରୁ ଜବାବ ଦେଲା,"ମଣିମା... ମୁଁ ଏଇଠି ଆପଣଙ୍କୁ କୋଟି କୋଟି ପ୍ରଣାମ ଜଣାଉଚି । ଆପଣଙ୍କୁ କଥା ଦେବାକୁ ହେବ, ନହେଲେ ମୁଁ ଏଇ ଘର ଭିତରେ ଆତ୍ମଘାତୀ ହେବି ।" ଗୁଣଗ୍ରାହୀ ରାଜା ଅତି ବ୍ୟଗ୍ର ଓ ବ୍ୟାକୁଳ ଭାବରେ କହିଲେ, "ନା, ନା । ତୁମେ ସେ କଥା ଚିନ୍ତା ମଧ୍ୟ କରନାହିଁ । ତୁମ ପରି ଚତୁର ଏବଂ ବୁଦ୍ଧିମାନକୁ ମୁଁ ମୋ ରାଜ୍ୟର ସର୍ବଶ୍ରେଷ୍ଠ ମର୍ଯ୍ୟାଦାବନ୍ତ ପଦବୀରେ ଭୂଷିତ କରି ସମ୍ମାନିତ କରିବାକୁ ଚାହେଁ । କୁହ କି ପ୍ରତିଶ୍ରୁତି ତୁମେ ମୋ ଠାରୁ ଚାହଁ ।"

ଭିତରୁ ଶୁଣାଗଲା, "ମହାରାଜ । ମୋର ଏତିକି ମାଗୁଣି ଆପଣ ମୋର ପିତାମାତାଙ୍କୁ କ୍ଷମା କରିଦେବେ । ଆପଣଙ୍କ ରାଜ୍ୟରେ ଚୋରିଯାଇଥିବା ସମସ୍ତ ସମ୍ପଦ ଏଇଠାରେ, ଏଇ ଘର ଭିତରେ ସୁରକ୍ଷିତ ହୋଇ ରହିଚି । ଆଉ ସେ ସବୁ ସମ୍ଭାଳି ରଖିବାରେ କିଛି ଦାୟିତ୍ୱ ମୋର ମଧ୍ୟ ଅଛି । କାରଣ ମୁଁ ଆପଣଙ୍କର ଛୋଟିଆ ସେବକଟିଏ ମାତ୍ର ।" ରାଜା କହିଲେ, "ତୁମେ ଏତେ ସୁନ୍ଦର, ଏତେ ମଧୁର, ଏତେ ମାର୍ଜିତ ଭାବରେ କଥା କହୁଚ । ତୁମ ସଂସ୍କାର ପାଇଁ ମୁଁ ମୁଗ୍ଧ ହେଉଚି । ତୁମ ପ୍ରତି ମୋର ଶ୍ରଦ୍ଧା ଆହୁରି ବଢ଼ିଯାଇଚି । ତୁମ ପିତାମାତାଙ୍କୁ କ୍ଷମା କରିବି କ'ଣ? ତୁମ୍ଭ ପରି ବୁଦ୍ଧିମାନ ପୁତ୍ର ପାଇ ସେମାନେ ଧନ୍ୟ । ତାଙ୍କର ସଂସ୍କୃତି ନିଶ୍ଚିତ ଭାବରେ ଉନ୍ନତ; ମୁଁ ତାଙ୍କୁ ମଧ୍ୟ ସମ୍ମାନିତ କରିବି । ତୁମେ ଅତି ଶୀଘ୍ର ବାହାରକୁ ଆସି ତୁମର ପରିଚୟ ଦିଅ ।"

କକ୍ଷର ଦ୍ୱାର ଖୋଲି ଯେଉଁ ସୁଦର୍ଶନ ତରୁଣଟି ସାଷ୍ଟାଙ୍ଗ ପ୍ରଣିପାତ କରି ତାଙ୍କର ପଦସ୍ପର୍ଶ କରୁଚି ତାଙ୍କୁ ଚାହିଁ ରାଜା ସ୍ତବ୍ଧ ହୋଇଗଲେ। ସେଇ ତରୁଣଟିର ମୁହଁରେ ଆପଣାର ପ୍ରତିଛବିର ଛିଟା ଦେଖୁଚନ୍ତି କ'ଣ? ସେ ତାକୁ ଉଠାଇ ତା ମୁହଁକୁ ଅପଲକ ନେତ୍ରରେ କିଛି ସମୟ ଚାହିଁ ରହିଲେ। ତରୁଣଟି ମଧୁର ସଲଜ୍ଜ ହସରେ ତାଙ୍କ କର୍ଣ୍ଣ ପଟରେ ଅମୃତ ଢାଳି ଢାଳି ଇଏ କ'ଣ କହୁଚି? ଯୁବରାଜ ତା'ର ପିତା ଏବଂ ମନ୍ତ୍ରୀଙ୍କର ସେଇ ଗୁଲୁଗୁଲିଆ କୁନି ଝିଅଟି, ଛୋଟ ବେଳେ ଯିଏ ଯୁବରାଜ ସଙ୍ଗେ ଖେଳୁଥିଲା, ତା'ର ଫାଇ ଫରମାସି ଖଟୁଥିଲା, ସେଇ ତା'ର ମାଆ?

ରାଜା ପରମ ସ୍ନେହରେ ସେଇ ପୁଅଟିକୁ କୋଳକୁ ଉଠାଇ ଆଣିଲେ। ଆଉ ଭାରି ଗେହ୍ଲାରେ ତା'ର ଗାଲଟିକୁ ଟିପି ଦେଇ କହିଲେ, "ଓହୋଃ! ଏବେ ଏଇ ଚୋରି ରହସ୍ୟ ସବୁ ଜଣାପଡ଼ିଗଲା। ତୁ ତୋ ଅଜାର ମାନରକ୍ଷା ପାଇଁ ଜେଜେକୁ ଏତେ ଦଣ୍ଡ ଦେଲୁନାଁ? ନେଇ ଆଣି ଥୋଇ ପାରିଲେ ପ୍ରକୃତରେ ଚୋରିବିଦ୍ୟାଟି ଯେ ଭଲ ଏଇ କଥା ତୁ ନିଜେ ପ୍ରମାଣିତ କରିଦେଲୁ। ଏଥର ବୁଝା ପଡ଼ିଲା, ଏତେ ବିବାହ ପ୍ରସ୍ତାବ ଆସୁଥିଲେ ମଧ ଯୁବରାଜ କାହିଁକି ରାଜି ହେଉ ନ ଥିଲା। ତେବେ ଏଇ କଥା ଆଜି ଯାଏ ଆମଠାରୁ ଗୁପ୍ତ ରଖାଯାଇଥିଲା କାହିଁକି? ଏଥିରେ ମୋର ଅଥବା ମହାରାଣୀଙ୍କର କୌଣସି ଆପତ୍ତି ନ ଥା'ନ୍ତା। କାରଣ ପିଲାଦିନୁ ତାକୁ ଆମେ ବହୁତ ଭଲ ପାଉ। ତା ପରେ ସେ ପଢ଼ିବାକୁ ବାହାରକୁ ଚାଲିଗଲା। ଆହୁରି ପରେ ଯୁବରାଜଙ୍କର ବିବାହ ପାଇଁ ଅନିଚ୍ଛା ପ୍ରକାଶ ଏବଂ ବାରମ୍ବାର ବାହାରକୁ ଯିବା, ଏଥିପାଇଁ ବହୁତ ଦୁଃଖ ପାଇଲୁ। କିନ୍ତୁ ଆଜି ମୋତେ ସବୁଠାରୁ କଷ୍ଟ ଦେଉଚି ଯେ ମନ୍ତ୍ରୀ କାହିଁକି ଏ ସୁସମ୍ବାଦ ମୋତେ ଦେଇ ନାହାଁନ୍ତି।"

ପୁଅଟି କୌତୁକିଆ ହସ ହସି କହିଲା, "ଏହା ଆପଣଙ୍କର ସମ୍ମାନହାନୀର କାରଣ ହୋଇପାରେ, ଅବା ଆପଣଙ୍କର ଏବଂ ଜେଜେ ମାଆଙ୍କର ମନରେ କଷ୍ଟ ହୋଇପାରେ, ସେଥିପାଇଁ ମୋର ପିତା ମାତା ଏକଥା ଗୋପନ ରଖିଥିଲେ। ଆଉ ଆପଣଙ୍କର ରାଜଭକ୍ତ ମନ୍ତ୍ରୀ ମଧ ଏଇ ଘଟଣାକୁ ଅତି ସହାସ୍ୟ ବଦନରେ ଗ୍ରହଣ କରି ନଥା'ନ୍ତେ। ପ୍ରଥମରୁ ସେ ଜାଣିଥିଲେ ତାଙ୍କ କନ୍ୟା ବହୁ ଦୂରାନ୍ତରେ ମାମୁଘରେ ରହିପାଠ ପଢୁଥିଲା ଏବଂ ନିଜେ ଇଚ୍ଛାରେ ବର ବରଣ କରିଚି। ସେଥିପାଇଁ ରାଗ, କ୍ଷୋଭ, ଦୁଃଖ ଓ ଘୃଣାରେ ସେ ତା'ର ନାମ ମଧ ଭୁଲିଯିବାକୁ ଚେଷ୍ଟା କରିଚନ୍ତି।"

ରାଜା କହିଲେ, "ତୋର ବାପା ମାଆ କେଉଁଠି ଅଛନ୍ତି, ମୁଁ ତାଙ୍କୁ କଠୋର ଶାସ୍ତି ଦେବାକୁ ଚାହେଁ। ମୁଁ ଆମମାନଙ୍କର ଦାୟିତ୍ୱର ବୋଝ ସହିତ ସମଗ୍ର ରାଜ୍ୟର ବୋଝ ତାଙ୍କ ମୁଣ୍ଡରେ ଲଦି ଦେବାକୁ ଚାହେଁ। ତାହେଲେ ସେମାନେ ଏଠୁ ଆଉ ହଲି ପାରିବେନି।" ରାଜା ଦେଖିଲେ ଯୁବରାଜ ଏବଂ ତା ସହିତ ଅପୂର୍ବ ସୁନ୍ଦରୀ ବୋହୂଟି ଆସି ତାଙ୍କର ପାଦ ଛୁଇଁ ସାଷ୍ଟାଙ୍ଗ ପ୍ରଣାମ ଜଣାଇଲା। ତାଙ୍କୁ ଲାଗିଲା ଏତେ ଦିନଯାଏ ସେ ଏ ଅମୂଲ୍ୟ ଐଶ୍ୱର୍ଯ୍ୟରୁ ବଞ୍ଚିତ ହେଇଥିଲେ କୋଉ ପାପରେ?

ସେ ଭୂଇଁରୁ ଉଠାଇ ଦୁଇ ବାହୁରେ ଦୁହିଁଙ୍କୁ ଜାବୁଡ଼ି ଧରିଲେ। ତାଙ୍କର ମନ ପୂରିଗଲା, ଆଖି ବି ଭରିଗଲା। ସେ ରୁଦ୍ଧ କଣ୍ଠରେ ମହାରାଣୀଙ୍କୁ ଡାକ ପକାଇଲେ, "ଜଲଦି ଆସ। ଯେମିତି ଯୋଉଠି ଅଛ ସେମିତି ଉଠି ଆସ।" ଏମିତି ଅତରଛିଆ ଡାକରାରେ ମହାରାଣୀ ହରବର ହୋଇ ଦଉଡ଼ି ଆସିଲେ। ଏମାନଙ୍କୁ ମହାରାଣୀଙ୍କ ଆଡ଼କୁ ଟିକିଏ ଠେଲି ଦେଇ କହିଲେ, "ନିଅ ତମ ପରିପୂର୍ଣ୍ଣ ସଂସାର ସମ୍ଭାଳ।" ତାଙ୍କ ଭରା ଆଖିରୁ ଝରଝର ହେଇ ଲୁହ ଝରି ପଡ଼ିଲା। ପୁଅ ବୋହୂ

ନାତି ରାଣୀଙ୍କ ପାଦତଳେ ପ୍ରଣାମ କଲେ। ରାଣୀ କିଛି ବୁଝି ନ ପାରି ଆଶ୍ଚର୍ଯ୍ୟ ଚକିତ ହୋଇ ଖାଲି ବଲବଲ କରି ଚାହିଁ ରହିଲେ।

ଠିକେ ଠିକେ ସବୁକଥା ଶୁଣି ତାଙ୍କ ଆଖିରୁ ଧାରଧାର ଆନନ୍ଦାଶ୍ରୁ ଝରି ଯାଉଥିଲା। ପୁଅ ବିଭାହୋଇ ନ ଥିଲା, ମନରେ ଅସରନ୍ତି ଦୁଃଖ। ଜୀବନରେ କେବେ ନାତିଟିଏ ଦେଖିବେ ଏଇ ଆଶା ତାଙ୍କର କୋଉ କାଳରୁ ଲୁପ୍ତ ହେଇ ସାରିଥିଲା। ଏକାବେଳେ ଯେ ଏତେ ଆଶାତୀତ ସୁଖ ତାଙ୍କ ପାଇଁ ଅପେକ୍ଷା କରିଥିଲା ଏକଥା ସେ କେମିତି ଅବା କଳ୍ପନା କରି ପାରନ୍ତେ?

ରାଜାରାଣୀ ପ୍ରଥମେ ସମସ୍ତଙ୍କୁ ନେଇ ଠାକୁର ମନ୍ଦିରକୁ ଆସିଲେ। ନିରବ ନିସ୍ପନ୍ଦ ରାଜମହଲ ଦଣ୍ଡକ ମଧ୍ୟରେ ଆନନ୍ଦ କୋଳାହଳରେ ଗୁଞ୍ଜରି ଉଠିଲା। ତା ପରେ ରାଜାରାଣୀ ପୁଅ ବୋହୂ ଆଉ ନାତିକୁ ନେଇ କାରା କୋଠରୀକୁ ଗଲେ। ସଶବ୍ଦ ଦରଜା ଖୋଲିଗଲା। ମନ୍ତ୍ରୀ ଗୋଟାଏ କାଠ ବେଞ୍ଚ ଉପରେ ମୁହଁ ପୋତି ବସିଥିଲେ। ଦାଢ଼ି ମୁଛ କେଶ ସବୁ ବଢ଼ି ଯାଇଥିଲା। ମୁହଁ ଶୁଖିଲା ଦେଖାଯାଉଥିଲା ସତ, ହେଲେ ବୁଦ୍ଧିଦୀପ୍ତ ଆଖି ଦିଓଟି ଝଲସୁ ଥିଲା। ସମସ୍ତଙ୍କୁ ଏକା ସାଙ୍ଗରେ ଦେଖି ସେ ହଡ଼ବଡ଼େଇ ଉଠି ପଡ଼ି ରାଜା ରାଣୀଙ୍କୁ ଅଭିବାଦନ କଲେ। ରାଜକୁମାର ସହିତ ଝିଅ ଓ ନାତି ପ୍ରଣାମ କଲେ। କିନ୍ତୁ ଝିଅକୁ ଦେଖି ସେ ମୁହଁ ଫେରାଇ ଆଣିଲେ।

ରାଜା ଅତି ଖୁସିରେ ଯାଇ ମନ୍ତ୍ରୀଙ୍କୁ ଛାତିରେ ଭିଡ଼ି ଧରି ଲୁହ ଛଳ ଛଳ ଆଖିରେ କହିଲେ, "ତମେ ଜିଣିଗଲ ସମୁଦୀ।" ଏ ସମ୍ବୋଧନରେ ମନ୍ତ୍ରୀ ଚାହିଁରହିଲେ ରାଜାଙ୍କ ମୁହଁକୁ। ତାଙ୍କର ଆଶ୍ଚର୍ଯ୍ୟର ସୀମା ନ ଥିଲା।

ପରଦିନ ମନ୍ତ୍ରୀ ରାଜସଭାକୁ ଆସିଲେ। ଯାହାର ଯାହା ଚୋରି ଯାଇଥିଲା ସେ ସମସ୍ତ ଜିନିଷ ଅକ୍ଷୁର୍ଣ୍ଣ ଭାବରେ ସେମାନଙ୍କୁ ଫେରାଇ ଦିଆଗଲା। ଜୟ ଜୟକାରରେ ଚାରିଦିଗ କମ୍ପମାନ। ସପ୍ତାହବ୍ୟାପୀ ଭୋଜିଭାତର ଧୂମ ଉଡ଼ିଲା। ମହାମନ୍ତ୍ରୀ ଭରା ରାଜ୍ୟରେ ମହାସମ୍ମାନ ପାଇ ଖୁସି। ମହାରାଣୀ ଷୋଳ ସମର୍ଥ ନାତି ପାଇ କୋମଦ। ମହାରାଜା ଉତ୍ତରାଧିକାରୀ ପାଇ ତାଙ୍କ ମନ କୁଣ୍ଢେମୋଟ। ନଈ ପାଣି ନଈରେ ଗଲା, ପିତୃଲୋକ ସନ୍ତୋଷ।

ବର୍ଣ୍ଣାଳୀ ରତ୍ନ ଭଣ୍ଡାରର ଠିକ୍ ସାମ୍ନାରେ ସୁଦୃଶ୍ୟ, ସୁଉଚ୍ଚ, ସୁଶୋଭିତ ଗୋଟିଏ ବିରାଟ ବିଳାସ ସୌଧ। ଯାହା ସ୍ୱତଃପ୍ରବୃତ୍ତ ଭାବରେ ବର୍ଣ୍ଣାଳୀ ରତ୍ନ ଭଣ୍ଡାରର ମାଲିକଙ୍କ ଦ୍ୱାରା ନିର୍ମିତ। ଚୌରଚନ୍ଦ୍ର ଚୂଡ଼ାମଣି ଅତିଥିଶାଳା ନାମରେ ତାହା ନାମିତ ହୋଇଚି ଅତୀତର ହର୍ଷବିଷାଦଭରା ସ୍ମୃତିର ସ୍ମାରକୀ ରୂପେ। ସୁସ୍ୱାଦୁ ଏବଂ ସୁରୁଚିସମ୍ପନ୍ନ ଆତିଥ୍ୟ ପରାୟଣ ଏହି ଭୋଜନାଳୟ ଏବେ ମଧ୍ୟ ବିଦ୍ୟମାନ ଏବଂ ସର୍ବଜନବିଦିତ।

ଆପଣମାନେ ଯଦି ଇଆଡ଼େ କେବେ ଆସନ୍ତି ଏବଂ ଏହି ବିଳାସ ସୌଧର ମଜା ନେବା ପାଇଁ ଚାହାଁନ୍ତି, ତେବେ ମୋ ନାମ ନେଇ ଏଠାର ପ୍ରବନ୍ଧକଙ୍କ ସହିତ ସମ୍ପର୍କ ସ୍ଥାପନ କରିପାରନ୍ତି। ତେବେ ବିନା ଶୁଳ୍କରେ ପା'ଦିନ ପାଇଁ ଖାଦ୍ୟ ଏବଂ ରହଣିର ସୁବନ୍ଦୋବସ୍ତ ହୋଇପାରିବ।



# ରାଇଁ ଝାଇଁ ବାଇଗଣ ମୁଣ୍ଡି ଖାଇ

ବୁଢ଼ୀ ଲୋ ବୁଢ଼ୀ ତୋ ପଇସା ବୁଜୁଳି କାଇଁ...
ଜାଣି ନାହୁଁ କିରେ କାଠେଇ ଝିଅା... ମୁଁ... ନିତି ପାନ ଗୁଆ ଖାଇ
ନିତି ପାନ ଗୁଆ ଖାଉ ଲୋ ବୁଢ଼ୀ... ତୋ... ଦାନ୍ତ ତ ରଙ୍ଗେଇ ନାଇଁ
ଜାଣି ନାଉଁ କିରେ କାଠେଇ ଝିଅା... ମୁଁ... ପାହାନ୍ତା ପଖାଳ ଖାଇ
ପାହାନ୍ତା ପଖାଳ ଖାଉ ଲୋ ବୁଢ଼ୀ... ତୋ... ପେଟ ତ ଟୁବୁରି ନାଇଁ
ଜାଣି ନାଉଁ କିରେ କାଠେଇ ଝିଅା... ମୁଁ... ନିତି ବାରିଘର ଯାଇ
ନିତି ବାରିଘର ଯାଉ ଲୋ ବୁଢ଼ୀ... ତୋ... ପିଚା ତ ଓଦା ନାଇଁ
ଜାଣି ନାଉଁ କିରେ କାଠେଇ ଝିଅା... ମୁଁ... ନିଆଁକୁ ଦେଖେଇ ଦେଇ... ।

ସେଇମିତି ଗୋଟିଏ ବୁଢ଼ୀର କଥା ଇଏ । ବୁଢ଼ୀ ତ ବୁଢ଼ୀ, ପୁଣି ସାଧବ ଘର ବୁଢ଼ୀ । ଠାଆକରେ ଗୋଟିଏ ସାଧବ ଘର ଥାଏ । ତାର ସାତ ପୁଅରେ ସାତ ବୋହୂ । ଭାରି କଞ୍ଜୁସ୍ ବୁଢ଼ୀ । କାହାରିକୁ କିଛି ଟିକିଏ ଦେବନି, ଦିହରୁ ଟିକିଏ ମଳି ବି । ନିଜେ ହେଲେ କ'ଣ ଖାଏ ? ବୁଢ଼ା ପୁଅମାନଙ୍କୁ ନେଇ ବିଦେଶରେ । ବୁଢ଼ୀକି ତ ପିହଲ ପଡ଼ିଲା । ବୋହୂମାନଙ୍କୁ ବାସି ପାଇଟିରୁ ଆରମ୍ଭ କରି ବାସନମଜା, ଲୁଗାକଚା ପର୍ଯ୍ୟନ୍ତ ସବୁ କରାଏ । ଲୁଗା ପୁଣି ବାଇରେ ଥିବା କଦଳୀ ବାସୁଙ୍ଗା ପୋଡ଼ି, ଖାର କରି, ସେଇଥିରେ କଚା ହେବ । ଖାଇଲା ବେଳକୁ କଂସାଏ ପଖାଳ । ତା ସାଥିକି ଗୋଟିଏ ବଡ଼ ବାଇଗଣ । ତା'ର ଅଗରୁ ଖଣ୍ଡିଏ କଟା ହବ, ମୁଣ୍ଡିରେ ଖଣ୍ଡିଏ ଲାଗି କଟା ହବ, ବାକି ବାଇଗଣ ଦି ଫାଳ ହେବ । ପ୍ରତି ଫାଳ ତିନି ତିନି ଖଣ୍ଡ ହେଇ କଟା ହେଇ ନଖେ ତେଲ ଦେଇ ଭଜା ହବ । ଆପେ ବୁଢ଼ୀ ମୁଣ୍ଡଟି ଖାଇବ । ବାକି ସାତ ଖଣ୍ଡ ସାତ ବୋହୂ ଲୁଣ ଲଙ୍କା ଦଳି ପାଗ କରି ଖାଇବେ । ପୁଣି କଣ ନା ବାସନ ଘୋରି ହେଇଯିବ ବୋଲି ମାଟି ପିହାଣରେ ବାଇଗଣ ଝିଆ ହେବ ।

ବଡ଼ ଘର ଝିଅମାନେ ଶାଶୂକୁ ମାନ୍ୟକରି ପାଟି ଫାଳକ ଦି ଫାଳ କରନ୍ତିନି, ଶାଶୂକୁ ଓଲଟେଇ କଥା କହିବା ତ ଦୂରେ ଥାଉ । ବୋହୂମାନଙ୍କ ଭିତରେ କିନ୍ତୁ ଭାରି ଭାବ । ଏକ ମନ ଏକ ପ୍ରାଣ । ବୁଢ଼ୀ ନ ଥିବା ଭିତରେ ସଜ ଉଣ୍ଡି ପଡ଼ିଶା ଘରେ ଗୋଟିଏ ଘୁଙ୍ଗା ପିଲାଟି ଥାଏ ଯେ ତା'ରି ହାତରେ ଭଲମନ୍ଦ ମଗେଇ, ଲୁଚେଇ ଚୋରେଇ ଖାଆନ୍ତି । ଜବାନ ଟୋକୀଗୁରା, କେତେ ପାଟି ମୁଜି ରହିବେ କହ । ସେତେବେଳର ବୋହୂମାନେ ଏତେବେଳ ପରି ଥାନାକଚେରୀ ମିଶଲ ଚତ୍ତୁ ନ ଥିଲେ ସିନା, ମନେ ମନେ ଗୁରୁଗୁରୁ ହୁଅନ୍ତି । ଭଗବତୀଙ୍କୁ ଗୁହାରୀ କରନ୍ତି । ଏ ପୋଡ଼ା ବୁଢ଼ୀଟା ମରୁନି

କାହିଁକି? ମଲେ ହେଲେ କଣ୍ଟା ଯାଆନ୍ତା। ଏ ବାଇରେ ଏତେ କଦଳୀ କରମଙ୍ଗା, ନାନା ଜାତିର କୋଳି ପାଚୁଚି, ଯାବତୀୟ ପନିପରିବା ଫସଲ ହଉଚି, ବୁଢ଼ୀ ସବୁ ହାଟକୁ ବଟେଇ ଦଉଚି। କମଳା କଷିଟେ କି ଲେମ୍ବୁ କଷିଟା ବାଦ ପଡୁନି। ପିଜୁଳି ଗୋଲାପଜାମୁ କଥା ଛାଡ଼ିଦିଅ।

ବୁଢ଼ୀ ସଞ୍ଜ ବୁଡୁ ବୁଡୁ ମାଆ ମଙ୍ଗଳାଙ୍କ କତିକି ଯାଏ। ସେଇଠି ଅଧଘଣ୍ଟାଏ ମାଳି ଗଡ଼ାଏ। ମାଳି ଗଡ଼େଇ ଗଡ଼େଇ କେତେ ସାଙ୍ଗ ସରିସାଙ୍କ ସାଥିରେ କଥାଭାଷା ହୁଏ। ବୋହୂମାନଙ୍କୁ ଢେର ପ୍ରଶଂସା କରେ। ଏମିତି କୁହାର ବୋଲର। ଏମିତି କାନର ସୁନା ଗଳାର ଗଣ୍ଠି କାହାର ନ ଥିବ। ପୁଅମାନେ ତ ବିଦେଶରେ, ଇଆଡୁ ଭଲମନ୍ଦ ଖାଇଲେ ମନ ବିଚଳିତ ହବ। ଦିହରେ ରୋଗ ପଶିବ। ସେଇଥି ପାଇଁକି ସିଏ ଗରିଷ୍ଠ ଖାଦ୍ୟ ଦିଏ ନାହିଁ। ବୋହୂମାନେ ତ ଭାରି ସୁଧାର, ତା'ର କଥା ତଳେ ପକେଇ ଦିଅନ୍ତି ନାହିଁ। କାଳେ କହନ୍ତି, ଏମିତି ଖିଆଲ ଆମର ରଖିଚନ୍ତି। ଏମିତି ଶାଶୂ ସବୁ ବୋହୂମାନଙ୍କୁ ମିଳନ୍ତୁ। ବୋହୁମାନେ ଠାକୁରଙ୍କୁ ହମେଶା ଜଣାଉଥାନ୍ତି କୁଆଡ଼େ।

ଏଣେ ବୋହୂମାନେ ବିଚାର ପକେଇଥା'ନ୍ତି। ଶାଶୂ ନ ଥିଲାବେଳେ କ'ଣ କରିବା, ବୁଢ଼ୀକୁ କେମିତି ପାନେ ଦବା? ଏଇ ବୋହୂଦ୍ରୋହୀ ବୁଢ଼ୀ ଆମକୁ ବହୁତ ଦିକ୍‌ଦାର କଲାଣି। ତାଙ୍କ ସଭାରେ ଗୋଟାଏ ବିଲ୍ ପାଶ୍ ହେଲା। ଏକଥା ତାଙ୍କ ଛଡ଼ା ଆଉ କାହାର କାନ ଦି କାନ ହେଲାନି।

ବୁଢ଼ୀ ମଙ୍ଗଳାଙ୍କ ପାଖରୁ ଆସି ପୋଖରୀପାଣି ଯାଏ। ଏଇଟା ତା'ରି ନିତିଦିନିଆ ଅଭ୍ୟାସ। ହଉକି ନ ହଉ, ନ ଗଲେ ରାତିରେ ନିଦ ହବନି। ବୁଢ଼ୀ ସେଦିନ ବାରିଘର ଗଲା। ବେଶୀ କିରାସିନି ସରିବ ବୋଲି ନଲଟଣ ଦବା ହେଇ ମିଞ୍ଜି ମିଞ୍ଜି କରୁଥାଏ। ଏପଟେ ଗୋଟିଏ ସେପଟେ ଗୋଟିଏ।

ବୁଢ଼ୀ ଗୋହିରୀରୁ ଆସି ଯେମିତି ଗଳି ଘରେ ପଶିଚି, ଦେଖିଲା ଏତେ ବଡ଼ କଳା ମୂର୍ତ୍ତି। ବେକରୁ ଗୋଡ଼ ଯାଏ ହାରମାଳ ନାଗିଚି, ମୁଣ୍ଡରେ ଗୁଡ଼ିଆ ହେଇଚି। ସେ ଯୋଉ ଆଡ଼କୁ ଯାଉଚି, ସେ ଆଡ଼େ ନାଚି ନାଚି ଡେଇଁ ଡେଇଁ ବାଟ ଛେକୁଚନ୍ତି। ଖଣ ଖଣ ଶବ୍ଦ ଶୁଭୁଚି। ଆଉ କହୁଚନ୍ତି, "ରାଇଁ ଝାଇଁ, ବାଇଗଣ ମୁଣ୍ଡି ଖାଇ। ରାଇଁ ଝାଇଁ, ବୋହୂଦ୍ରୋହୀକି ଖାଇ।"

ବୁଢ଼ୀ ଦିହରେ ଛନକା ପଶିଗଲା। ସେ ଛାନିଆ ହେଇଗଲା। ଚେତା ହରାଇ ସେଇଠି ବୁଢ଼ୀ ପଡ଼ିଗଲା। ସାନ ବୋହୂକୁ ଛାଡ଼ି ଆଉ ବୋହୂମାନେ ଧପଡ଼ି ଆସିଲେ। ଛିଞ୍ଚାବିଞ୍ଚା କରି ତାକୁ ନେଇ ପଲଙ୍କରେ ଶୁଆଇଲେ। ଜର ମାଡ଼ି ଆସିଲାଣି। ଛାନିଆ ଜର।

ବୁଢ଼ୀ ବାଉଳି ଚାଉଳି ହଉଚି, "ଆଲୋ ବୋହୂମାନେ ଲୋ, ମୋ ମାଆମାନେ ଲୋ, ଆଜି ସାକ୍ଷାତ କାଳୀ ମାଆ ଆସି ସବୁ ମୋର ଦୋଷ କହିଲେ।" ଅଣ୍ଟାରୁ ଚାବି ନେଛାଟିଏ କାଢ଼ି ଫୋପାଡ଼ି ଦେଇ କହିଲା, "ନିଅ ଲୋ ମା'ମାନେ, ତମ ଘର ତମେ ସମ୍ଭାଳ।" ବୁଢ଼ୀ ଆଉ କିଛି କହିପାରିଲାନି... ପାଟି ପଡ଼ିଗଲା ଯେ ପଡ଼ିଗଲା।

କଥା କ'ଣ ହେଇଚି କି ବୋହୂମାନେ ବିଚରା ବିଚରି ହେଇ ସାନ ବୋହୂ ଦିହରେ କଳା ବୋଳିଦେଲେ। ଗାଡ଼ିଆରୁ ଗେଣ୍ଡା ଶାମୁକା ଆଣି ମାଳ କରି ସାନ ବୋହୂର ଗୋଡ଼ଠାରୁ ମୁଣ୍ଡ ଯାଏ ବନ୍ଧାଇ ଦେଲେ କାନରେ ମୁଣ୍ଡରେ। କଳା ଶାଢ଼ୀ ପିନ୍ଧି ସାକ୍ଷାତ କାଳୀମାତା ପରି ଦେଖାଗଲା। ଘରେ ପଶିଲା ବେଳକୁ ନାଚି ନାଚି ବୁଢ଼ୀକୁ ଡରେଇବ। ସେଇ କଥା ହେଲା। ବୁଢ଼ୀ ଡରିଯାଇ ଅଧିଆ ପଡ଼ିଲା।

ବାତିନି ପାଇ ବୁଢ଼ା, ପୁଅ ସବୁ ଘରକୁ ଲେଉଟିଲେ । ସେତେବେଳକୁ ବୁଢ଼ୀର ପ୍ରାଣ ଯାଇ ନାକ ଦଣ୍ଡିରେ । ଆହା ବୁଢ଼ୀଟି ଚାଲିଗଲା । ଲୋକେ କହିଲେ, "ବୁଢ଼ୀ ଭେଟଣା ହେଇ ଚାଲିଗଲା ।" ସମସ୍ତେ ଢେର କାନ୍ଦିଲେ । ବୁଢ଼ୀ ଏକ ଜାବଡ଼ାରେ ସମସ୍ତଙ୍କୁ, ଘରକୁ ସମ୍ଭାଳି ଥିଲା । ଏବେ ଘର ଅଇରି ଖପରା ବଇରି ବାଆ ହୋଇଯିବ । ବୋହୂମାନେ ବାହୁନା ପକେଇଲେ । ତାଙ୍କ ମନକୁ ପାପ ଛୁଉଁଥାଏ । ବୁଢ଼ୀ ଏମିତି ସତରେ ମରିଯିବ ବୋଲି କ'ଣ ଜାଣିଥିଲେ କି ଆଉ? ଖାଲି ଡରଉଥିଲେ ସିନା ।

ଶୁଦ୍ଧଘର ବହୁତ ଧୂମ୍‌ଧାମ୍‌ରେ ହବ ବୋଲି ମସୁଧା ଚାଲିଥାଏ । ସମସ୍ତେ ବସି କଥାବାର୍ତ୍ତା ହେଲାବେଳେ ନିଇତି ଗୋଟିଏ କାଉ ଆସେ । ତା ବେକରେ ପିହାଣ ମାଳ ପଡ଼ିଥାଏ । ସେ ସେଠି ନାଚିନାଚି କହୁଥାଏ, "ସୁଖ ସରଜନ ବୋହୂଲୋ, ମୁଁ ତ ଅତି ଦୁରୁଦଣ୍ଡ ଶାଶୂ । ଆଳିମାଳି କରି ପଦିଏ କହ, ମୋ ବେକରୁ ପିହାଣ ଖସୁ ।" ବୋହୂମାନେ କେହି କିଛି କହନ୍ତିନି । ସେ ନାଚି ନାଚି ଚାଲିଯାଏ । ବୋହୂମାନେ କେହି କିଛି କହି ପାରନ୍ତିନି । ପୁଅମାନଙ୍କ ଆଗରେ କଣ ବା କହିବେ? ଚୋର ମାଆ ଲାଜେ ନ କାନ୍ଦେ... ଯେବେ କାନ୍ଦେ ଦୁଆର ଦେଇ କାନ୍ଦେ । ଜୋକ ମୁହଁରେ ଲୁଣ ପରି ବୋହୂମାନେ ତୁନି ହେଇ ରହନ୍ତି । ତାଙ୍କ ଅପରାଧବୋଧ ତାଙ୍କୁ ଖାଇ ଯାଉଥାଏ ।

ଶୁଦ୍ଧଘର ଭାରି ବଡ଼ତିରେ ଚାଲିଥାଏ । ସେଦିନ କାଉ ଆସିଲା । ଆସିଲା ଯେ ଆଉ ନ ଯାଏ । ସେଇମିତି କହି କହି ନାଚୁଥାଏ । ପୁଅ କହିଲେ କଣ ଘଟଣା? ଏ କାଉ ଏମିତି କ'ଣ କହି କହି ନାଚୁଛି? ବୋହୂମାନେ ସବୁ କାନ୍ଦିଲେ । କାନ୍ଦି କାନ୍ଦି ବଡ଼ ବୋହୂ ବଡ଼ ପୁଅକୁ ସବୁ ଘଟଣା କହିଲା, କହିଲା ତମର ବୋଉ ସିଏ । ବଡ଼ ପୁଅ ଆଉ କଣ କହିବ? ଯାହା ହବାର ତ ହେଇଗଲାଣି, ବୋହୂମାନଙ୍କ ବିକଳ ଦେଖି ସେ ସବୁ ବୁଝିଲା। ନ ଜାଣି ଏମାନେ ଦୋଷ କରିଚନ୍ତି, ଆଉ କ'ଣ ବା କରାଯାଇପାରେ । ତାଙ୍କର ଖେଳ ଏମିତି କାଳ ହେବ ବୋଲି ସେମାନେ ତ ଜାଣି ନ ଥିଲେ । ହଉ ବହିଗଲା ପାଣି ଯାଉ ତେଣିକି, ବନ୍ଧ ବନ୍ଧେଇଲେ ରହୁ ଏଣିକି । କହିଲା ତମେମାନେ କିଛି କହି ଦେଉନ କାହିଁକି?

ସେଇଠୁ ବୋହୂମାନେ ଆସି ଗଳବସ୍ତ୍ର ହୋଇ କାନ୍ଦି କାନ୍ଦି ଲମ୍ବ ଲମ୍ବ ପଡ଼ିଗଲେ । ମୁଣ୍ଡିଆ ମାରି ମାରି କହିଲେ, "ମାଆ... ଆମେ ସବୁ ଅଜାଣିବାର । ଆପଣ ମାଆ... ଆମ ଦୋଷ କ୍ଷମା କରିଦିଅନ୍ତୁ । ଆପଣା ବିଦା ହୁଅନ୍ତୁ, ବିଦା ହୁଅନ୍ତୁ । ସ୍ୱର୍ଗ ସ୍ଥାନକୁ ଗମନ କରନ୍ତୁ ।"
ଚାହୁଁ ଚାହୁଁ ଅଲୌକିକ ଘଟଣା ଘଟିଲା । କାଉ ବେକରେ ଥିବା ପିହାଣ ସବୁ ଖଣ୍ଡ ଖଣ୍ଡ ହେଇ ଭାଙ୍ଗି ଝଡ଼ିପଡିଲା । କାଉଟି ସେଇଠି ପଡ଼ି ତା ଜୀବ ଛାଡ଼ିଗଲା । ସେ ମୋକ୍ଷ ପାଇଗଲା । ବୋହୂଙ୍କ ଆଖିରୁ ଲୁହ ଅଟକୁ ନାହିଁ । ସେମାନେ ଭୂଇଁରେ ମଥା ଲଗାଇ ପ୍ରଣାମ କଲେ ।

ଏଇ କଥା ବାପାଙ୍କର ଅଜଣା ରହିଲା । ଆଜି ପର୍ଯ୍ୟନ୍ତ ମଧ୍ୟ ବାପାଙ୍କ କାନକୁ ଯାଇନାହିଁ ।



# ସରଖାଇ ସୁନ୍ଦରୀ

କଥାଟିଏ ସାଥିରେ ନଥାଟିଏ ।
ସାଧବ ଘରର ସୁନାନାକି ଝିଅ, ଅନିଭୋଗ ତା'ର ଦେଖେ କିଏ ।
ଗହନ ବନର... ପଥର ଘରେ, ନିରିମାଖୀ ଆହା ଦିନ ସାରେ ।
ସର ଖାଇଖାଇ ଲବଣୀ ପିତୁଳା ଝରଝର ହୋଇ ଲୁହ ଝରେ ।
ଏଡ଼େ ନିଦାରୁଣ ଜେଜେ ତା'ର, ତା ଜୀବନକୁ କଲା ନାରଖାର ।
କିଏ ଜାଣିଥିଲା ରାଜରାଣୀ ହେବ... ଉଜ୍ଜ୍ୱଳିବ ପୁଣି ମୁହଁ ତା'ର... ।

ଅନେକ... ଅନେକ... ଅନେକ... ପୁରୁଣାଦିନର କଥା – ଆମ ଏଠାରୁ ବହୁତ ବହୁତ ଦୂରରେ ବିରାଟ ଗୋଟିଏ ଘନ ଘୋର ଜଙ୍ଗଲ ଥିଲା । ଯେଉଁଠି ଗଛମାନେ ଏମିତି ଛନ୍ଦାଛନ୍ଦି ହେଇ ରହିଥିଲେ ଯେ ସୂର୍ଯ୍ୟକିରଣ ମଧ୍ୟ ଛାଇ ଛାଇଆ ଦେଖାଯାଉଥିଲା । ସେଠି ପତ୍ରଟେ ପଡ଼ିଲେ କୁଲାଟେ ପଡ଼ିଲା ପରି, କାଠି ଖଣ୍ଡେ ପଡ଼ିଲେ ଢିଙ୍କିଟେ ପଡ଼ିଲା ପରି ଶବ୍ଦ ଶୁଣା ଯାଉଥିଲା । ସେଇ ଗହନ ବନରେ କେଜାଣି କୋଉକାଳୁ ପରିତ୍ୟକ୍ତ ଗୋଟିଏ ପଥର ଘର ଭିତରେ, କାଠରେ ତିଆରି ପୁରୁଣା ପଲଙ୍କ ଗୋଡ଼ ପାଖରେ, ଚାରି ଚଉତା ହେଇ ପଡ଼ିଛି ଗୋଟେ କମଳ । ଗୋଟିଏ ପାଖରେ ବିଛାଯାଇଥିବା କନ୍ଥା ଉପରେ ଖଣ୍ଡେ ସାଧାରଣ ଚଦର। ସେଇ ମାମୁଲି ଶେଯ ଉପରେ ବସିବସି ସରଖାଇ ସୁନ୍ଦରୀ ଭାବିଭାବି ଆଶ୍ଚର୍ଯ୍ୟ ହେଇ ଯାଉଥିଲା ଯେ ସେ କେତେବେଳେ କେମିତି ଏଠିକୁ ଆସିଲା? ଇଏ କୋଉ ଜାଗା? ତା' ଦୃଷ୍ଟି ଉଚ୍ଚା ଉଚ୍ଚା ପଥର କାନ୍ଥରେ ବାଜି ଅଟକି ଯାଉଥିଲା । ଏଡ଼େ ବଡ଼ ଘରଟାରେ ଏକାକିନୀ ତାକୁ ଭାରି ଡର ମାଡୁଥିଲା । ଭାରି କାନ୍ଦ ମାଡୁଚି । କେଜାଣି କେତେ କାନ୍ଦିକାନ୍ଦି ଆଖି ଫୁଲିଫୁଲି ଏଡ଼େ ଏଡ଼େଟା ମାନ ହେଇଯାଇଚି । ପଣତ କାନିକୁ ଏବେ ଚୁପୁଡ଼ି ଦେଲେ ଚୁପୁଡ଼ି ହେଇଯିବ ସତେ ଅବା ।

ଆଣ୍ଠୁ ଉପରେ ମୁହଁ ରଖି ବସି ସେ ଆଖି ଟେକି ଚାରି ଆଡ଼କୁ ଦୃଷ୍ଟି ବୁଲେଇ ଆଣିଲା । ସେଇ ବିରାଟ ପଥର ଘରର ଗୋଟିଏ କଣରେ ପଥର ପିଣ୍ଡି ଉପରେ ରଖାଯାଇଥିବା ପଥର ବଇଠା ଉପରେ ପଥର ଦୀପଟିଏ ମିଞ୍ଜି ମିଞ୍ଜି ଜଳୁଥିଲା । ହୁଏତ ଅନେକ ବେଳୁ ଜଳିଜଳି ଲିଭିଲିଭି ଆସିଲାଣି । ତା' ପାଖରେ ଗୋଟିଏ ଟିଣ । ହୁଏତ ତେଲ ଟିଣ । କିଛି ତେଲ ତା' ଉପରେ ଛିଟିକି ପଡ଼ିଚି । ଏ ପାଖରେ ପଥର ମେଜ ଉପରେ ପଥୁରୀ ବାସନରେ କିଛି ରଖାଯାଇଚି, ଯାହା ଉପରେ ପଥୁରୀ ଥାଳିଟିଏ ଘୋଡ଼ା ହେଇଚି । ସେଥିରେ ରହିଛି ଛୋଟ ବଡ଼ ହୋଇ ଦୁଇଟି ରସ ଡେକଚି,

କଡ଼େଇ, ଡଙ୍କି, ପିଠାପାଡିଆ, ଚୁମୁଟା, ଗୋଟିଏ ଛୋଟ ପନିକି, ପଥରର ଥାଳି ଥାଳିଆ ଗିନା ଦୁଇଟା । ବେଶ୍ କିଛି ଦୂରକୁ ଛାଡ଼ି ଗୋଟିଏ ପଥର ଚୁଲି ପାଖରେ ଆଠ ଦଶ ଖଣ୍ଡ ଶୁଖିଲା କାଠ, ପଥରର ଲୁଣ କୁଣ୍ଡିରେ ଭର୍ତ୍ତି ଲୁଣ ଉପରେ ଆଠ ଦଶଟା କଞ୍ଚା ଲଙ୍କା । ପାଖରେ ଘିଅ ଘଡ଼ିଟିଏ । ସେ ପାଖକୁ ଗୋଟିଏ ଖଜୁରି ଝାଡୁ ଓ ଗୋଟିଏ ଖଡ଼ିକା ଝାଡୁ କାନ୍ଥକୁ ଡେରା ହୋଇ ରଖାଯାଇଚି । ସେ ଚାରିଆଡ଼କୁ ଆଖି ବୁଲେଇ ଆଣି ଥକି ପଡ଼ିଲା । ତାକୁ ଲାଗୁଚି ଏ ପଥର ଭିତରେ ତା' ଦେହ ମନ ବୋଧହୁଏ ପଥର ପାଲଟି ଅସାଡ଼ ହେଇଗଲାଣି । ସେ ଆଖି ବୁଜି ପକେଇଲା ।

କେତେବେଳ ଯାଏ ସେ ଏମିତି ଆଖି ବୁଜି ରହିଥିଲା କେଜାଣି । ହୁଏତ ବସି ବସି ଶୋଇ ପଡ଼ିଥିଲା କି କ'ଣ? ହଠାତ୍ ଚଢ଼େଇମାନଙ୍କ ଚହଚହରେ ତା'ର ଆଖି ଖୋଲିଗଲା; ଦୀପଟା କେତେବେଳୁ ଲିଭିସାରିଲାଣି । ଖାଲି ସୋରିଏ ଧୂଆଁ ଉପରକୁ ଉଠୁଚି । ଲିଭା ସଳିତାର ବାସ୍ନା ହଉଚି । ପଥର କାନ୍ଥର ଜାଲିରେ ପ୍ରଭାତର ଆଲୁଅ ଦେଖା ଯାଉଚି, ସିରିସିରି ପବନ ଆସୁଚି । ତାକୁ ଲାଗିଲା, ତାକୁ ବହୁତ ଶୋଷ ଲାଗୁଚି । ସେ ପଲଙ୍କ ଉପରେ ବସି ଗୋଡ଼ ହାତ ସିଧା କଲା, ଦେଖିଲା ଚୁଲି ପାଖରେ ଗୋଟିଏ ପଥର କୁଣ୍ଡରେ ପାଣି ଭର୍ତ୍ତି । କୁଣ୍ଡ ଉପରେ ଗୋଟାଏ କୁଲା ଘୋଡ଼ା ହେଇଚି । ପାଖରେ ଗୋଟିଏ ସୁରେଇ ଉପରେ ପଥୁରି ଗିଲାସଟିଏ ମୁହଁ ଉଗୁଡ଼ା ହେଇ ରହିଚି ।

ସେ ଉଠିଲା, ଗିଲାସଟି ଧୋଇ ସୁରେଇରୁ ପାଣି ଢାଳି ପିଇଲା; କିଛି ପାଣି ଆଖିରେ ଛାଟି, ବେକ ଚାରିପାଖ ଓଦା ହାତ ବୁଲେଇ ଆଣିଲା । ତାକୁ ଭାରି ଆରାମ ଲାଗୁଚି । ଏଥର ସେ ଚାଲଚାଲ ହେଇ ଘରଯାକ ବୁଲୁଚି । ମସ୍ତବଡ଼ ଘର । ପଥର କାନ୍ଥ... ପଥର ଚଟାଣ । ପଲଙ୍କର ପାଖାପାଖି କାନ୍ଥରେ କିଳା ବାଡ଼ିଆ ହେଇ ପିଲାଦିନରୁ ପୂଜା କରୁଥିବା ତା ଦୁର୍ଗା ଫଟଟି ଟଙ୍ଗା ହୋଇଚି । ଉପରେ ମନ୍ଦାର ଫୁଲଟି ଦରଶୁଖା ହେଇ ଗଲାଣି ।

ଫଟୋଟି ଦେଖି ହଠାତ୍ ତା ଆଖିରେ ଲୁହ ଆସିଗଲା । ସେ କାନ୍ଥରେ ଢାଇକିନା ମଥା ବାଡ଼େଇ ପ୍ରଣାମ କଲା, "ତୁ ଇଏ କ'ଣ କଲୁ ମା । ମୁଁ ଏବେ କ'ଣ କରିବି?" ଭାରି ଅଭିମାନରେ ସେ ମୁହଁ ବୁଲେଇ ଏପାଖକୁ ଘୁଞ୍ଚି ଆସିଲା । ତା'ର କୋହ ଉଠୁଚି । ସେଇଠି କାନ୍ଥକୁ ଆଉଜି ନଅଥ କରି ବସି ପଡ଼ିଲା । ତା'ର ମନେ ପଡ଼ିଗଲା ସବୁ କଥା ।

ନିତିଦିନ ପରି କାଳି ଅନ୍ଧାରରୁ ଉଠି, କଂସା ଧରି ଖିର ହଣ୍ଡାରୁ ସର ଛାଣି ଆଣିଲା ବେଳେ ଧରା ପଡ଼ିଗଲା ବଡ଼ ଭାଉଜ ହାତରେ । ସାଧବ ଘର, ସାତ ହଣ୍ଡା ଖିର ଫୁଟାଇ ଭାଉଜମାନେ ଶୀତଳ କରି, କଞ୍ଚା କଦଳୀପତ୍ର ଘୋଡ଼ାଇ ଭଣ୍ଡାର ଘରେ ରଖି ଦଉଥିଲେ । ବାପାଭାଇ ଦୂର ବିଦେଶୀ । ଘରେ ଜେଜେବାପା ଜେଜେମା'ଙ୍କର ରାଜୁତି । ଟିପେ କେ ଠିଆ କରି ଥାଆନ୍ତି ସମସ୍ତଙ୍କୁ । ଜେଜେବାପା ଭାରି କଞ୍ଜୁସ୍ । ପୁଅମାନଙ୍କୁ ଭଲ ପାଆନ୍ତି । ଝିଅମାନଙ୍କୁ ଦେଖି ପାରନ୍ତି ନାହିଁ ଜମାରୁ । କାହିଁକି ନାଁ ଝିଅ ଶାଶୂ ଘରକୁ ଗଲାବେଳେ ବହୁତ ଯାନି ଯଉତୁକ ଦେବାକୁ ହେବ । ସେଥିରେ ପୁଣି ବିଭାଖର୍ଚ୍ଚ, ଭୋଜିଭାତ, ଖିଆପିଆ, ଦିଆନିଆ । ସେଥିପାଇଁ ଲବଣୀ ପିତୁଳା ତାଙ୍କର ଦି' ଆଖିର କଣ୍ଟା । ସେ ଯେତେ ବଡ଼ ବଡ଼ ହେଇ ଆସୁଚି ତାଙ୍କର ଭାଳେଣି ସେତେ ବଢ଼ିଯାଉଚି ।

ଏଣେ ମାଆ ଜେଜେମା'ଙ୍କ ଚିନ୍ତା, ଝିଅ ଦି'ଗୁଣ୍ଡା ଭାତ ଜମା ଖାଉନି । ପୁଣି ଆହୁରି ଗୋଟିଏ ଚିନ୍ତା ସମସ୍ତଙ୍କୁ ଘାରୁଚି, ଖିର ହାଣ୍ଡି ସର ପଡୁନାହିଁ କାହିଁକି? କିଏ ଗୁଣି ଗାରେଡ଼ି କରିଚି ନା କ'ଣ?

ସେମାନେ କାହୁଁ ଜାଣିବେ, ଏ ସୁନ୍ଦର ଝିଅ ଏତେ ହୁନ୍ଦର କରୁଚି। ଏତେ ସର ଖାଇଲେ ଆଉ କୋଉ ପେଟରେ ଅନ୍ୟ ଜିନିଷ ଖାଇବଟି।

ବଡ଼ ବୋହୂ ଛକି ବସିଚି ଏଇ ଘଟଣା ଆଜି ଜାଣିବ। ସୁନ୍ଦରୀ ନାଁରେ ଝିଅଟି ରାତି ପାହିପାହି ଜାଙ୍ଗୁଲୁ ଜାଙ୍ଗୁଲୁ ହେଲା ବେଳକୁ ଖିର ହାଣ୍ଡିରୁ ସର ଛାଣିଲା ବେଳକୁ ଭାଉଜ ହାତରେ ଧରାପଡ଼ିଗଲା। ସେତିକି ବେଳୁ ତା ନାଁ ସରଖାଇ ସୁନ୍ଦରୀ। ମାଆ, ଜେଜେମାଆ ଆକଟ କଲେ। ଭାଉଜମାନେ ମୁହଁ ଛିଞ୍ଚାଡ଼ି କହିଲେ, "କି ଅଭିଲା, ସବୁ ସର ଏକୁଟିଆ ଖାଉଚି। ଆମ ପାଟିରେ ଶାମୁକାଏ ହେଲେ ବାଜନ୍ତା।" ମାତବରିଆ ଜେଜେ ବାଘୁଆ ନିଶ ମୋଡୁ ମୋଡୁ ଆଖି ଟମଟମ କରି କହିଲେ, "କେମନ୍ତ? ଏମନ୍ତ କଥା।" ସେ ତା ଉପରେ ରକ୍ତ ଚାଉଳ ଚୋବାଇଲେ।

ତା ପରର କଥା ତାକୁ ଆଉ ଜଣାନାଇଁ। ସଞ୍ଜୁଆ ସଞ୍ଜୁଆ ପଣା ପିଇ ଶୋଇଚି। ତା' ପରେ ଏଠି। କେମିତି କୁଆଡ଼େ କ'ଣ ହେଲା ସେ କିଛି ବୁଝିପାରୁନି। ସେ ସ୍ୱପ୍ନ ଦେଖୁଚି କି ଆଉ। ନିଜ ଦେହକୁ ସେ ପୁଳାଏ ଚୁମୁଟିଲା, ଭାରି କାଟିଲା। "ମୋ' ମାଆାଲୋ ମୁଁ କୋଉଠି?", ଏଇଆ କହି ସେ ଭେଁ ଭେଁ କାନ୍ଦିଲା ବଡ଼ ପାଟିକରି। ଏଇ ନିବୁଜ ପଥର ଘରେ କିଏ କୁଆଡ଼େ ଅଛି ଯେ ଶୁଣିବ?

ରାତି କେତେବେଳୁ ଭଲ କରି ପାହିଗଲାଣି। କଅଁଳ ଖରା ପଥର ଜଳାକବାଟିରେ ଆସି ଚଟାଣ ସାରା ଆଲୁଅର ପଶାପାଲି ବିଛା ହେଲା ପରି ଲାଗୁଚି। ସେ ଉଠି ଠିଆ ହେଲା, ଶେଷ ଆଡ଼କୁ ପଥର କବାଟ ଖୋଲି ଭିତରକୁ ଗଲା। ଏ ଘର ମଧ୍ୟ ବେଶ୍ ବଡ଼। ଆଲୁଅ ପଡ଼ି ଚାରିଆଡ଼ ପରିଷ୍କାର ଦେଖାଯାଉଛି। ଦୂରରେ ପାଇଖାନା ପଥରର। ତଳେ ଅବିଶ୍ରାନ୍ତ ପାଣି ଚାଲିଛି। କୋଉଆଡୁ ଝରଣା ପାଣି ତା ତଳ ଦେଇ ବୋହି ଯାଉଛି। ପାଖରେ ପଥର କୁଣ୍ଡ ପାଣି ଭର୍ତ୍ତି। ରସ ମଗଟିଏ ତା ଭିତରେ ଥୁଆ। ପୂରା ସେ କରରୁ, ପଥର କାନ୍ଥ ସେ ପାଖରୁ, ବେଶ୍ ବଡ଼ ଗୋଟିଏ ସୁରାଖ ଦେଇ ବାହାରୁ ପାଣି ଆସୁଚି। ତା'ର ଠିକ୍ ତଳକୁ ଗୋଟିଏ ପଥର କୁଣ୍ଡ। ତା ଭିତରେ ମଧ୍ୟ ନୂଆ ମଗଟିଏ ପଡ଼ିଚି। ପାଖରେ ଗୋଟିଏ ପଥର ଚଉକି। ଟିକିଏ ଛାଡ଼ି କାନ୍ଥରେ ଦି'ଟି ଦେଢ଼ ଫୁଟିଆ ପଥର ଖୁଣ୍ଟିରେ ଘରା ହୋଇ ସେଥିରେ ତିନିଫୁଟିଆ ଗୋଟିଏ ରୁଲ୍ ବାଡ଼ି ପରି ଗୁଞ୍ଜା ଯାଇ ଅଳ୍ପଗୁଣି ତିଆରି ହୋଇଚି। ତା' ଉପରେ ଦି ଦି ଖଣ୍ଡ ଶାଢ଼ୀ ସାୟା ବ୍ଲାଉଜ୍ ରଖା ହେଇଚି। ଆଉ ଗୋଟିଏ ଡୋରିଆ ଗାମୁଛା। ସେ ବଡ଼ ବିକଳ ହେଇ ଚାରିଆଡ଼କୁ ଚାହିଁଲା।

ନିତ୍ୟକର୍ମ ସାରି ଲୁଗା ବଦଳେଇ ସେ ବଡ଼ ଘରକୁ ଆସିଲା, କେହି କୁଆଡ଼େ ନାଇଁ। ସେ ମା ଦୁର୍ଗାଙ୍କ ପାଖରେ ଯାଇ ଆଣ୍ଠୁମାଡ଼ି ବସି ମୁଣ୍ଡ ନୁଆଁଇ କ'ଣ କ'ଣ ସବୁ କେତେ କହିହେଲା। ସେ ହଠାତ୍ ଚମକି ପଡ଼ିଲା, ପଶାପାଲି ଆଲୁଅରେ ତାକୁ ଗୋଟାଏ ଛାଇ ଦେଖାଗଲା। ଚମକି ପଡ଼ି, ଛାତିରେ ଛେପ ପକାଇ ସେ ବୁଲି ଚାହିଁଲା, ଦେଖିଲା ବାହାର କାନ୍ଥ ପାଖରେ ଗୋଟିଏ ମାଙ୍କଡ଼ ଭିତରକୁ ଉହୁଁକି ଚାହୁଁଛି। ତାକୁ ଭାରି ଶ୍ରଦ୍ଧା ଲାଗୁଚି। ଏ ଜନମାନବଶୂନ୍ୟ ଜାଗାରେ ଏ ଜୀବଟି ତାକୁ ଭାରି ଭଲ ଲାଗିଲା, ସେ କାନ୍ଥ ପାଖକୁ ଆସି ତାକୁ ହାତ ଦେଖାଇଲା। ମାଙ୍କଡ଼ଟି ଜାଲିରେ ହାତ ଗଳାଇ ତା' ହାତରେ ହାତ ରଖୁଚି। ତା ଏକାକୀ ଜୀବନରେ ସାଥୀଟି ବୋଲି ମନେ ହଉଚି। ସେ ଆସି ପିଜୁଳିଟିଏ ଆଣି ମାଙ୍କଡ଼କୁ ଦେଲା। ମାଙ୍କଡ଼ ତା' ହାତରୁ ପିଜୁଳି ନେଇ ସେଇଠୁ ଖଣ୍ଡେ ଦୂରରେ ବସି ପିଜୁଳି ଖାଉଚି।

ଏବେ ତାକୁ ଭାରି ଭୋକ ଭୋକ ଲାଗୁଚି । ସେ ଆସି ଥାଳି ଘୋଡ଼ଣି ଖୋଲି ଦେଖିଲା – ପଥର ବେଲା ଭିତରେ ଥିଲା ଖଇ, କଞ୍ଚା ଚୁଡ଼ା, ଉଖୁଡ଼ା ଉପରେ ଦୁଇଟା ବଡ଼ ମିଠେଇ, ଦି'ଟା କାକରା, ଗୋଟାଏ ଜିଲାପି, ଦି'ଟା ଖଜା । ଭାଉଜ ଘର ଭାର ଆସିଥିଲା । ସେ ଗୋଟାଏ ମିଠାଇ ଉଠେଇ ପୁଳାଏ ପାଟିରେ ପୂରାଇ, ଆଉଜା ପଥର କବାଟ ଖୋଲି ବାହାରକୁ ଆସିଲା, ଚାରି ଆଡ଼କୁ ଚାହିଁଲା । ବାହାରର ଏ ଅଂଶ ଏତେ ବହଳା ନୁହେଁ । ପାଖରେ ଆମ୍ବ ଗଛରେ ମାଡ଼ିଥିବା ମାଳତୀ ଲତା ଫୁଲରେ ଭର୍ତ୍ତି । ବୁଦୁବୁଦିଆ ବୁଦାମାନଙ୍କରେ କେତେ ପ୍ରକାରର ଅଜଣା ଫୁଲର ବାସ୍ନା ହଉଚି । ଭିତରକୁ ଭିତରକୁ ସରୁ ପାଦଚଲା ରାସ୍ତାଟିଏ ଯାଇଚି । ଚାରିପାଖରେ ଘନ ଜଙ୍ଗଲ ଏବେ ଏବେ ସଫା ହେଇଚି ମନେ ହଉଚି । ସେ ପାଖରେ ସେଇ ଝରଣାଟି ଯାହା ଗାଧୁଆ ଘର ଦେଇ କୁଳୁ କୁଳୁ ହେଇ ବହି ଯାଉଚି କୁଆଡ଼େ କେଜାଣି ?

ତାକୁ ବହୁତ ଭଲ ଲାଗୁଚି । ହେଲେ ସେ ନିହାତି ଏକୁଟିଆ । ମାଙ୍କଡ଼କୁ ଚାହିଁଲା, ଖଣ୍ଡେ ଦୂରରେ ସେ ବସି ମନ ମଉଜରେ ପିଜୁଳି ଖାଉଚି । କାହାର ପୋଷା ବୋଧହୁଏ । କାନରେ ଦୁଇଟି ପିତଳର ଫାଶିଆ ଲାଗିଚି । ସେ ମିଠେଇରୁ ଖଣ୍ଡେ ଛଡ଼େଇ ମାଙ୍କଡ଼ ଆଡ଼କୁ ବଢ଼େଇ ଡାକିଲା, "ଆ... ଆ... ମନୁ ନେ ।" ମାଙ୍କଡ଼ ପିଜୁଳି ଖଣ୍ଡକୁ ଫୋପାଡ଼ି ଦେଇ, ତା' ହାତରୁ ମିଠେଇ ନେଇ, ତା ପାଖରେ ବସି ଖାଉଚି । ତାକୁ ବାରମ୍ବାର ଚାହୁଁଚି । ସରଖାଇ ସୁନ୍ଦରୀ ତାକୁ ଧୀରେ ଧୀରେ ଆଉଁଶିଲା । ମନୁ ତା ପିଠିରେ ନାଉ ହେଲା, କୋଳରେ ମୁଣ୍ଡ ରଖି ଶୋଇ ପଡ଼ିଲା । ସରଖାଇ ସୁନ୍ଦରୀ ତା ମୁଣ୍ଡ ହାତ, ଦିହ ଆଉଁଶି ତାକୁ ଢେର ଗେହ୍ଲା କରୁଚି । ତା ଆଖିରେ ଲୁହ ଆସି ଯାଉଚି ।

ନିମ୍ବ ଗଛରୁ କେତେ ଜାତି ଜାତିକା ପକ୍ଷୀଙ୍କର କିଚିରି ମିଚିରି ଶୁଣୁଚି । ଶଙ୍ଖଚିଲଟିଏ ସେଠି ବସାବାନ୍ଧିଚି ବୋଧେ । ସକାଳୁ ସକାଳୁ ଚକର କାଟୁଚି । ସେ ମଝିଆଙ୍ଗୁଠି ପରିଆଙ୍ଗୁଠି ଜୋଡ଼ି, ଓଠରେ ଛୁଆଁଇ ମୁହଁ ଚାରି ପାଖରେ ବୁଲାଇ, "ଶଙ୍ଖଚିଲ ଭାଇ ନମସ୍କାର, ମାଟିଆ ଚିଲକୁ ଗୋଇଠା ମାର" କହି କହି ନମସ୍କାର କଲା । ଏତିକିବେଳେ ଗୋଟିଏ ନେଉଳ ଚାରିଟି ଛୁଆଙ୍କୁ ଧରି କୋରେହିଁ ବୁଦାରୁ ବାହାରି କୁନ୍ଦବୁଦା ସନ୍ଧିରେ ପଶି ଯାଉଥିଲା । ମା' ନେଉଳଟି ଦି ଗୋଡ଼ରେ ଠିଆହୋଇ, ପଛକୁ ଫେରି ଚାହିଁଲା, ପୁଣି ତରବରିଆରେ ବୁଦା ଭିତରକୁ ପଶିଗଲା । ଏ ନୂଆ ଅତିଥିକୁ ଦେଖି ସେ ହୁଏତ ଆଶ୍ଚର୍ଯ୍ୟ ହେଇଯାଉଚି ।

ସରଖାଇର କେତେ ଡର କଟିଗଲାଣି । ସେ ମନକୁ ଟିକିଏ ଦମ୍ଭ କଲାଣି । ଏଇମାନେ ତା'ର ସାଥୀ । ଏଇଠି ସେ କେତେ ଦିନ ରହିବ କି ଚିରଦିନ ରହିବ କିଏ ଜାଣିଚି ? ତା' ଭାଗ୍ୟ ତାକୁ କୁଆଡ଼ିକି ନେବ ? ସରଖାଇ ଅଳସ ଭାବରେ ଠିଆହେଲା । ବାହାର ପାଖ କାନ୍ଥକୁ ଲାଗି ସରୁ ପିଣ୍ଡାଟିରେ ବସିଥିଲା । ଡାକିଲା, "ଆ'ରେ ମନୁ ଘରକୁ ଯିବା ।" ସେ ଘର ଭିତରକୁ ଗଲା । ମନୁ କବାଟ ପାଖରେ ଘର ଭିତରକୁ ଉଙ୍କି ଝୁଙ୍କି ମାରିଲା । ଘରେ ପଶି, ବାହାରକୁ ଆସି, ପୁଣି ଘର ଭିତରେ ଖଟ ଉପରକୁ ଡିଆଁ ମାରି ବସିଲା । ହାତରେ ଧରିଥିବା ଲଡ୍ଡୁ ଭାଙ୍ଗିଯାଇ ବିଛାଡ଼ି ହେଇ ପଡ଼ିଗଲା ଶେଯରେ । ସରଖାଇ କହିଲା, "ଏ ହେଃ, ତୁ କ'ଣ କଲୁରେ ମନୁ ।"

ମନୁ କାହାରି କଥା ନ ଶୁଣି ଗୋଟି ଗୋଟି ବୁନ୍ଦିଆ ଖୁଣ୍ଟି ଖୁଣ୍ଟି ଖାଉଥିଲା । ସେ କହିଲା, "ତୁ ତ ଭାରି ଚଗଲାରେ ମନୁଆ ।" ସେ ତା ପିଠିରେ ସରୁ ଚାପୁଡ଼ା ମାରିମାରି କେତେ କ'ଣ କଥା ହେଲା ।

କେତେ କାନ୍ଦିଲା, କେତେ ହସିଲା। ଏବେ ବସି ବସି ଚିନ୍ତା କରୁଚି, କ'ଣ କରିବ ସିଏ। କେମିତି ଭାବରେ ତା'ର ଦିନ କଟିବ? ଏଇ ଜନମାନବଶୂନ୍ୟ ଗହନ ବନରେ କେତେ ଦିନ ବଞ୍ଚି ପାରିବ? ମାଆ କ'ଣ କରୁଥିବ। ଘର କଥା ମନେ ପଡ଼ି ଛାତି ଖାଲି କୋରି ହୋଇଯାଉଚି। ଭାଉଜମାନେ କ'ଣ କରୁଥିବେ। ଅଜାଣତରେ ସାମାନ୍ୟ ଦୋଷ ପାଇଁ ଏମିତି ଦଣ୍ଡ କେହି କ'ଣ କେବେ ପାଇଚି?

ଏମିତି କଷ୍ଟ ନ ଦେଇ ବିଷଟିକିଏ ଦେଇ ମାରି ନ ଦେଲେ କାହିଁକି? ମରିବା କଥା ମନେପଡ଼ି ସେ ଭାବିଲା, ଏଇ ମାଳତୀଲତା ବେକରେ ଗୁଡ଼ାଇ ଝୁଲି ପଡ଼ିବ କି? ସେ ଚମକି ପଡ଼ିଲା। ତାକୁ ଭାରି ଡର ମାଡ଼ିଲା। ବୋଉ ମାର୍କଣ୍ଡ ପୁରାଣରୁ ପଢୁଥିଲା, ଆତ୍ମହତ୍ୟା ମହାପାପ; କୋଉ ପୁରରେ ହେଲେ ଠାବ ମିଳେ ନାହିଁ। ଯୋଉ ଡାଳରେ ବସିବ ସେ ଡାଳ ଭାଙ୍ଗି ପଡ଼ିବ। କିଛି ଖାଇବାକୁ ଗଲାବେଳେ ଜିଭରେ ନିଆଁ ଜଳିଯିବ। କେତେ କୋଟି ଜନ୍ମ ପାଇଲା ପରେ ଯାଇ କେତେ ତପସ୍ୟା ବଳରେ ମଣିଷ ଜନ୍ମ ମିଳିଥାଏ। ଏଇ କଥା ମନରେ ଆଣିବା ମଧ୍ୟ ପାପ। ସେ କେବେହେଲେ ଆଉ ଏକଥା ଭାବିବନାହିଁ। ବୋଉ କଥା କହି କହି ସେ ବଡ଼ ପାଟିରେ କାନ୍ଦି ଉଠିଲା। ମନୁ ଉଠିପଡ଼ି ତାକୁ ଭିଡ଼ି ଓଟାରି ପକେଇଲା। ଏଇ ନିଘଞ୍ଚ ଅରଣ୍ୟରେ ତାକୁ କିଏ ସେ ବୁଝାଇବ! କେବଳ ତା'ରି ଛାତିଫଟା କାନ୍ଦଣା ଏଇ ନିବୁକ ପଥର କାନ୍ଥରେ ଧକ୍କା ଖାଇ ପୁଣି ତା'ରି ପାଖକୁ ଫେରି ଆସୁଥିଲା। ସେ ତକିଆ ଉପରେ ମଥାଟି ରଖି ସେଇଠି ଗଡ଼ି ପଡ଼ିଲା। ତା'ର ଆଖିରୁ ଲୁହ ଝରି ଝରି କେତେବେଳେ ନିଦ ଲାଗିଯାଇଚି।

ସେ ଚାଉଁକିନା ଉଠି ବସି ପଡ଼ିଲା। ତା ଛାତି ଥରି ଯାଉଚି, ଧଡ଼ ଧଡ଼ ହଉଚି। ପଥର କବାଟରେ ଲାଗିଥିବା ମୋଟା ଲୁହା ଶିଙ୍କୁଳି ଖଡ଼ଖଡ଼ କରୁଚି କିଏ, କିଏ ଟାଣୁଚି? ଭାରି ଡର ଲାଗୁଚି। କବାଟକୁ କିଏ ରାମ୍ପୁଡ଼ିଲାଣି। ହଁ, ମନୁ ଚିଁ ଚିଁ କରୁଚି। ସରଖାଇ ଏଥର ଶାନ୍ତ ହେଲା – ସେ କାନ୍ଦିଲା ବେଳେ ମନୁ ତାକୁ ଟାଣି ଓଟାରି ବାହାରକୁ ପକେଇଥିଲା। ମନୁ ଗଲା ପରେ ସେ ନିଜେ କବାଟଟା ବନ୍ଦ କରି ଦେଇଥିଲା। ସେ କବାଟ ଖୋଲିଲା। ମନୁ ଗୋଟିଏ ଛୋଟ ଡାଳ ଧରି ଆସିଚି। ସେଥିରେ କେତେ ଗୁଡ଼ିଏ ଛୋଟ ଛୋଟ ପାଚିଲା ପାଚିଲା କୋଳି। ଗାଲ ଦି'ଟା ଫୁଲିଫୁଲି ଏଡ଼େ ଏଡ଼େ ହେଇଚି। ସେ ଗାଲକୁ ଖୁନ୍ଦା ମାରି ମାରି ମେଞ୍ଚାଏ କୋଳି ଗାଳି ପକେଇଲା। ଆହା ବଣର ନିରୀହ ପଶୁଟିଏର ତା' ପ୍ରତି କେତେ ମାୟା, କେତେ ଦୟା, କେତେ ମମତା! ତା ଆଖିରେ ଲୁହ ଡବଡବ ହେଇଗଲା – ସେ ତାକୁ କୋଳକୁ ଟାଣି ଆଣି ଛାତିରେ ଭିଡ଼ିଧରିଲା।

ତା' ନିଦାରୁଣ ଜେଜେବାପା କାହିଁକି ତା ପ୍ରତି ଏମିତି ନିର୍ମମ ହେଲେ? ସେ ମନୁର କାନେ କାନେ କହିଲା, "ମନୁରେ, ତୁ ମୋତେ ଛାଡ଼ି ଯିବୁନି ଜମା।" ମନୁ ତା ମୁହଁକୁ ଚାହିଁ ଚାହିଁ କ'ଣ ବୁଝିଲା କେଜାଣି ତା କାନ୍ଧ ଉପରକୁ ଡେଇଁ ପଡ଼ି ଖିଁ ଖିଁ ହେଇ ତା ମୁଣ୍ଡରୁ ଉକୁଣି ବାଛି ବସିଲା। ସରଖାଇ ସୁନ୍ଦରୀ ଅନ୍ୟମନସ୍କ ଭାବରେ ବାହାରକୁ ଚାହିଁଲା, ବେଳ ରତରତ ହେଲାଣି। ଏଇନେ ସଞ୍ଜ ମାଡ଼ି ଆସିବ। ତା' ପରେ ରାତି। ଏ ନିକାଞ୍ଚନ ରାତିରେ ଏ ଗହନ ବନରେ ଏକାକିନୀ ସେ କେମିତି ରହିବ? କେମିତି ରହିବ ସତେ? ସେ ଉଠି ପଥର କବାଟ ବନ୍ଦ କରିଦେଲା। ଘର ମଝିକୁ ଆସି ନିରାଶ ହୋଇ ବିକଳରେ ଚାରି ଆଡ଼କୁ ଚାହିଁଲା।

ହଠାତ୍ ପଲଙ୍କ ତଳ ଆଡ଼କୁ ତା ଦୃଷ୍ଟି ପଡ଼ିଗଲା। ଦେଖିଲା ଭିତରେ ଗୋଟାଏ କ'ଣ

ଥୁଆ ହେଇଚି । ଟାଣି ଆଣିଲା – ଗୋଟାଏ ପୁରୁଣା ବେତ ପେଡ଼ି କୋଉ କାଳର । ଉପର ସାରା ମଇଳା ଅଳନ୍ଧୁରେ ଭର୍ତ୍ତି । ତା ଭିତରେ କ'ଣ ଅଛି କେଜାଣି? ଖଜୁରି ଝାଡୁରେ ଅଳନ୍ଧୁ ସବୁ ଭଲ କରି ଝାଡ଼ିଲା । ଖୋଲି ଆଶ୍ଚର୍ଯ୍ୟ ହେଇଗଲା । ତା ଭିତରେ ଅଛି – ରାମାୟଣ, ମହାଭାରତ ଆଉ ଭାଗବତ । ସବୁ ବନ୍ଧେଇ ହେଇଚି । ତା ହେଲେ ସବୁ ସବୁ ପୂରା ଅଛି । ତା' ମନ ବହୁତ ଖୁସି ହେଇଗଲା । ମାଆଙ୍କ ଆଡ଼କୁ ହାତ ଯୋଡ଼ି, ତଳେ ମୁଣ୍ଡ ଲଗାଇ ପ୍ରଣାମ କରି କହିଲା, "ତୁମେ ହିଁ ଭରସା ମୋର ଅକୂଳ ଦୁଃଖ ସାଗରେ'।" ତା ମାଆ ସବୁବେଳେ ଏଇକଥା କହୁଥିଲେ ।

ସେ ବହି ସବୁ ଦେଖୁ ଦେଖୁ ମନୁ ସେ ପେଡ଼ି ଭିତରେ ପଶି ସାରିଲାଣି । ହେଇ ହେଇ କହୁ କହୁ ସେ ଗୋଟାଏ ମହମବତୀ ଧରି ତାକୁ କାମୁଡ଼ି କାମୁଡ଼ି ଯାଇ ଖଟ ଉପରେ । ଛିଃ ଛିଃ ତାକୁ ଖାଆନ୍ତିନି କହି କହି ଉଠିଗଲା ବେଳକୁ ସେ ସେଇଟାକୁ ତଳକୁ ଫୋପାଡି ଦେଲା । ସେ ପେଡ଼ି ଭିତରକୁ ଚାହିଁଲା, ଆହୁରି ଅଛି ଚାରିଟା ମହମବତୀ, ପାଞ୍ଚଟା ଦିଆସିଲି ପେଡ଼ା । ବହିତଳେ ଗୋଟିଏ ଚିରିଣି ପାନିଆ, ଗୋଟିଏ ସୁନ୍ଦର ଫରୁଆ, କଜଳପାତୀ ଗୋଟିଏ । ଆଉ ଗୋଟିଏ ପେନ୍‌ସିଲ, ଗୋଟିଏ କଲମ ନାଲିଆ କନାରେ ବନ୍ଧାହେଇ ରଖାଯାଇଛି । ଆଉ ମେଞ୍ଚାଏ ଅଲେଖା କାଗଜ, ଅନେକ ଦିନ ରହି ରହି ଯାହା ହଳଦିଆ ପଡ଼ିଯାଇଚି । ବୁଝିପାରୁନି ଯେ ଏ ପଥର ଘରେ କିଏ ରହୁଥିଲା, କାହିଁକି ରହୁଥିଲା । ତା'ରି ପରି କେହି କ'ଣ ନିର୍ବାସନ ଦଣ୍ଡ ଭୋଗୁଥିଲା ଅବା? ସେ ନିଶ୍ଚୟ ଜଣେ ବିଦୁଷୀ – ସେ କିଏ, କୁଆଡ଼େ ଆସିଥିଲେ, କୁଆଡ଼େ ଗଲେ? ଏ ପ୍ରଶ୍ନ ଚିରଦିନ ପାଇଁ ତା ମନରେ ଅମୀମାଂସିତ ହୋଇ ରହିଗଲା । ସେ ଯିଏ ହୁଅନ୍ତୁ । ତାଙ୍କୁ ମୁଣ୍ଡ ଲଗାଇ ପ୍ରଣାମ କଲା ତା'ର ମନେ ମନେ ।

ପଢ଼ିବ ବୋଲି ଭାଗବତର ପ୍ରଥମ ସ୍କନ୍ଧଟି କାଢ଼ି ମଥାରେ ଛୁଆଁଇଲା, ଆଉ ସବୁ ପଦାର୍ଥ ଝାଡ଼ି ଝୁଡ଼ି ଅତି ଯତ୍ନରେ ସେଇ ପେଡ଼ି ଭିତରେ ରଖିଦେଲା । ଖାଲି ଗୋଟିଏ ପେଡ଼ା ଦିଆସିଲିକି ଛାଡ଼ି । ମନୁ କାମୁଡ଼ି ଥିବା ମହମବତୀଟି ତ ସେ ମନୁଠାରୁ ଛଡ଼ାଇ ଆଣି ପାଖରେ ରଖିଚି । ଏଥର ସେ ନାରାୟଣଂ ନମସ୍କୃତ୍ୟ ଶ୍ଳୋକଟି ପଢ଼ି, ଭାଗବତ ଖୋଲିଲା – ପଢ଼ି ଚାଲିଚି, ଚାଲିଚି । ମନରେ ଅନେକ ଭାବପ୍ରବଣତା, ଭକ୍ତିରେ ହୃଦୟ ପୂରି ଯାଉଚି । ଭଗବାନଙ୍କର ଶ୍ରୀଚରଣରେ ପ୍ରାଣ ସମର୍ପିତ । ଭୀମସ୍ୟାପି ରଣେ ଭଂଗୋ ଶ୍ଳୋକଟି ପଢ଼ି ସେ ଭୂଇଁରେ ମଥା ଲଗାଇଲା । ଡାହାଣିଆ ଖରା ଚାଲିଗଲାଣି, ଫୁଲସଞ୍ଜ ନଇଁ ଆସିଲାଣି । ସେ ଗୋଟିଏ ଭଲ ମହମବତୀ କାଢ଼ି ଲଗାଇ, ତା ଠାକୁରାଣୀ ପାଖରେ ଜଳାଇ, ବେକରେ କାନି ଗୁଡ଼େଇ ପ୍ରଣାମ କଲା । ତେଲ ଦେଇ ଦୀପଟି ଲଗାଇଦେଲା, କିଛି ସମୟ ଚାହିଁ ରହିଲା ଶିଖା ଆଡ଼କୁ । ମୁଦା ଘର ଭିତରେ ନିଃସ୍କମ୍ପ ଶିଖା ଧୀର ଭାବରେ ଜଳୁଥିଲା ।

ମନୁ ଆସି କବାଟ ଖାରୁ ଖାରୁ କଲା – ସେତେବେଳୁ ଯାଇଥିଲା ଯେ ଏତେବେଳେକୁ ଆସୁଚି । ମନୁର ଆଶା ଛାଡ଼ି ଦେଇଥିଲା ସରଖାଇ । ଯାହାହଉ ଆସିଲା ତ । ତା' ନିସଙ୍ଗ ଜୀବନର ଏକମାତ୍ର ସାଙ୍ଗ । କବାଟ ଖୋଲିଲା ମାତ୍ରେ ମନୁ ଭିତରକୁ ଆସି ଏ ପଟ ସେପଟ ଡେଇଁ ଖଟ ଉପରେ ଚଢ଼ି ବସିଲା । ସରଖାଇ ତାକୁ ଆଉଁସି ପାଉଁସି ଗେଲ କଲା । ଏଇନେ ସରଖାଇକୁ ଭାରି ଭୋକ ଲାଗୁଚି । ପେଟ ଆଉଣ୍ଡି ହେଉଚି । ସେତେବେଳେ ଯାହା ଟିକିଏ ମିଠେଇ ପାଟିକି ପକେଇଥିଲା, ଆଉ ଖାଇବା ପିଇବା କଥା ଭୁଲି ଯାଇଚି ପୂରାପୂରି । ମନୁ ଆଣିଥିବା କୋଳି ଡାଳଟା ପଥର ମେଜ

ଉପରେ ଥୁଆ ହେଇଚି। ସେଥିରୁ ଦି'ଟା କୋଳି ପାଟିରେ ପକାଇଲା – ସୁଆଦ ଲାଗୁଚି ତ।

ଭାରି ଭୋକ। ଏବେ ସେ ଟିକିଏ ଚୁଡ଼ା ଆଣି ପଥୁରି ତାଟିଆରେ ରଖି ତା' ଉପରେ ମିଠେଇ ଖଣ୍ଡେ ଭାଙ୍ଗି ଘିଅ ଘଡ଼ିରୁ ଘିଅ ଟିକିଏ ପକେଇ ଗୋଳାଇଲା। ପାଣି ଟିକିଏ ପକେଇ ଥରଟେ ପାଟିକୁ ନେଇଚି ମନୁ ଆସି ପାଖରେ ବସିଲାଣି। ଖଣ୍ଡେ ପତ୍ର ଆଣି ସେ ତାକୁ ଟିକିଏ ଦେଲା। ମନୁ ପାଟିରେ ଦେଇ ନେଭାରି ପକଉଚି, ପୁଣି ନେଇ ଖାଉଚି। ସରଖାଇ ପାଣି ପିଇ ପିଇ ଚୁଡ଼ା ଖାଉଚି। ତଣ୍ଟିରେ ଗଳୁନି। ତାକୁ ଖାଇବାକୁ ପଡ଼ିବ, ଖାଉଖାଉ ପୁଣି ଅଟକି ଗଲା – ଏଇତକ ସରିଗଲେ? ସେ ପଥୁରି ଆଡ଼େ ଦୃଷ୍ଟି ପକେଇ ଭାବିଲା କାଲିକୁ ଭାତ ରାନ୍ଧିବ। ସେ ମୁଣିରେ ଚାରିମାଣ ହବ ଚାଉଳ ଅଛି। ଠୁଙ୍ଗାରେ ଡାଲି ଗଣ୍ଡେ। ଚାଉଳ ଭିତରେ ପୋତି ହୋଇଛି ଦି' ଚାରିଟା ଆଳୁ, ଦି'ଟା ପିଆଜ। ସାଙ୍ଗ ପିଲାଙ୍କ ସଙ୍ଗେ ଭୋଜି ଭାତ କରି ସେମାନେ ନିଜେ ନିଜେ ରାନ୍ଧି ବାଢ଼ି ଖାଇଛନ୍ତି। ସେଇତକ ସରିଗଲେ? ସରିଗଲେ? କେଜାଣି, ଜେଜେବାପାଙ୍କ ଦୟା ହେଲେ ସେ ପୁଣି ଘରକୁ ନେଇଯାଇ ପାରନ୍ତି। ସେ ଗଲାବେଳେ ନିଶ୍ଚୟ ମନୁକୁ ସାଙ୍ଗରେ ନେଇଯିବ। ସେ ପୁଣି ମନେ ମନେ ହସିଲା। କୁମ୍ଭୀର ନେଇ ଅଧା ନଈରେ କଲାଣି, ଝିଅର ଖଇ ଖିଆ ଛାଡୁନି।

ସେ ଉଠିଲା, ରାତି ହୋଇଗଲାଣି। ବାହାରେ ହୁଏତ ଜହ୍ନ ପଡ଼ିଚି। ପଥର ଜାଲିରେ ଛାଇ ଛାଇଆ ଆଲୁଅ। ସେ ପଥର କବାଟ ଭଲ କରି ମୁଦି ଦେଇଚି। ପଥର ଘରେ ସେ ଏବେ ଛାତି ପଥର କରି ଶୋଇପଡ଼ିବ। ମା'ଙ୍କ ପାଖରେ ଜଳୁଥିବା ମହମବତୀଟି ଆଉ ଅଳ୍ପ ଅଛି। ସରି ସରି ଆସିଲାଣି। ସେ କୁନି ଘଣ୍ଟିଟି ଟୁଣୁଟୁଣୁ ବଜେଇଲା, ମୁଣ୍ଡିଆ ମାରିଲା। ମନୁ ଝଅଟ ଆସି ଘଣ୍ଟିଟିକୁ ଟୁଣୁଟୁଣୁ କରି ଏପଟ ସେପଟ ଡେଇଁଡେଇଁ ବୁଲୁଚି। ସରଖାଇ ତା' ପଛେ ପଛେ ଗୋଡ଼େଇ ଗୋଡ଼େଇ ଥକି ପଡ଼ିଲାଣି। ମନୁ ଉପରେ ରାଗିମାଗି ମୁହଁ ଫୁଲେଇ ବସିଲା। ମନୁ କିଛି ସମୟ ପରେ ଘଣ୍ଟିଟିକୁ ରଖି ତା ପାଖରେ ବସିଲା। ସେ ତା ଆଡ଼େ ଚାହିଁଲାନି କି କିଛି କହିଲାନି। ମନୁ ତାକୁ କେତେ ଟଣା ଓଟରା କଲା, ରାମ୍ପୁଡ଼ିଲା, ତଳେ ଗଡ଼ିଲା – ଏଥର ସରଖାଇ ଛୋଟ ପିଲାଙ୍କୁ ବୁଝେଇଲା ପରି କେତେ କ'ଣ କହିଲା। ଆ ଆ ଶୋଇବା କହି ପଲଙ୍କରେ ଗଡ଼ି ପଡ଼ିଲା। ମନୁ ମଧ୍ୟ ସୁନାପିଲାଟି ପରି ତା' ପାଖରେ ଶୋଇପଡ଼ିଲା।

ସରଖାଇ ଶୋଇ ଯାଇଚି ତ ଶୋଇଯାଇଚି, ଇଆଡୁ ସିଆଡୁ ଚିନ୍ତି। ଖିଆପିଆର ଠିକଣାନାହିଁ। ଅସକତିଆ ଲାଗୁଥିଲା; ନିଦ ଭାଙ୍ଗିଲା, ମନୁ ସେତେବେଳେ ତା' ଗୋଡକୁ ରାମ୍ପୁଡୁଚି। ସେ ଉଠି ବସିଲା। ପ୍ରଥମେ ତ କୋଉଠି ଅଛି ଭାବିପାରିଲାନି। ଧୀରେ ଧୀରେ ସବୁକଥା ମନେ ପଡ଼ିଗଲା। ସେ ଉଠି ବସି ଦି ହାତ ଘଷି, ମୁହଁର ଚାରିପାଖେ ବୁଲାଇ ଆଣିଲା। ପୁଣି ଦି ପାପୁଲିକି ଚାହିଁ, "କରାଗ୍ରେ ବସତେ ଲକ୍ଷ୍ମୀ, କର ମଧ୍ୟେ ଚ ସରସ୍ୱତୀ। କର ମୂଳେ ତୁ ଗୋବିନ୍ଦ, ପ୍ରଭାତେ କର ଦର୍ଶନେ" କହି ପ୍ରଣାମ କଲା।

ମନୁ ଅସମ୍ଭାଳ କରୁଚି। ସେ ଦୁଆର ଖୋଲି ବାହାରକୁ ଚାହିଁଲା, ମନୁ ଗଛକୁ ଗଛ ଡେଇଁଡେଇଁ କୁଆଡ଼େ ଚାଲିଗଲା। ସୁନ୍ଦର କଅଁଳ ଖରା ଚାରିଆଡ଼େ ବିଛାଡ଼ି ହେଇ ପଡ଼ିଲାଣି। ପକ୍ଷୀମାନଙ୍କର କିଚିରି ମିଚିରି। ଗଙ୍ଗଶିଉଳି ଫୁଲ ପାଆ ବହଳରେ ପଡିଛି। ମହକରେ ମହକି ଯାଉଚି ସାରା ବଣ ରାଇଜ। ଜାତି ଜାତିକା ରଙ୍ଗ ରଙ୍ଗିଆ ଫୁଲ କେତେ ଫୁଟି ଝଡ଼ିଚି। ଶଙ୍ଖ ଚିଲ ମୁହଁ ଚାହିଁବ ବୋଲି

ସେ ବୁଲି ବୁଲି ସାରା ଆକାଶକୁ ଚାହିଁଲା । କାଇଁ ନାଇଁ ତ? ତା ମନ ଉଦାସିଆ ହୋଇଗଲା । କିନ୍ତୁ ପୁଣି ଖୁସି ହୋଇଗଲା ଶୁଭ ପକ୍ଷୀ, ଭଦଭଦଳିଆଟିକୁ ଚାହିଁ । କୋଉ ଗଛରୁ ଉଡ଼ି ଆସି ନାଲି ଫୁଲ ଭର୍ତ୍ତି ସେଇ ନହକା ଡାଳରେ ବସି ଝୁଲୁଚି । ସେ ଖୁସିରେ କହି ପକେଇଲା, "ଶଙ୍ଖ ଚିଲ ମହାବିଲ୍ ଭଦଭଦଳିଆ ପକ୍ଷୀ, ଶ୍ରୀ ରାମ କହିଗଲେ ସୀତୟାଟି ବଡ଼ ଦୁଃଖି ।" ତା' ମନ ପୁଣି ଖରାପ ହୋଇଗଲା । ପ୍ରକୃତରେ ସୀତୟାଟି ବଡ଼ ଦୁଃଖୀ । ସେ ଗୋଟାଏ ଦୀର୍ଘ ନିଶ୍ୱାସ ଟାଣି ଘର ଭିତରକୁ ଲେଉଟି ଆସିଲା । ଦୁଆର ମୁହଁ ପାଖରେ ମନୁକୁ ଆନିସା କଲା, ମନୁ ମନୁ କେତେ ଡାକ ଡାକିଲା । କାଇଁ ତା'ର ଚିହ୍ନ ବର୍ଣ୍ଣ କୋଉଠି ନାହିଁ । କୁଆଡ଼ି ଗଲା ମନୁ? ମାଙ୍କଡ଼ ଜାତି ତ; ଯଦି ଆଉ ନଆସେ? ସେ କେମିତି ରହିବ ଏକୁଟିଆରେ? କେମିତି ବେଳ କଟେଇବ?

କବାଟ ବନ୍ଦ କଲା ସରଖାଇ ସୁନ୍ଦରୀ । ମାଆ ଫଟ ପାଖରେ ଠିଆ ହୋଇ କାନ୍ଥରେ ମୁଣ୍ଡ ବାଡ଼େଇ ପ୍ରଣାମ କଲା, "ତୁହି ମା' ଭରସା ମୋର ଅକୂଳ ଦୁଃଖ ସାଗରେ ।" ଆସି ବିଛଣା ଝାଡ଼ିଲା, ଖଜୁରି ଝାଡୁ ଆଣି ଘରଟି ନିର୍ମଳ କରି ଓଳେଇଲା ପରେ ଖଡ଼ିକା ଝାଡୁ ଧରି ବାହାରକୁ ଆସିଲା । ସଜ ସଜ ଗଙ୍ଗଶିଉଳି ଫୁଲ ଆଉ ସେଇ ରଙ୍ଗିନ୍ ଫୁଲ କେତେ ଏମିତି ଅଣ୍ଟିରେ ଅଣ୍ଟିଏ ଆଣିଲା । ପାଖ ବଉଳ ଗଛରେ ହାତ ପାଆନ୍ତିରେ ନିର୍ମୁଳି ଲତାଟିଏ ମାଡ଼ିଚି, ଖଣ୍ଡେ ଛିଣ୍ଡେଇ ଆଣିଲା । ଘରେ ପଥର ମେଜ ଉପରେ ଫୁଲ ସବୁ ରଖିଦେଇ ଖଡ଼ିକା ଝାଡୁରେ ଦୁଆର ମୁହଁ ପାଖ ସାରା ଓଳାପଳା କରି ଆସିଲା ଘରକୁ । ଭିତର ଘର କବାଟ ଖୋଲି ଚାହିଁଲା, କୁଣ୍ଡରେ ପାଣି ଭର୍ତ୍ତି । ନିତ୍ୟକର୍ମ ସାରି, ଭଲ କରି ଗାଧୋଇ ପାଧୋଇ ଲୁଗା ବଦଳାଇ, ଅଳୁଗୁଣିରେ ଲୁଗା ଶୁଖାଇ ଏପଟ ଘରକୁ ଆସିଲା । ପେଡ଼ିରୁ ଚିରିଣି ପାନିଆ କାଢ଼ି ମୁଣ୍ଡ କୁଣ୍ଡାଇ କଳା ସିରିଟି କପାଳରେ ଲଗାଇଲା ।

ଏଇନେ ତାକୁ ଭାରି ଭଲ ଲାଗୁଚି । ଦର୍ପଣରେ ମୁହଁ ଦେଖୁଚି । ଏଇନେ ଦେଖିଲେ ମନେ ହେଉନି ଯେ ତା' ଉପରେ ଏତେ ଧକଲ ଯାଇଚି । ସେ ନିର୍ମୁଳିରେ ଗଙ୍ଗଶିଉଳି ଭରି ଭରି କି ସୁନ୍ଦର ମାଳ ଗୁନ୍ଥିଲାଣି । ନାଲି ଧଳା ପେନ୍ଥା ସବୁ ଫଟ ଉପରେ ଲଗାଇ, ମାଳଟିକୁ ଦି' ସରି କରି ମାଆକୁ ପିନ୍ଧାଇ ପ୍ରଣାମ କଲା । ଏତିକି କରୁ କରୁ ଢେର ବେଳ କଟିଗଲାଣି, ଏବେ କ'ଣ କରିବ ଆଉ? ସେ ପଥୁରିରେ ଥିଲା କାକରା ଆଉ କ'ଣ ସବୁ, ଟିକିଏ ଆଣି ଖାଇଲା – ମନୁ କାଇଁ? କୁଆଡ଼େ ଗଲା ଏତେ ବେଳ ଯାଏଁ? ଆଉ ଆସିବନି କି? ସେ ଏବେ କ'ଣ କରିବ? ପେଡ଼ିରୁ ଭାଗବତ କାଢ଼ି ପଢ଼ିଲା । ଅଧ୍ୟାୟେ ପଢ଼ି ସାରିଲା, ଆଉ ତ ମନ ହଉନି ପଢ଼ିବାକୁ? ରାମାୟଣ କାଢ଼ି ପୁଣି ଅଧ୍ୟାୟେ ପଢ଼ିଲା । ମଥାରେ ଲଗାଇ, ଭୀମସ୍ୟାପି ଶ୍ଳୋକଟି କହି ମଥାରେ ଛୁଆଁଇ, ପୁଣି ସଜାଡ଼ି ପେଡ଼ିରେ ରଖିଦେଲା ।

ଚାରି ଆଡ଼କୁ ବୁଲୁବୁଲୁ କରି ଚାହୁଁଚି, ଏଇନେ କ'ଣ କରିବ । ହଁ ଏଇନେ ସେ ରାନ୍ଧିବ । ଚୁଲି ପାଖକୁ ଆସିଲା – କେମିତି ଲଗେଇବ ସେ ଚୁଲି? ହୋମ କଲାବେଳେ ଯେମିତି କାଠରୁ କତରା ଛଡ଼ାଇ ଛଡ଼ାଇ ଲଗାନ୍ତି ପରେ ଆଉ କାଠ ସଜାଡ଼ନ୍ତି, ସେମିତି ଶୁଖିଲା କାଠ ଖଣ୍ଡେ ଟାଣି ଆଣିଲା ବେଳକୁ କାଠ ତଳେ ଛୋଟ କଟୁରିଟିଏ ଦେଖିଲା । ମନ ଖୁସି ହେଇଗଲା – ଆରେ ସବୁ ଜିନିଷ ତ ସଜଡ଼ା ହୋଇ ରଖା ହୋଇଚି । ତା ହେଲେ ମୋ ପ୍ରତି ଏତେ ନିଷ୍ଠୁର କାହିଁକି? କଟୁରିରେ କାଠର ଛୋଟ ଛୋଟ ଛାଲି ଛଡ଼ାଇ ଚୁଲିରେ ରଖିଲା । ସେଇ ପାଖରେ ଥିବା ଝକମକି ପଥର ଆଣି ଜୋର

ଜୋର୍‌ସେ ଘଷି ଘଷି କିଛି ଲାଭ ହେଲାନି । ନିଆଁ ଗୁଲ ସବୁ ଝୁରିଝୁରି ବାଣପରି ବାହାରି ପୁଣି ଲିଭି ଯାଉଥିଲା । ତାକୁ ଭାରି ମଜା ଲାଗୁଥାଏ । କିଛି ସମୟ ସେମିତି ବସିବସି ଖେଳିଲା । ପୁଣି ମନେ ପଡ଼ିଲା ରନ୍ଧାକଥା ।

ମନେ ପଡ଼ିଗଲା ପେଡ଼ିରେ ଦିଆସିଲି ଅଛି । ଝଅଟ ଉଠି ଦିଆସିଲି ମାରି ଚୁଲିରେ ପକେଇଲା । କାଠ ଆଁଶ ଫୁର୍‌କିନା ହେଇ ଲିଭିଗଲା । କାଗଜ ଠୁଙ୍ଗାଟି ଆଣି ଯୋଉଥିରେ ଡାଲି ଗଣ୍ଡିଏ ଥିଲା, ତାକୁ ଗୋଟିଏ ପଥୁରୀ ବାସନରେ ଢାଳି ସେଇ ଠୁଙ୍ଗାରେ ନିଆଁ ଧରାଇ କାଠ କତରା ସବୁ ତା' ଉପରେ ରଖି କାଠ ଖଞ୍ଜି ଦେଲା । ଶୁଖିଲା କାଠ ନିଆଁ ଧରିଗଲା – ମା'ଙ୍କ ପରି ଚୁଲି ଛୁଇଁ ମୁଣ୍ଡରେ ମାରି ଛୋଟ ଡେକ୍‌ଚି, ହାଣ୍ଡିରେ ପାଣି ଦେଇ ଚୁଲିରେ ବସାଇଲା । ମୁଠାଏ ଡାଲି, ସୋରା ସୋରା କଟା ଆଳୁ ପିଆଜ ସବୁ ପକାଇ ଦେଲା ସେଇ ଫୁଟନ୍ତା ପାଣିରେ । କ'ଣ ମନ ହେଲା ଚାଉଳ ଦି'ମୁଠା ଧୋଇ ସେଥିରେ ପଡ଼ିଲା – କେଜାଣି କ'ଣ ହବ? ଲୁଣିଆ କି ଅଲଣା – ଆରେ ଇଏ ବାଆଜୀ ଗୋଳିଆ ଭାତ ତ । ଚାହାଳୀ ଗଲା ବେଳେ ସେମାନେ ଏଇ ବଡ଼ାଭାତ ଖାଇ ଯାଉଥିଲେ ବଡ଼ି ଭୋରରୁ । ବାକି ସେଥିରେ ଖିର, ଘିଅ ପଡୁଥିଲା – ଏବେ ପାଣି ମରିଗଲା ପରେ ସେ ସେଥିରେ ଘିଅ ପକେଇବନି କି? ଗବ ଗବ ହେଇ ପାଣି ଫୁଟୁଚି । ତା'ର କୁଆଁର ପୂନେଇ ଗୀତ ମନେ ପଡ଼ିଗଲା – 'ଭାତ ଫୁଟୁଥିବ ଟବର ଟବର ପିଛ ପଡୁଥିବ ଡେଇଁ' । ରାତି ଅନିଦ୍ରା ହେଇ ସାଙ୍ଗମାନଙ୍କ ସାଙ୍ଗରେ ଜହ୍ନିଫୁଲ କୋଠି କରି ସାରା ରାତି ଖେଳିବାର ଗୀତ । ଛାଡ଼, ବାସ୍ କାମ ସରିଗଲା – ଏବେ କ'ଣ କରିବ ଆଉ?

ସେ କବାଟ ଖୋଲି ଏପଟ ସେପଟ ଚାହୁଁଛି । ଗଛ ଉପରକୁ ଚାହୁଁଚି । ମନୁ... ମନୁ... ତୁ ମୋତେ ଏକୁଟିଆ ଛାଡ଼ି କୁଆଡେ ଗଲୁ? ମନୁକୁ କେତେ ଡାକିଲା... କେତେ ଖୋଜିଲା । ନିରାଶ ହୋଇ କବାଟ ଦେଇ ଆସିଲା । ଥରକୁ ଥର ପିଠା ପାତିଆରେ ଭାତ ଦେଖୁଚି, ହେଇନି । ପାଣି ଖାଲି ଠିଆ ହେଇଚି । ଚୁଲି ଜୋରରେ ଜଳୁଚି, ଭାତ ଫୁଟି ଫୁଟି ଉତୁରି ପଡୁଚି । ସେ ଆସି କାଠ ଦି'ଖଣ୍ଡ କାଢ଼ି ଦେଲା, ଧୀର ଜାଳରେ ଭାତ ହେଇହେଇ ଆସୁଚି । ସେ ବସିବସି ଗୋଟିକ ପରେ ଗୋଟିଏ ବହି କାଢ଼ିକାଢ଼ି ପଢୁଚି । ବେଳ ଆସି ମୁଣ୍ଡ ଉପରକୁ ହେଲାଣି । ମନୁକୁ ଚାହିଁଚାହିଁ ଏତେ ବେଳ । କେବେଠୁ ଭାତ ହେଇ ସାରିଲାଣି, ସେ ହାତ ମୁହଁ ଧୋଇଚି । ଆରଥରକୁ କମ୍ ପାଣି ଦବ । ଭାତ ବାଢ଼ି ପୁଣି କବାଟ ଖୋଲି ଚାହିଁଲା, ମନୁ ଆସୁଥିବ ପରା । କେହି କୁଆଡ଼େ ନାହିଁ । ଆସି ଥାଳି ପାଖରେ ବସି ଗୁଣ୍ଡାଟିଏ ପାଟିରେ ଦେଲା – ମନ୍ଦ ଲାଗୁନି, ଭଲ ଲାଗୁଚି । ମା' କହେ ଭାତ ସୁଆଦ ନା ଭୋକ ସୁଆଦ । ବାରମ୍ବାର ମନୁ କଥା ମନେ ପଡୁଚି । ଛୋଟ ପଥର ଗିନାରେ ମନୁ ପାଇଁ ଭାତ ବଢ଼ା ହେଇ ଥୁଆ ହେଇଚି । ମନୁ ଆସୁନି । ଥାଳି ଧୋଇ ଖଟ ଉପରେ ବସିଲା ସରଖାଇ ସୁନ୍ଦରୀ । ବସୁ ବସୁ ସେଇଠି ଢଳି ପଡ଼ିଲା, ଭାତ ନିଦ ଲାଗିଗଲା ।

କେତେବେଳ କେଜାଣି ଶୋଇ ଯାଇଥିଲା, ହଠାତ୍ ନିଦ ଭାଙ୍ଗିଗଲା । ଯାହା ହଉ ଅସରନ୍ତି ଦିନ ଏଇମିତି ସରିସରି ଯାଉ । ମନୁର ଭାତ ସେଇମିତି ବଢ଼ା ହେଇଚି । ସେ ମୁହଁ ଧୋଇ ବାହାରକୁ ଆସିଲା । ସଞ୍ଜ ନଇଁ ଆସିଲାଣି । ପକ୍ଷୀମାନେ ସବୁ ଡକା ଡକି ହେଇ ବସାକୁ ଫେରୁଚନ୍ତି । କଳରବରେ କାନ ଅତଡ଼ା ପଡୁଚି । କ୍ଷଣିକ ପାଇଁ ଏ ଗହଳି ହେଇ ପୁଣି ନିଃଶବ୍ଦ ହେଇଯିବ । ନିକାଞ୍ଚନରେ ତାକୁ

ଦିନ ପରେ ରାତି... ରାତି ପରେ ଦିନ... କଟେଇବାକୁ ପଡ଼ିବ। ସେ ଅନ୍ୟମନସ୍କ ହେଇଗଲା, ଭିତରୁ କୋହ ଉଠି ଆସୁଚି। ଆଖିରୁ ଶୁଖି ଆସିଲା ଲୁହ ଝର। ମନୁରେ... ମନୁ... ବିକଳରେ ଡାକ ପକେଇଲା। ଭାସି ଯାଉଥିବା ମଣିଷ କୁଟାଖିଅଟିକୁ ଆଶ୍ରା କଲାପରି ତାକୁ ଚମକାଇ ହଠାତ୍ ଆମ୍ବ ଡାହିରୁ କ'ଣ ଗୋଟିଏ ଭୁସ୍ କିନା ପଡ଼ିଲା। ହରଷ ବିସ୍ମୟରେ ଚାହିଁ ରହିଲା ସରଖାଇ ସୁନ୍ଦରୀ। ମନୁ ସିଆଡୁ ଗୁରୁଣ୍ଡି ଗୋଟି ଗୋଟି ଚାଲିଆସି ତା ପେଣ୍ଡାକୁ ଜାବୁଡ଼ି ଧରି ମୁଣ୍ଡ ଘଷୁଚି। ସରଖାଇ ସେଇଠି ବସିପଡ଼ି ତା ମୁହଁକୁ ଦୁଇ ହାତରେ ଟୋଳି ଧରି ଢେର୍ ଗେହ୍ଲା କଲା କାନ୍ଦି କାନ୍ଦି। କୁଆଡ଼େ ସାରାଦିନ ରହିଲୁରେ ଧନ। କ'ଣ ମତେ ଭୁଲିଗଲୁ ନା, ବାଟ ଭୁଲି ଗଲୁ? ସବୁ କଥା ବୁଝିଲା ପରି, ଦୋଷୀଟି ପରି ମନୁ ତା ମୁହଁକୁ ଜୁଳୁଜୁଳୁ ହେଇ ଚାହିଁ ରହିଲା।

ଡୋରିଆ ଓଦା ଗାମୁଛାରେ ସରଖାଇ ତା ଧୂଳି ଧୂସୁରିଆ ମୁହଁ ଦିହ ପୋଛି ପକେଇଲା। ତାକୁ ନେଇ ତା ପାଇଁ ବଢ଼ା ହେଇଥିବା ଭାତ ପାଖରେ ବସାଇ ଗୁଣ୍ଡାଏ ଖୁଆଇ ଖୁଆଇ କହିଲା, "ସକାଳୁ ଭାତ ବଢ଼ାହେଇ ଥୁଆ ହେଇଚି ତୋ' ପାଇଁ।" ମନୁ କୁଦା ମାରିମାରି ଡେଇଁଡେଇଁ ସାରା ଘର ରନ୍ଧାଳି ପକାଉଚି। ସାରାଦିନ ନ ଥିଲା ବୋଲି ଏଇନେ ଆନନ୍ଦ ପ୍ରକାଶ କରୁଚି କି କ'ଣ। ଭାତ ଦି ହାତରେ ଖାଇ ଖାଇ ତଳେ ପକଉଚି, ପୁଣି ଖୁଣ୍ଟିଖୁଣ୍ଟି ଖାଉଚି। ସରଖାଇର ଆନନ୍ଦ କହିଲେ ନ ସରେ। ଏ ଦୃଶ୍ୟ ବସି ବସି ଉପଭୋଗ କରୁଚି ସେ। ଅଗନା ଅଗନି ବନସ୍ତର ଏଇ ନିବୁଜ ପଥର ଘରେ ମଣିଷ–ପଶୁଙ୍କର ଏଇ ଦି' ଜଣିଆ ଘର ସଂସାର ଚାଲୁଥିଲା। ଅସରନ୍ତି ଦିନ ସରିସରି ଯାଉଥିଲା, ସରଖାଇର କ୍ରମେ ସବୁ ଦିହସୁହା ହୋଇଗଲା।

ଦିନେ ମନୁ କୁଆଡୁ ଗୋଟିଏ ଠୁଙ୍ଗା ନେଇ ଆସିଲା। ସେ ଖୋଲିଲା – ଚାରିଟା ବରା ଦି'ଟା ଆଳୁଚପ ଗରମ ଗରମ। "ହେ ଭଗବାନ! ଆରେ ମନୁ, କୋଉଠୁ ଆଣିଲୁ ଏସବୁ କାହାଠୁ ଛଡ଼େଇ ଆଣିଚୁନା କ'ଣ? କିଏ କୁଆଡ଼େ ନେଇ ଯାଉ ଥିଲା ବୋଧେ।" ଲୋଭ ସମ୍ଭାଳି ନପାରି ଆଳୁଚପଟିଏ ଖାଇଲା। ଅନେକ ଅନେକ ଦିନ ପରେ ଯାକୁ ଖାଇ ତାକୁ ଭାରି ଭଲ ଲାଗୁଚି। ପାଖରେ ବସି ମନୁ ମଧ ଖାଉଚି। ଏମିତି ଦିନେ ଦିନେ ମନୁ କୁଆଡ଼େ ଉଭେଇ ଯାଏ। ଚାରି ପାଞ୍ଚ ଘଣ୍ଟା ପରେ ହାତରେ କିଛି ନା କିଛି ନେଇ ଫେରେ। କୋଉ ଦିନ ମୂଳା ଦି'ଟା, କୋଉଦିନ ପାଚିଲା କଦଳୀ, କୋଉ ଦିନ ଆଳୁ ଦି'ଟା କି ବାଇଗଣ ଗୋଟେ। ସରଖାଇ ତାକୁ ରାନ୍ଧେ। "ତୁ କୋଉଠୁ କେମିତି ଆଣୁଚୁ ରେ ମନୁ? କିଏ ତତେ ବାଡ଼େଇ ପକେଇବ। ମାରି ପକେଇବ।" ତା' ଛାତି ଧଡ଼କିନା ହେଇଯାଏ। ସତେ ଯଦି ମନୁକୁ କିଏ ରଖି ପକେଇବ, ବାନ୍ଧି ପକେଇବ? ତୁ ଆଉ ଆଣିବୁନି... ଆଣିବୁନି। ଯଦି କିଛି ନ ଆଣୁ ଥାଆନ୍ତା? ସେ ରାନ୍ଧନ୍ତା କ'ଣ? କ'ଣ ଖାଆନ୍ତା? ସେ ଆଳୁ ବାଇଗଣ ତ କୋଉଦିନୁ ସରିଲାଣି, ପାଖ ଝୁମ୍ପୁଡ଼ି ବୁଦାରୁ ଝୁମ୍ପୁଡ଼ି ତୋଳି, ଭାଉଜ ଯେମିତି ଡାଲିରେ ଝୁମ୍ପୁଡ଼ି ପକେଇ କରନ୍ତି ସେମିତି କରି ତ ସେ ପୁଣି କାମ ଚଳେଇଚି। ଡାଲି ଆଉ ମୁଠାଟିଏ ଅଛି। ସରିଗଲେ? ଯାହା ହବ ତେଣିକି ଦେଖାଅଛି।

ଯେଉଁ ଦିନ ମନୁକୁ ଭାରି ଆଘାତ ହୋଇଥିଲା, ସେହି ଦିନୁ ତାକୁ ଜାବତାରେ ରଖିଚି। ଲଙ୍କା ମରିଚିଆ ଖିର ମଡ଼େଇ, ଉଷୁମ ତେଲ ଦେଇ, ବହୁ ଯତ୍ନ ତା'ର କରିଚି। ଘା ଶୁଖି ଗଲାଣି, ଏତେ ବଡ଼ ଚିହ୍ନଟା ବି ଛପିଛପି ଆସିଲାଣି ରୁମ ଭିତରେ। ସେଦିନ ଆସିଲା ବେଳେ ସେ ବଡ଼ି ପରା

ହେଇଥିବା କନାଟେ ନେଇ ପକେଇ ଆସିଥିଲା – ତାକୁଇ ଗୋଟିଏ ଗୋଟିଏ କରି ଚକେଇଚି ସେ। ଥରେ ମେଞ୍ଚାଏ କଞ୍ଚା ଲଙ୍କା ଆଣିଥିଲା। ସେଥିରୁ ପାଚିଲା ଲଙ୍କା ଚାରିଟା ଆଣି କଟୁରିରେ ମାଟି ଖୋଳି ଗୋଟିଏ କିଆରି ପରି କରି ଲଙ୍କା ମଞ୍ଜି ବୁଣି ଦେଇଥିଲା। ବଡ଼ ଯତ୍ନରେ ପାଣି ଦେଇ ଦେଇ ସେ ଗଛ ସବୁ ଏବେ କଅଁଳ ଛନଛନ। ଏଡ଼େ ଏଡ଼େ ହେଇ ଫୁଲ କଷି ଧରିଲାଣି। ସେଥିରୁ ଲଙ୍କା ତୋଳି ଗୋଟେ ଦି'ଟା ଖାଇଲାଣି ସେ। ବଣମଲ୍ଲୀ ବୁଦା ପାଖରେ ପୋଇ ଡଙ୍କେଇଲାଣି।

କେତେ ଦିନ ତଳେ ଏ ବନସ୍ତ ଭିତରେ ଗୋଟିଏ ମଣିଷ ସେ ଦେଖିବାକୁ ପାଇଲା – ଗୋଟିଏ କନ୍ଦର୍ପ ସୁନ୍ଦର ଯୁବା ପୁରୁଷ ଘୋଡ଼ାରେ ଚଢ଼ି ଏଇ ବାଟ ଦେଇ ଆସୁଥିଲା। ମନୁର ଖିଁ ଖିଁ ଶୁଣି ସେ ଆସି ଜାଲିରେ ଚାହିଁଲା। ମନୁ ଏ ଡାଳକୁ ସେ ଡାଳ ଡେଇଁ ଖିଁ ଖିଁ ହେଉଚି। ତଳକୁ ଚାହିଁ ସରଖାଇ ସୁନ୍ଦରୀ ସ୍ଥାଣୁ ପରି ରହିଗଲା, ଏ ରାଜକୁମାର ହେବ ପରା! ପୁଅଟି ଚାରିଆଡ଼କୁ ବୁଲି ବୁଲି ଚାହୁଁଚି। ତା ପରେ ପଥର କାନ୍ଥ ଆର ପାଖରେ ଘୋଡ଼ାରୁ ଓହ୍ଲାଇ ସେ କିଛି ସମୟ ରହିଲା। ତାକୁ ଆଉ କିଛି କାନ୍ଥ ଆଢୁଆଳରୁ ଦେଖାଗଲାନି। ପରେ ପୁଅଟି ଘୋଡ଼ାରେ ଚଢ଼ି ବାଟେ ବାଟେ ଜଙ୍ଗଲ ଭିତରକୁ ପଶିଗଲା, ମନୁ ଗଛରେ ଗଛରେ ତା' ପଛେ ପଛେ ଗଲା। ତା' ପରେ ସେ ଆଉ କିଛି ଦେଖି ପାରିଲାନି। ଜେଜେ ମା କାହାଣୀର ରାଜକୁମାର ପରି ସେ କୁଆଡ଼େ ଆଖି ଆଗରୁ ଅନ୍ତର୍ଧ୍ୟାନ ହେଇଗଲା ମୁହୂର୍ତ୍ତକ ମଧ୍ୟରେ। ମାତ୍ର ଘୋଡ଼ା ଟାପୁର ଶବ୍ଦ ତାକୁ ବହୁତ ସମୟ ଯାଏ ଶୁଣା ଯାଉଥିଲା। ସେ କବାଟ ଖୋଲି ବାହାରକୁ ଆସିଲା। ଘୋଡ଼ା ଯିବା ବାଟକୁ କିଛି ସମୟ ଚାହିଁଲା। ଏବେ ବି କିଛି ଧୂଳି ଉଡୁଚି। ସେ ଘର ଭିତରକୁ ଫେରି ଆସିଲା। ଆଜି ମନରେ ତା'ର ସ୍ୱପ୍ନ – ଜେଜେମା କାହାଣୀର ସେଇ ରାଜକୁମାର ପରି ଏଇ କୁମାର ତାକୁ ପଥର ଘରୁ ମୁକୁଳେଇବ କି? ମୁକ୍ତି ଦେବ କି? ଦେବ କି?

ସବୁଦିନ ପରି ସକାଳ ପାଇଲା। ସବୁ କାମ ସାରି ରାନ୍ଧି ବସିଲା ସରଖାଇ ସୁନ୍ଦରୀ। କ'ଣ ରାନ୍ଧିବ? ଭାତ ସଙ୍ଗେ ଖାଇବାକୁ ଆଜି ତ କିଛି ନାହିଁ। ମୁହଁରେ ହାତ ଭରା ଦେଇ ବସି ଭାବୁଚି। ମନୁ ସେଇ କାନ୍ଥ କଡ଼ର ଖଡ଼ା ଗଛଟି ଉପାଡ଼ି ମୋଡ଼ିମୋଡ଼ି ଆଣି ତା ପାଖରେ ପକେଇଦେଲା। ସରଖାଇ କହିଲା, "ମନୁ ତୁ ମାଡ଼ ଖାଇବୁ। ଆହା ଏତେ ସୁନ୍ଦର କଅଁଳ ଛନ୍ନ ଛନ୍ନ ଖଡ଼ାଟି ତୁ କାହିଁକି ଉପାଡ଼ି ଦେଲୁ ଭଲା?" ମନୁ ଖିଁ ଖିଁ ହେଇ ଖତେଇ ହଉଚି। କ'ଣ କରିବ ଆଉ ସରଖାଇ? କାଟି କୁଟି ଘିଅ ଟିକିଏ ପକାଇ ସୁନ୍ଦର କରି ଖରଡ଼ିଲା। କାଲିର ଭାତ ପଖାଳ ଥିଲା। ମନୁକୁ ଯେତେ ଯାଚିଲେ ଖାଇଲା ନି। ବସିକରି ସେ ପରମ ସନ୍ତୋଷରେ ଖାଇଦେଲା ସବୁ। ବଣର ଶାଗ ଟିକକ କେଡ଼େ ସୁଆଦ ଲାଗୁଚି!

କେତେ ଦିନ ହେଲାଣି ଦିହଟା କାହିଁକି ଜମାରୁ ଭଲ ଲାଗୁନି। ମୁଣ୍ଡ ବୁଲେଇ ଦେଉଚି। ଉଠିଲା ବେଳକୁ ପଡ଼ିଯିବ ମନେ ହଉଚି। ବାନ୍ତି ବାନ୍ତି ଲାଗୁଚି। କିଛି ମନ ହେଉନି ଖାଇବାକୁ। ଶୋଇଲେ ଉଠିବାକୁ ମନ ହଉ ନ ଥିଲା – ଏବେ ଟିକିଏ ଭଲ ଲାଗିଲାଣି। ସତେ ଏ ପଶୁ ଜନ୍ତୁଟି ତା ଦେହ ଭଲ ନାହିଁ ବୋଲି ପାଖରେ ପାଖରେ ବସିଥାଏ। ବହୁତ କମ ସମୟ ପାଇଁ ବାହାରକୁ ଯାଇ ଖଟା କମଳା, କରମଙ୍ଗା କୋଉଠୁ ଆଣୁଥିଲା। ସେ ବୁଝିପାରୁନି ତା' ଦେହ ହଠାତ୍ କ'ଣ ଏମିତି ହେଲା। ହଁ, ସେଇ ଖଡ଼ା ଶାଗଟା ଖାଇଲା ଦିନରୁ ତା' ଦିହ ଏମିତି ଖରାପ ହେଇଚି। ସେ

ଏପଟ ସେପଟ ବହୁତ ଭାବିଲା । ତା'ର ମନେ ପଡୁଚି ଭାଉଜର ଯେବେ ଛୁଆ ପିଲା ହେବାର ଥିଲା, ପ୍ରଥମେ ପ୍ରଥମେ ସେ ଏମିତି ହେଉଥିଲା । ତା' ଛାତି ଛମ କିନା ହେଇଗଲା । ସେ କାଠ ପିତୁଳା ପରି ସେଇମିତି ବସି ରହିଲା – ସେ ପୁଣି ଭାବିଲା ତା'ର ତ ବାହାଘର ହେଇନାହିଁ । ଆର ସାଇ ବଡ଼ ମାଆଙ୍କ ପରି ତା' ପେଟରେ ନିଶ୍ଚୟ କିଛି ରୋଗ ହେଲାଣି । ସେ କିଛି କୂଳ କିନାରା ପାଇଲାନି ।

ଏତିକି ବେଳେ ମନୁ କୁଆଡୁ ଓଦା ସର ସର ଗୋଟାଏ ପାଟ ଶାଢ଼ୀ ସାଙ୍ଗରେ ଦିଇଟା ତିନିଟା ବ୍ଲାଉଜ ଆଣି ଫୋପାଡି ଦେଲା ତା' ଆଗରେ । ସବୁ ଲୋଚା କୋଚା... ବିଣ୍ଡା ବିଣ୍ଡା । ସରଖାଇ ଚମକି ପଡ଼ିଲା । ତା'ର ମନେ ନାଇଁ ଦୁଆର ମୁକୁଳା କରି ଦେଇଚି । ଏ ସବୁ ଦେଖି ସେ ଆଶ୍ଚର୍ଯ୍ୟ ହେଇଗଲା – ଏତେ ଦାମିକା ଜିନିଷ ସେ କୋଉଠୁ ନେଇ ଆସିଚି? ହେ ଭଗବାନ, ମୁଁ କଅଣ କରିବି? ସେ କ'ଣ କରନ୍ତା ଆଉ? ମନୁ କ'ଣ କଥା କହୁଚି ଯେ କହିବ । ମନୁକୁ ସେ ବହୁତ ରାଗିଲା । କେତେ କଣ କହିଲା, ତା' କାନ ଧରି ମୋଡ଼ିଲା । ଧୀର କରି ଚାପୁଡ଼ା ମାରିଲା । ମନୁ ଖାଲି ଏପଟ ସେପଟ ଡେଇଁଡେଇଁ, ଭୂଇଁରେ ଗଡ଼ିଗଡ଼ି, 'ଖାଉ' 'ଖାଉ' ଚିଁ ଚିଁ ହେଇହେଇ କଅଣ ସବୁ କହୁଚି ତାକୁ ହିଁ ଜଣା ।

ସରଖାଇ ଏଥର ଉଠିଲା, ଶାଢ଼ୀ ଶୁଖେଇଲା । ବ୍ଲାଉଜରେ ତା'ରି ପରି ଦି'ଟା ମଣିଷ ଧରିଯିବେ । ଏମିତି ଦିନେ ଛାଡ଼ି ଚାରି ଆଠ ଦିନ ଛାଡ଼ି କିଛି ନା କିଛି ମନୁ ଆଣୁଥିଲା । ଧୋବ ଫର ଫର ଫୁଲ ପକା ତକିଆ ଖୋଳ, ଗାମୁଛା, କନା, ସୁନା ଜରିଦିଆ ରାଜପୋଷାକ ପରି ପୋଷାକ ସବୁ, ଏମିତି କେତେ କ'ଣ । ସବୁ ସଜାଡ଼ି ଗଣ୍ଠିଲି ବାନ୍ଧି ସେ ପଥର ମେଜ ଉପରେ ରଖି ଦେଇଚି । ଯେତେ ଯାହା କହିଲେ ମନୁକୁ, ସେ ବୁଝି ପାରୁନି । କିନ୍ତୁ ସରଖାଇ ବୁଝି ସାରିଲାଣି ତା' ବିପଦର ଦିନ ଘନେଇ ଆସୁଛି ।

ଏବେ ସରଖାଇ ଅନୁଭବ କରୁଚି ତା' ପେଟରେ କ'ଣ ଗୋଟିଏ ଛୁଟ୍ ଛୁଟ୍ କରୁଚି । ତାକୁ ବୁଝିବାକୁ ବାକି ରହିଲାନି ଯେ ସେ ମାଆ ହେବାକୁ ଯାଉଚି । ସେ ଭାରି ଡରିଗଲା... । ଭାରି ଡରି ଗଲା । କ'ଣ କରିବ ତାକୁ କିଛି ବୁଦ୍ଧିବାଟ ଦେଖାଯାଉନି । ତା ପେଟ ଧୀରେ ଧୀରେ ବଡ଼ ହଉଚି ।

ସିଆଡେ କ'ଣ ହେଇଚି ନା ରାଜପ୍ରାସାଦରେ ହୁରି ପଡ଼ିଗଲାଣି । କୁଆଡୁ ଗୋଟାଏ ମାଙ୍କଡ଼ ଆସି ରାଜପୁର ଉଜାଡୁଚି । ଅଦଉତ କରୁଚି । ପ୍ରଥମେ ପ୍ରଥମେ ଅଳପ ଅଳପରେ କିଛି ଜଣା ପଡୁ ନ ଥିଲା । ଏବେ ଏବେ ବେଶି ପ୍ରମାଦ କରୁଚି । ସେବେ ଧୋବାତୁଠରେ ହେଉଥିଲା । ଏବେ ରାଜପ୍ରାସାଦ ଭିତରେ ।

ଆହୁରି ଗୋଟିଏ କଥାରେ ବୁଢ଼ା ରାଜା ରାଣୀ ଭାରି ଚିନ୍ତିତ । ମୁଣ୍ଡରୁ ହାତ ବାହାରିବାକୁ ନାହିଁ । ଯୋଗ୍ୟ ପୁଅ ହାତରେ ରାଜ୍ୟଭାର ସମର୍ପି ଦେଇ ଆରାମରେ ଠାକୁର ସେବା ତୀର୍ଥ ବ୍ରତ ପାଇଁ ମନସ୍ଥ କରିଥିଲେ । ଏଥିପାଇଁ ପୁଅର ବିଭାଲାଗି ଆଗ୍ରହୀ ହୋଇ ରାଜ ପୁରୋହିତ ଖଡ଼ିରତ୍ନଙ୍କ ପାଖରେ ପୁଅର କୋଷ୍ଠି ଦେଖାଇଲେ । ମାତ୍ର ଖଡିରତ୍ନ ଇଏ କ'ଣ କହୁଛନ୍ତି? ପୁଅ ଯେ ବାପ ବନିବାକୁ ବସିଲାଣି! ଖଡିରତ୍ନଙ୍କ କଥା ଟଳିବାର ନୁହେଁ । ସେ ଯେଉଁ ଗାରକ କାଟି ଦେବେ ତାକୁ ବ୍ରହ୍ମା ମଧ୍ୟ ଭୁଲ୍ କରି ପରିବେନି । ଖଡିରତ୍ନ ବାରମ୍ବାର ଜାତକ ଗଣନା କଲେ । ସେଇ ଏକା କଥା ।

ପ୍ରମୋଦ ଉଦ୍ୟାନରେ ମାଳତୀ ଝୁଲାରେ ଝୁଲି ଝୁଲି ଛୁଆ ରାଜା ସେଇ କଥା ଚିନ୍ତା କରୁଚନ୍ତି ।

ମାଙ୍କଡ଼ଟିଏ କେତେବେଳେ ଆସି ତାଙ୍କ ପଛ ପାଖରେ ବସି, ପିଠିକୁ ଧୀରେ ଧୀରେ ରାମ୍ପୁଡୁଛି । ସେ ଚମକି ଚାହିଁଲେ, ମାଙ୍କଡ଼ଟା ଡେଇଁ ପଡ଼ି ମୁଣ୍ଡିଆ ମାରିଲା ପରି ତାଙ୍କ ପାଦରେ ମଥା ରଖି ଏପଟ ସେପଟ କରୁଚି । ସେ ସ୍ଥିର ଭାବରେ ତାକୁ କିଛି ସମୟ ଚାହିଁଲେ – ଏଇ ସେଇ ଚାଲାକ ମାଙ୍କଡ଼ ତା ହେଲେ, ଯିଏ କୌଣସି ପ୍ରକାର ମଧ୍ୟ ଧରା ପଡୁନି । ଫାଶରେ ମଧ୍ୟ । ମାଙ୍କଡ଼ ତାଙ୍କ ପୋଷାକ ଟାଣି ଆଗକୁ ଆଗକୁ ଯାଉଚି । ପୁଣି ଫେରି ଆସୁଚି । ସେ ଭାବିଲେ ମାଙ୍କଡ଼ ବୋଧହୁଏ କିଛି ଦେଖାଇବାକୁ ଚାହୁଁଚି । ସେ ବିରକ୍ତ ହେଲେନି । ତା ମଥା ଶାଉଁଳେଇ କହିଲେ, କ'ଣ କ'ଣ, କ'ଣ କହୁଚୁ? ମାଙ୍କଡ଼ ତାଙ୍କ ପୋଷାକ ଟାଣି ଆଗକୁ ଡେଇଁ ଡେଇଁ ଗଲା, ଏଥର ସେ ତା ପଛେ ପଛେ । ଟିକିଏ ପାଖରେ ତାଙ୍କ ଘୋଡ଼ା ଚରୁଥିଲା, ମାଙ୍କଡ଼ ଘୋଡ଼ା ପିଠି ଉପରକୁ ଡେଇଁ ବସିଗଲା । ରାଜକୁମାର ଆଶ୍ଚର୍ଯ୍ୟ ହେଲେ । ଘୋଡ଼ା ଆଗ ଗୋଡ଼ ଟେକି ତାକୁ ତଳକୁ ପକେଇ ଦେବାର ଚେଷ୍ଟା କଲାନି, ବରଂ ଚାମର ଢାଳିଲା ପରି ଲାଞ୍ଜକୁ ଏପଟ ସେପଟ କରି ହର୍ଷତା ପ୍ରକାଶ କଲା । ତା' ହେଲେ ୟା'ର ୟା ସହିତ ଆଗରୁ ସମ୍ପର୍କ ଅଛି । ଭାବ ହେଇଯାଇଚି ।

ସେ ଯାଇ ଘୋଡ଼ା ଉପରେ ବସିଲେ । ମାଙ୍କଡ଼ ତାଙ୍କ କୋଳରେ । କେତେ ବାଟ ଆସି ଗଲେଣି ଜଙ୍ଗଲେ ଜଙ୍ଗଲେ । ବାଟରେ ଯଦି ଘୋଡ଼ା ତାଙ୍କର ଅଲଗା ବାଟରେ ଚାଲି ଯାଉଥିଲା ତେବେ ସେ କଉତୁକିଆ ମାଙ୍କଡ଼ ଘୋଡ଼ା ଉପରୁ କୁଦି ପଡ଼ି ପ୍ରକୃତ ରାସ୍ତାରେ ଡେଇଁ ଡେଇଁ ଆଗରେ ଆଗରେ ଚାଲୁଥିଲା । ରାଜାପୁଅ ସେଇ ବାଟେ ବାଟେ ଘୋଡ଼ା ଚଳଉଥିଲେ । ଅନେକ ସମୟ ପରେ ଏବେ ତାଙ୍କୁ ଏଇ ବାଟଟା ଯେମିତି ଦୋ ଦୋ ଚିହ୍ନା ଲାଗୁଚି । ଫୁଲର ମହକ ଆଗରୁ ଯେମିତି କେବେ ପାଇଚନ୍ତି । ଦୂରରୁ ତାଙ୍କୁ ସେଇ ପଥର ଘର ଦେଖାଗଲା, ତାଙ୍କୁ ଚିହ୍ନା ଲାଗିଲା । ପଥର ଘର ପାଖରେ ସେ ଘୋଡ଼ାରୁ ଓହ୍ଲାରିଲେ । ଚାରିଆଡ଼କୁ ଚାହିଁଲେ ସେଇ ପରିବେଶ, ଏଇ କାନ୍ଥ ପାଖରେ ଗୋଟାଏ କଅଁଳ ଛନ ଛନ ଖଡ଼ା ଗଛ ଥିଲା । ତାଙ୍କର ଠିକ୍ ମନେ ପଡୁଚି । କୌତୁକରେ ସେ ସେଇଠି ତୁତୁ କରିଥିଲେ । ଏଇ ଫୁଲ ଗଛ, ଏଇ ବେଲ ଗଛ ଏଇଠି ଥିଲା ।

ମନୁ ସେତେବେଳକୁ ସେଇ ପଥର ଘର କବାଟକୁ ଖିଁ ଖିଁ ହେଇ ରାମ୍ପି ବିଦାରି ପକଉଚି । ରହରହ ତତେ ଦଉଚି କହିକହି, ସୁନା ଜରିଦିଆ ମାଆଙ୍କର ଜହ୍ନିଫୁଲିଆ ଶାଢ଼ୀ ପିନ୍ଧି, ଯେଉଁ ଲବଣୀ ପିତୁଳା ଲାବଣ୍ୟବତୀଟି କବାଟ ଖୋଲିଲା ତାକୁ ଦେଖି ରାଜକୁମାର ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ । ତାଳୁରୁ ତଳିପା ଯାଏ ଚାହୁଁଚନ୍ତି ତ ଚାହୁଁଚନ୍ତି । ମନୁ ତା'ର ଜାଲି କାନ୍ଥ କଡ଼ରେ ବସି ଆପଣା ମନେ ଗୋଟାଏ ପିଜୁଳି କୋଉଠୁ ଆଣି ଚୋବାଉଚି ।

ସରଖାଇ ଡରିଗଲାଣି ସେ ଯୋଉ ଶାଢ଼ୀ ପିନ୍ଧିଚି ଆଉ ଯୋଉ ପୋଷାକ ସବୁ ମନୁ ଆଣିଚି, ସେଥିପାଇଁ ସେ ତ ଦାୟୀ ନୁହଁ । ମନୁ ଆଜି କଣ ମନେ କରି ସବୁ ପୁରୁଣା ଶାଢ଼ୀ ତା'ର ଫାଳ ଫାଳ କରି ଶୋରା ଶୋରା କରି ଚିରି ପକେଇଚି । ସେଥିପାଇଁ ଏ ଶାଢ଼ୀ ଖଣ୍ଡିକ ପିନ୍ଧିବାକୁ ସେ ବାଧ୍ୟ ହେଇଚି । ସେଥିପାଇଁ ଲଜ୍ୟା, ଅପମାନରେ ସେ ତାଙ୍କ ପାଦତଳେ ପଡ଼ି କାନ୍ଦି କାନ୍ଦି କହିଲା, "ମୁଁ ଏ ସବୁ ଚୋରି କରି ନାହିଁ ଆଜ୍ଞା – ମୁଁ... ମୁଁ... ।" ସେ ଆଉ କିଛି କହି ପାରୁ ନାହିଁ । ତା' କଣ୍ଠ ରୁଦ୍ଧି ହେଇଗଲା । ରାଜକୁମାର ଆତ୍ମବିସ୍ମୃତ ହେଇ ଯାଇଥିଲେ । ତାକୁ ତଳୁ ଉଠଉ ଉଠଉ କହିଲେ, "ହଉ ହଉ ଉଠ, ମୁଁ ଜାଣେ ତମେ ଚୋରି କରି ନାହଁ । ମତେ କ'ଣ ଘର ଭିତରକୁ ଡାକିବନି?"

ସରଖାଇ ଏଥର ଭରସା ପାଇଲା, ସେ ଉଠି ଆଡ଼ ହୋଇଗଲା ଟିକିଏ । ରାଜକୁମାର ଘର ଭିତରକୁ ଆସି ମନକୁ ମନ ଖଟ ଉପରେ ବସିଲେ । ସରଖାଇ ଏ ପର୍ଯ୍ୟନ୍ତ ତାଙ୍କ ମୁହଁକୁ ଚାହିଁ ନାହିଁ । ସେ ମୁହଁ ଉଠେଇ ଚାହିଁ ମୁହଁକୁ ତଳକୁ କରିଦେଲା । ସେ ତାକୁ ଏକ ଲୟରେ ଚାହିଁ ରହିଛନ୍ତି । ତା ମୁହଁ ପାଟଳ ବର୍ଣ୍ଣ ହେଇଗଲା । ତାଙ୍କୁ କୋଉଠି ଦେଖିଚି? ମନେ ପଡ଼ିଲା, ଆରେ ସେ ଜାଲି କାନ୍ଥ ଦେଇ ଏ ଯୁବା ପୁରୁଷଙ୍କୁ ଘୋଡ଼ାରେ ଚଢ଼ି ଆସିବାର ଦେଖିଥିଲା । ଆଉ କିଛି ସମୟ ପାଇଁ ସେ ହୁଏତ ଏଇଠି ଓହ୍ଲେଇ ଥିଲେ । କାନ୍ଥ ଆଡୁଆଳରେ ସେ ଆଉ କିଛି ଦେଖି ପାରି ନ ଥିଲା, ଖାଲି ଘୋଡ଼ାର ଟାପୁ ଶବ୍ଦ ଶୁଣିଥିଲା । ଘୋଡ଼ାରେ ଚଢ଼ି ଚାଲି ଯାଉଥିବା ବେଳେ ପଛରୁ ଟିକିଏ ଦେଖି ଥିଲା ଯାହା । ସେ ତ ଆଜିକୁ ବହୁତ ଦିନର କଥା ହେଲାଣି । ପ୍ରାୟ ୫/୬ ମାସ ତଳର କଥା ହେବ । ତା' ପରଦିନ ଘର ପାଖ ଶାଗ ଖାଇ ତା ଦେହ ଖରାପ ହେଲା, ବାନ୍ତି ହେଲା । ଖାଇବାକୁ ଇଚ୍ଛା ହେଲାନି । ଆଉ ଏବେ? ନିମିଷକ ମଧ୍ୟରେ ଏକଥା ସବୁ ବିଜୁଳି ପରି ତା ମନରେ ଝଟକି ଗଲା । ଏତେବେଳ ଯାଏ ସେ ଅନ୍ୟମନସ୍କ ଭାବରେ ରହିଯାଇଥିଲା । ରାଜକୁମାରଙ୍କର ପ୍ରସନ୍ନ ବଦନ, ଶୀତଳ ଚାହାଣୀ, ଆଉ ମଧୁର ହସ ତାକୁ ଅନେକ ନିର୍ଭର ପ୍ରତିଶ୍ରୁତି ଦେଉଥିଲା ।

ତା ପରର କାହାଣୀ ଅତ୍ୟନ୍ତ ସଂକ୍ଷିପ୍ତ । ମୁଁ ପଛରୁ ଦେଖିଲି ଧୂଳି ଉଡ଼େଇ ଘୋଡ଼ା ଛୁଟିଚି । ରାଜକୁମାରଙ୍କ ଆଗରେ ସରଖାଇ, ପଛରେ ମନୁ । ହୁଏତ ରାଜକୁମାର ଅନେକ ପ୍ରଶ୍ନ ପଚାରିଥିବେ । ପଥର ଘରର ଦରଜା ଆଉଜା ଥିଲା । ସେ ଘରେ ଯାହା ଯୋଉଠି ଯେମିତି ଥିଲା, ସେମିତି ଥିଲା – ମନୁ ଚୋରେଇ ଆଣିଥିବା ଶାଢ଼ୀ, ପୋଷାକ ପୁଟୁଳି ପଥର ମେଜ ଉପରେ ରଖାଥିଲା । ମନୁ ସୋରା ସୋରା କରି ଚିରି ଦେଇଥିବା ପୁରୁଣା ଶାଢ଼ୀ ସବୁ କାନ୍ଥ ପାଖରେ ଗୋଟାଏ ପାଖକୁ ଗଦା ହେଇଥିଲା । କିନ୍ତୁ ସରଖାଇ କେବଳ ପୂଜା କରୁଥିବା ମା'ଙ୍କ ଫଟୋଟି ଧରିଥିଲା । ସେଥିରେ ଗଙ୍ଗଶିଉଳି ମାଳଟି ଲାଗିଥିଲା । ପରେ ଶୁଣିଲି, ରାଜ ନଅରରେ କୁଆଡ଼େ ବଡ଼ ଆଡ଼ମ୍ବରରେ ସ୍ୱାଗତ ସମ୍ବର୍ଦ୍ଧନା କରାଯାଇଥିଲା ବରବଧୂଙ୍କର । ରାଜ୍ୟରେ ଧୂମ୍ ଭୋଜି ଭାତ ହେଇଥିଲା, ଉତ୍ସବ ପାଳନ ହେଇଥିଲା । ମନୁ କୁଆଡ଼େ ରତ୍ନହାର ଗଳାରେ ଲମ୍ବାଇ ସବୁ ଘରେ ଅତିଥି ହେଉଥିବାର ଲୋକେ କହୁଥିଲେ । ମନୁର ଭାଉ ବହୁତ ବଢ଼ି ଯାଇଥିଲା ।

ଅନେକ ବର୍ଷ ପରେ ଥରେ ମୁଁ ସେଇ ରାଜ୍ୟ ଦେଇ ଫେରୁଥିବା ବେଳେ ଦେଖିଲି ରାଜ ଦରବାରର ସମ୍ମୁଖ ଭାଗରେ ଗୋଟିଏ ପ୍ରବାଳ ସ୍ତମ୍ଭ ଉପରେ, ରତ୍ନ ଖଚିତ ଗୋଟିଏ ସୁବର୍ଣ୍ଣ ପଞ୍ଜୁରୀ ଭିତରେ ଗଳାରେ ରତ୍ନହାର ଝୁଲାଇ ଥିବା ମାଙ୍କଡ଼ର ପ୍ରତିମୂର୍ତ୍ତିଟିଏ ରହିଚି । ତା ପାଖରେ ରାଜା ରାଣୀ ଦି' ଜଣ ଠିଆ ହୋଇଥିଲେ । ତାଙ୍କ ଆଖି ଛଳ ଛଳ ଥିଲା କି ନାହିଁ ମୋତେ ଦେଖାଯାଉ ନ ଥିଲେ ମଧ୍ୟ ଲାଗୁଥିଲା । ରାଜାରାଣୀ ଦୁହିଁଙ୍କର କେଶ ସବୁ ଅଧାରୁ ବେଶି ଭାଗ ରୁପାରଙ୍ଗ ଧରି ସାରିଥିଲା । ରାଣୀଙ୍କ କୋଳରେ ଛୋଟ ପୁଅଟିଏ ପଞ୍ଜୁରୀ ଧରିବାକୁ ଚେଷ୍ଟା କରୁଥିଲା । ନାତି ହେବ ପରା ! ଚିହ୍ନା ଚିହ୍ନା ଲାଗିବାରୁ ମୁଁ ରାଣୀଙ୍କ ମୁହଁକୁ ନିରେଖି ଚାହିଁଲି । ଆରେ ଆରେ, ଇଏତ ମୋର ସେଇ ସରଖାଇ ସୁନ୍ଦରୀ...!



# ହୋ ହୋ ହୋ – ମୁଁ ତତେ ବାହାହୋ

ବହୁ ଦିନ ତଳର କଥା – ବହୁତ ପୁରାତନ କାହାଣୀ। ଅନେକ ଅନେକ ବର୍ଷ ତଳେ ଗୋଟିଏ ରାଜ୍ୟରେ ଜଣେ ରାଜାଥିଲେ। ତାଙ୍କର ଦୁଇ ରାଣୀ, ଏଇଟା କୋଉ ନୂଆ କଥା ଯେ! ବଡ଼ରାଣୀଙ୍କୁ ସାନରାଣୀ ଦି ଆଖିରେ ଦେଖିପାରେ ନାହିଁ। ସୁରୁଚି-ସୁନୀତି କଥା କିଏ ଅବା ନ ଜାଣେ! ଧ୍ରୁବ-ଉତ୍ତମଙ୍କ କଥା ଚରିତ ଏବେ ମଧ୍ୟ ପୁରାଣ ଶାସ୍ତ୍ରମାନଙ୍କରେ ଲିପିବଦ୍ଧ ହୋଇ ରହିଚି। ସେମିତି, ଶୁଣିବା କଥା, ବଡ଼ରାଣୀକୁ ସାନରାଣୀ ଦରିଆ ପାରି କରି ଦେବାକୁ ଚାହିଁଥିଲା ହେଲେ ପୁଣି ମତ ପରିବର୍ତ୍ତନ କଲା। ଏତେ ଦୂରରେ ରହିଲେ କୁଆଡ଼େ ମରିଯିବ କି ହଜିବ କିଏ ଜାଣିବ? ଆଖି ଆଗରେ ରହିଲେ, ଦି ଆଖିରେ ତା'ର ଦୁଃଖ ଦେଖିଲେ ସିନା ରାଗ ମରିବ। ମନ ଶୀତଳ ହେବ। ସେଥିପାଇଁ ସେ ଉଆସ ବାହାରେ, ଚାକର ବାକରଙ୍କ ଘରଠାରୁ ଆହୁରି ଦୂରରେ, ଅପନ୍ତରାରେ ଜଙ୍ଗଲ ପାଖିଆ ପାଖି ଏକଣା ମୁଣ୍ଡରେ, ଯେଉଁ ଏକୁଟିଆ ଘରଟା, ସେଇଠି ସେ ମା ଝିଅଙ୍କୁ ରଖେଇଥିଲା।

ଖାଇବାକୁ ମାସକୁ ପୌଟିଏ ବଗଡ଼ା ଧାନ, ପା' ବୋଡ଼ି ଗୋଟା କୋଳଥ, ଆଉ ଦିଓଳି ପାଇଁ ଦି ବିଡ଼ା କଳମ ଶାଗ। ତେଲ ଲୁଣ ସେଇ ଧାନରୁ। ମାସକୁ ଥରେ ସାନରାଣୀ ନିଜେ ନେଇ ନାନା ପ୍ରକାର ଟାହି ଟାପରା କରି ବଡ଼ରାଣୀକୁ ସମର୍ପି ଦେଇ ଆସୁଥିଲା। ବିଚାରୀ ବଡ଼ରାଣୀଟି ମୁହଁ ତଳକୁ କରି କର୍ମ ଆଦରି ସବୁ ସହି ଯାଉଥିଲା। ଘର ବୋଲି କଣେ। ବାହାରେ ବରଡ଼ା ଘେରା ହାଣ୍ଡିଶାଳ, ଗୋଟେ କରକୁ ଢିଙ୍କି ପଡ଼ିଚି। ତାକୁ ତେଣୁ ହାଣ୍ଡିଶାଳ, ଢିଙ୍କିଶାଳ ଯାହା କହୁଚ କୁହ। ଏପାଖେ ଗୋଟିଏ ଦୋ ପଖା ଚୁଲି ବଡ଼ରାଣୀ ନିଜେ ହାତରେ ପାରିଛି। ରାନ୍ଧିବାକୁ ମାଟି ତିଆରି ଆଟିକା। ଘୋଡ଼େଇବାକୁ ଗୋଟିଏ ଚଟକା ପଲମ। କଡ଼େଇ ତାଉଆ ଯାହା ଗୋଟେ ଗାଡୁଆ ପଲମ। ଲୁହାର ଖୁରୁସୁଣି, ନଡ଼ିଆ ସଢ଼େଇର ଦୁଇଟି ଡଙ୍କା। ଗୋଟିଏ ବଡ଼, ଗୋଟିଏ ଛୋଟ। ଖାଇବା ବାସନ ନାଁରେ ଖଲି ଚଉପତି। ଜଙ୍ଗଲରୁ ପତର ଆଣି ନିଜେ ସିଅଁନ୍ତି। ଢିଙ୍କି ପାଖ କାନ୍ଥରେ କିଳା ବାଡ଼ିଆ ହୋଇ ଟଙ୍ଗା ହେଇଚି ଗୋଟାଏ ବଡ଼ ମାଟି ହାଣ୍ଡି ଆଉ ଖଡ଼ିକା। ତା ପାଖକୁ ଗୋଟାଏ କୁଲା।

ନିଜେ ଧାନ ଶୁଖେଇ, ଢିଙ୍କିରେ କୁଟି, କୁଲାରେ ପାଛୁଡ଼ି ଚାଉଳ ବାହାର କରି, ଭାତ ଖାଆନ୍ତି ମାଆ ଝିଅ। ସାଥିରେ କୋଳଥ ଭାଜି, କାଣ୍ଡି ଡାଲି କରନ୍ତି। ବଣକୁ କାଠ ପତର ଆଣି ଗଲେ ବେଳେ ବେଳେ ଦେଶୀ ଆଳୁ ଖଣ୍ଡେ ଅଧେ, ଓଲୁଅ କି ନିରବା ମିଳିଯାଏ। କେବେ କେବେ କଲରା, କୁନ୍ଦୁରୀ କି ମଟକା ମିଳିଗଲେ ଝିଅଟି ଭାରି ଖୁସିହୁଏ। କଣ୍ଟେଇ କୋଳି ଦିନରେ କଣ୍ଟେଇ କୋଳି ଚଟଣୀରେ ତା'ର ଭାରି ଶରଧା। ମାଆ ଝିଅ ଏମିତି ଦୁଃଖରେ ସୁଖ ମଣି ଦିନ କଟଉଥାନ୍ତି।

ବଡ଼ ରାଣୀଟିର ବେଳେ ବେଳେ ଭାରି ମନ କଷ୍ଟ ହୁଏ। ଆପଣା ପାଇଁ ସେ ମନ ଊଣା

କରେ ନାହିଁ, ଝିଅଟି ପାଇଁ। ବଡ଼ କୁଳରେ ହେଲା ଜାତ, କର୍ମ ତାହାର ବିପରୀତ। କ'ଣ ଆଉ କରିବ ଅବା? କର୍ମ କଷଣ ଦେହ ସହେ, ବନସ୍ତେ ଅଜଗର ପ୍ରାୟେ। ସେଇ ଘରକୁ ନିଜେ ଲିପି ପୋଛି ନିଚିପଡ଼ କରି ଏମିତି ଯତନ କରିଥାଏ ଯେ ତଳେ କୁଢ଼େଇ ଖାଇହବ। ଯାବତ ଓଷା ବାରବ୍ରତ, ସେ ପୁରେ ଅଛଇ ସମସ୍ତ। ସବୁ ଓଷା ଉପାସ ସେ ନିଷ୍ଠାରେ କରେ। କାନ୍ଥ ସବୁ ରଙ୍ଗ ମାଟିରେ ଲିପି ସେଥିରେ ଧାନଶିଶା, ମଳେଇଗଦା, ଟିପ ଦେଉଳ, ଦଧିନଉତି, ପୂର୍ଣ୍ଣ କଳସ, ମାଛକୁମ୍ଭ, ନବଗୁଞ୍ଜର ଆଦି ଯେତେ ଚିତା ଓଡ଼ିଆ ଘରେ ଅଛି ସବୁ କାନ୍ଥରେ ବାଡ଼ରେ ପକାହେଇଥାଏ ପିଠଉରେ। ତଳେ ନାନା ପ୍ରକାରର ଝୋଟି। ଦେଖିଲେ ମନେ ହୁଏ ମାଆ ଲକ୍ଷ୍ମୀ ସାଆନ୍ତାଣୀ ସତେ ଅବା ପଦ୍ମ ଉପରେ ଦି ପାଦ ଦେଇ ଠିଆ ହେଇଛନ୍ତି!

ସେଇ ବଖୁରିଆ ଘରଟିରେ ପୂର୍ବ ପଟକୁ ଗୋଟିଏ କାଠର ଖଟୁଲିରେ ଦିଅଁ ଅଛନ୍ତି। ପାଖରେ ପୂଜା ସାମଗ୍ରୀ, କେତେ ପୁରାଣ, ରାମାୟଣ, ଭାଗବତ, ମହାଭାରତ ବହିସବୁ ଥାକଭରା। ସେ ଘରର ଏ ପାଖକୁ ଗୋଟିଏ ଭାଡ଼ି କରି ସେଥିରେ ଚାଉଳ କୁଟି ଡାଲି ଭାଜି ଆଉ ଯାହା କିଛି ସାମଗ୍ରୀ ସାଇତା ସଜଡ଼ା ହେଇ ରଖାଯାଇଚି। ଶୋଇଲା ଶେଯ ବୋଲି ଗୋଟିଏ ସନ୍ତରା ମଶୁଣି, ଗୋଟିଏ ସତରଞ୍ଜି, ଦି'ଟି ତକିଆ, ଦି'ଟି ଚଦର, ଦି'ଟି କମଳ। ପାରିଶୁଆ ବି ସେ ଉପରକୁ ଟେକା ହେଇଚି ସବୁ। ଘରଟି ତାର ଏମିତି ଶ୍ରୀସମ୍ପନ୍ନ ହେଇଚି ଯେ କାହିଁ ନାହିଁ। ସାନରାଣୀର ଚନ୍ଦନ ଉଆସ ତା ପାସଙ୍ଗରେ ପଡ଼ିବନି।

ଖାଲି ଝିଅଟି ପାଇଁ ଯାହା ବଡ଼ରାଣୀର ଦୁଃଖ। ତା ସାଙ୍ଗର ସାନରାଣୀର ଝିଅ କେତେ ଅୟସରେ ଅଛି। ଘିଅ ଖାଇ ଖିରରେ ଆଞ୍ଚୋଉଚି। ଯେତେ ପ୍ରକାର ଜାମା ପଟା, ଯେତେ ପ୍ରକାର ଗହଣାରେ ଖୁନ୍ଦି ହେଇଚି। ମାଆପରି ସବୁବେଳେ ଗର୍ବରେ ଫାଟି ପଡୁଥାଏ। ଯେମିତି ରୂପ ସେମିତି ଗୁଣ। ଜନମାନବ ତାକୁ ଗନ୍ଧାନ୍ତି। କାହାରି ସାଙ୍ଗରେ ଭଲରେ କଥା କହେ ନାହିଁ। ଯାହା କହେ ଖାଲି ଆଡ଼ମ୍ବରିଆ ଉପୁଢଙ୍ଗରିଆ କଥା। ତା ବେଢଙ୍ଗିଆ ରୂପକୁ ଢପଢପ ଚାଲି, ଟାଉଟାଉ କଥା ତାକୁ ଆହୁରି ଅସୁନ୍ଦର କରି ପକାଏ। ସବୁବେଳେ ଗରଗର, ଫରଫର, ଫାଇ ଫରମାସ। ସମସ୍ତଙ୍କ ଉପରେ ସବୁବେଳେ ହୁକୁମାତି ଝାଡ଼େ। ସିଏ କାହାରିକୁ ଭଲପାଏ ନାହିଁ କି ତାକୁ କେହି ଭଲ ପାଆନ୍ତି ନାହିଁ।

ବଡ଼ରାଣୀର ଝିଅଟି ଠିକ୍ ତା'ର ଓଲଟା। ଧୀର ଧୀର ଚାଲି ଥିରିଥିରି କଥା, ଶାନ୍ତ, ଶୀତଳ ଚାହାଣୀରେ ସମସ୍ତଙ୍କୁ ଆପଣାର କରି ପକାଏ। ବଡ଼ମାନଙ୍କୁ ମାନ୍ୟ, ସାନମାନଙ୍କୁ ଆଦର। ଠାକୁର ଦେବତା ପାଖରେ ଅଚଳ ଭକ୍ତି। ଯୋଗୀ ଭିକାରି, ମାଗମାଗନ୍ତାଙ୍କ ପେଟ ଚିହ୍ନେ ମାଆ ପରି। ବେକରେ କାନରେ, ହାତଗୋଡ଼ରେ ବେତ କୋଳି, ଭଇଁଚ କୋଳି, ଯେତେବେଳେ ଯାହା ମାଳ କରି ଗହଣା କରି ପିନ୍ଧେ। ତା ସୁନ୍ଦର ରୂପକୁ ଏମିତି ମାନେ ଯେ ତାକୁ ବନଦେବତୀ ପରି ମନେହୁଏ। ସବୁ କାମରେ ମାଆକୁ ସାହାଯ୍ୟ। ସେ ମା' ହାତରୁ ଛଡ଼େଇ କାମ କରେ। ଘରକରଣା ଝୋଟି ଚିତା ସବୁଥିରେ ନିପୁଣା। ମଧୁର କଥାରେ ସମସ୍ତଙ୍କ ମନ କିଣି ନିଏ। ସେ ସଭିଙ୍କୁ ଭଲ ପାଏ।

ତାକୁ ଦେଖି ସାନରାଣୀ ଆଉ ତା ଝିଅ ସହି ପାରନ୍ତି ନି। ତା ସୁନ୍ଦର ରୂପ ତା ମଧୁର କଥା ତାଙ୍କ ଦିହରେ କଣ୍ଟା ଫୋଡ଼ି ହେଇ ଗଲାପରି ଲାଗେ। ତାକୁ ନାନା ପ୍ରକାର ପରିହାସ ଉପହାସ

ଜଳାକଟା କଥା କହି ଚିଡ଼ାନ୍ତି । ଆଗେ ଆଗେ କାନ୍ଦୁଥିଲା, ଏବେ ଆଉ କାନ୍ଦେ ନାହିଁ । ସ୍ଥିର ହେଇଯାଏ, ହସିଦିଏ । ପର୍ବତକୁ ଟେକା ମାରିଲେ କି ଶବ୍ଦ ହେବ? ରାଜା ତ ସବୁବେଳେ ନିଶା ବିଳାସ ବ୍ୟସନରେ ବୁଡ଼ି ରହିଥାଆନ୍ତି । ସାନରାଣୀକୁ ପିହଲ ପଡ଼ିଥାଏ, ପଞ୍ଚ ପଡ଼ିଥାଏ । ରାଜାଙ୍କୁ ବହଲେଇ ବାହାଲେଇ ମନମାନି ଶାସନ ଚଳେଇ ଥାଏ ।

ଏମିତି ଏମିତି ସମୟ ଚକ ତା ବାଟରେ ଗଡୁଥାଏ । ଗଡ଼ି ଗଡ଼ି ଯାଉଥାଏ । ଭଗବାନଙ୍କର ବିଚିତ୍ର ଲୀଳା । କିଏ ବୁଝି ପାରିବ ତାଙ୍କ ମନରେ କ'ଣ ଅଛି? ସେ ଦିନ କ'ଣ ହେଇଚି ନାଁ ବଡ଼ରାଣୀ ବାରିପଟେ ଖଜୁରି ପଟିରେ ଧାନ ଶୁଖାଇଚି । ଧାନ ଶୁଖିଲେ, ରାଜ୍ୟର ଚଢ଼େଇ ଆସି ପଡ଼ନ୍ତି । ଝିଅଟି ଫୁଲ ଡାଳ ଖଣ୍ଡେ ହାତରେ ଧରି ପଟି ଚାରିପାଖରେ ଘୂରି ଘୂରି 'ହୋ ହୋ ହୋ' କହି କହି ଚଢ଼େଇ ଘଉଡ଼ୁ ଥାଏ । ଚଢ଼େଇଙ୍କର ଫୁର୍ ଫାର୍‌ରେ ତାକୁ ଭାରି ଭଲ ଲାଗେ । ଆଜି ଗୋଟାଏ ଇଏ କି ମଜା କଥା ହଉଛି? ସେ ଯେତେଥର ପାଟିକରି କହୁଛି "ହୋ ହୋ ହୋ", ସିଆଡୁ ବଣ ଭିତରୁ କିଏ କହୁଛି, "ମୁଁ ତତେ ବାହାହୋ ।"

ପ୍ରଥମେ ପ୍ରଥମେ ତ ତାକୁ ଭାରି ମଜା ଲାଗୁଥିଲା । ପଛକୁ ପଛ ତାକୁ ଏବେ ଡର ଲାଗିଲାଣି । ସେ ଦଉଡ଼ି ଦଉଡ଼ି ଆସି ମାଆକୁ କହିଲା । ମାଆ ଆସି ଠିଆ ହେଲେ । ଏଥର ଝିଅ ଯେତେ ଥର ହୋ ହୋ କହିଲେ ବି କିଛି ଉତ୍ତର ଆସିଲାନି । କୁଆଡ଼େ କିଛି ସୋରଶବ୍ଦ ନାହିଁ । ମାଆ କହିଲେ, "ତତେ କଅଣ କୁଆଡୁ ଶୁଭୁଥିବ । ତୁ ବୁଝିପାରି ନ ଥିବୁ । କାଇଁ କିଛି ତ ଶୁଭିଲାନି ।" ମାଆ ଚାଲିଗଲେ, ପୁଣି ଝିଅ ଚଢ଼େଇ ଉଡ଼େଇବାରେ ମନ ଦେଲା । ଏଥର ପ୍ରତିବାର "ହୋ ହୋ ହୋ" କହିବା ସଙ୍ଗେ ସଙ୍ଗେ ସିଆଡୁ ଉତ୍ତର ଆସିଲା "ମୁଁ ତତେ ବାହାହୋ" । ଝିଅଟି କିଲିବିଲି ହେଇ ପୁଣି ମାଆ ପାଖକୁ ଦଉଡ଼ିଲା । ମାଆ ଆସି ଆଡୁଆଳରେ ଲୁଚି ରହିଲେ । ଝିଅ ଡାଳ ଧରି ପଟି ଚାରିପଟେ ଦଉଡ଼ି ଦଉଡ଼ି ପକ୍ଷୀ ହୁରୁଡ଼େଇ କହିଲା "ହୋ ହୋ ହୋ" । ସିଆଡୁ ଶବ୍ଦ ଆସିଲା "ମୁଁ ତତେ ବାହାହୋ" ।

ରାଣୀ କାନରେ ଶୁଣିଲେ । ଛପିଲା ଜାଗାରୁ ବାହାରି ଆସିଲେ । ଆଉ ଝିଅ ଯେତେ କହିଲେ ମଧ୍ୟ କୌଣସି ଉତ୍ତର ଆସିଲାନି । ମାଆ କହିଲେ, "ଏଥର ଯଦି ସେମିତି ଶୁଣାଯାଏ ତା ହେଲେ ତୁ କହିବୁ 'ଆପଣ କିଏ କହୁଛନ୍ତି, ବାହାରକୁ ଆସନ୍ତୁ । ମୁଁ ଆପଣଙ୍କୁ ଆଗ ଦେଖେ' ।" ଝିଅ କହିଲା, "ନାଇଁ ନାଇଁ କିଏ କାଳେ ହେଇଥିବ, ମତେ ଡର ଲାଗୁଚି ।" ମାଆ କହିଲେ, "ତୁ ଜମାରୁ ଡରିବୁନି । ଆମ ପାଖରେ ଠାକୁର ଅଛନ୍ତି, ମାଆ ଅଛନ୍ତି, ଯିଏ ବି ହୁଅନ୍ତୁ ତୁ ଡରିବୁନି ଜମା । ଭଗବାନ ଯାହା କରନ୍ତି ପ୍ରାଣୀର ମଙ୍ଗଳ ପାଇଁ ।"

ସେଦିନ ଛାଇ ଲେଉଟିଲାଣି । ଓଳିଆ ପୋଳିଆ କରି ଧାନକୁ ଗଦେଇ, ସେଇ ପଟିରେ ଘୋଡ଼େଇ ଦେଇ ମାଆ ଝିଅ ଘରକୁ ଫେରିଲେ । ସଞ୍ଜବତୀ ଲଗାଇ ପ୍ରାର୍ଥନା ପୂଜା ସାରି ଯାହା ଦି'ଟା ଖାଇଦେଇ ବିଛଣାରେ ଶୋଇ ପଡ଼ିଲେ । ସାରା ଦିନର ଥକ୍କାକୁ ପୁଣି ଆଜି ଏ ଯୋଉ ଘଟଣା ଘଟିଲା ସବୁ ଭାବୁ ନ ଭାବୁଣୁ ଝିଅଟି ଭୂଇଁ ଶୁଙ୍ଘୁଶୁଙ୍ଘୁ ଗଭୀର ନିଦରେ ଶୋଇଗଲା । ହେଲେ ମାଆ ଆଖିରେ ନିଦ କାଇଁ? ଜୀବନର ସମସ୍ତ କଥା ଓଲଟେଇ ପାଲଟେଇ ଆଖି ଆଗରେ ଚଳଚ୍ଚିତ୍ର ପରି ଭାସି ଯାଉଛି । ପୁଣି ଆଗକୁ କି ଅନିଭୋଗ ଭାଗ୍ୟରେ ଅଛି କିଏ ଜାଣେ? ଝିଅ ପାଇଁ ଭବିଷ୍ୟତର ଆଶଙ୍କା ତାଙ୍କୁ ଖାଇଯାଉଛି, ଏହାର ରହସ୍ୟ କଣ? ସେ ଯେଉଁ କଥା ଶୁଣିଲେ ସେତ ମଣିଷ କଥା

ପରି ଶୁଣାଯାଉ ନ ଥିଲା । କିମ୍ବା ଭୟଭୀତ କରିବାର ସ୍ୱର ମଧ୍ୟ ଶୁଣାଯାଉ ନ ଥିଲା । ସେତେବେଳେ ମନ ଭିତରେ କ'ଣ ଆସିଲା, ସେ ଏଇନେ ଠିକ୍ ଭାବରେ ବୁଝେଇ ପାରିବେନି । ଭଗବାନଙ୍କ ଉଦ୍ଦେଶ୍ୟ କଣ ? ଲୋକେ କହନ୍ତି ଅରକ୍ଷିତକୁ ଦଇବ ସାହା – ହେ ପ୍ରଭୁ ରକ୍ଷାକର । ଏହିପରି ଡାକୁ ଡାକୁ କେତେ ବେଳେ ଯେ ଆଖି ଲାଖି ଯାଇଚି ତାଙ୍କୁ ଜଣା ନାହିଁ ।

କୋଉ କାଳି ଅନ୍ଧାରୁ ମାଆ ଉଠି ବାସିପାଇଟି ସାରି, ନିତ୍ୟକର୍ମ ସାରି, ଗାଧୁଆପାଧୁଆ ସାରି ଦିଅଁଙ୍କ ପୂଜାରେ ବସିଲେଣି । ଝିଅ କେବେଠୁ ଫୁଲ ତୋଳି ରଖିଦେଇଥିଲା, ରାଣିମା ଦିଅଁଙ୍କୁ ଫୁଲ ମଣ୍ଡି ଭୋଗ ସାରି ଜଣାଣ କରୁଛନ୍ତି । ଆଖିରୁ ଧାର ଧାର ଲୁହ ବୋହିଚାଲିଛି । ଠାକୁରଙ୍କୁ କ'ଣ କ'ଣ ଜଣାଉଛନ୍ତି ତାଙ୍କୁ ଜଣା । ଝିଅଟି ଗାଧୋଇ ଆସି ମା'ଙ୍କ ପାଖରେ ବସିଲା । ପ୍ରାର୍ଥନା କରୁଛି । ଓଦାକେଶ ଅଣ୍ଟାସରିକି ପଡ଼ିଚି । ଆଜି ସେ ବଉଳ ଫୁଲର ଗହଣା ସବୁ ନାଇଚି । କାନରେ ଝରା, ଗଳାରେ ହାର, ସିଛିରେ ଛୋଟ କରି ଗୋଟିଏ ଚିତା, ହାତରେ ବାହାରେ ଦିସରିଆ ବଉଳମାଳ । ପରୀଟିଏ ପରି, ଫୁଲରାଣୀଟିଏ ପରି ଦେଖାଯାଉଛି ।

ମାଆ ଝିଅ ଦୁହେଁ ପୂଜା ପ୍ରାର୍ଥନା ସାରି ବାରି ପଟକୁ ଆସିଲେ । ସବୁଆଡ଼ ପରିଷ୍କାର ପରିଚ୍ଛନ୍ନ, ସକାଳୁଆ କଅଁଳ କିରଣରେ ଫୁଲସବୁ ଛନ ଛନ ଦେଖା ଯାଉଛନ୍ତି । କାମିନୀ ଗଛରୁ ଫୁଲ ଝରି ଫୁଲଗାଲିଚା ପରା ହେଲାପରି ଦେଖାଯାଉଛି, ମହକରେ ମହକୁଚି ଚଉଦିଗ । ଆଉ ଟିକିଏ ଖରା ତେଜ ହେଉ ଧାନ ଶୁଖିବ । ମାଆ ଭିତରକୁ ଆସି ଚୁଲି ଲଗେଇଲେ । ଝିଅଟି ମା'ଙ୍କ ପଛେ ପଛେ ଆସି କାଇଁଚ ଡାଲିଆରେ ରଖାହେଇଥିବା ଖଇ ଆଣି ପାଟିରେ ପକେଇଲା । ମାଆ ଏଇ ଖଇ ନିଜେ ଭାଜି ଥିଲେ । ଟିକିଏ ଏପାଖ ସେପାଖ ହେଇ ଝିଅ ଧାନ ପକେଇବାକୁ ଆସିଲା, ପଟି ଖୋଲି ଧାନ ଖେଳେଇ ଖେଳେଇ ଶୁଖେଇଲା ସକାଳୁ ସକାଳୁ । ଆଉ ଟିକିଏ ଖରା ଆସିଗଲେ କଅଁଳ ଖରାରେ ପାରା, ଘରଚଟିଆ, ବଣି ଆହୁରି କେତେ ଜାତିର କୁନି ଚଢ଼େଇମାନେ ଆସି ଲାଗି ଯାଆନ୍ତି ଧାନ ପଟିରେ । ସେତେବେଳେ ପକ୍ଷୀଙ୍କୁ ହୁରୁଡ଼େଇ ବିଚରା ଝିଅଟି ନାକେଦମ ହେଇଯାଏ । ଏଇନେ ଟିକିଏ ଫୁରୁସତ, ସେ ଅଣ୍ଟିରେ ଅଣ୍ଟିଏ ଫୁଲ ତୋଳି ବଡ଼ କଳା ପଥରଟା ଉପରେ ଗୁନ୍ଥି ବସିଚି ।

ହେଇ ହେଇ ଆସିଗଲେ ଆସିଗଲେ । ଏକା ସାଙ୍ଗରେ ଦି ପୁଞ୍ଜା ପାରା – ଶ୍ୱେତପାରା, ଛିଟପାରା, ଚୂଳିପାରା, ଦେଉଳିଆ ପାରା । ସେ ପାରାମାନଙ୍କୁ ଭାରି ଭଲପାଏ । ତାଙ୍କୁ ନିରିଖି ନିରିଖି ଦେଖୁଚି । ଦେଖୁ ଦେଖୁ କିଚିରି ମିଚିରି ହେଇ କେତେ ପ୍ରକାରର ପକ୍ଷୀ ମାଡ଼ି ଆସିଲେଣି । "ମଲା ମଲା, ସବୁ ଧାନ ତମେ ଖାଇଯିବ ନା କ'ଣ ? ଆମେ ଆଉ କ'ଣ ଖାଇବୁ ମଁ...?", କହି, ସେଇ ପଥର ଉପରେ କାନି ଝାଡ଼ି ଫୁଲସବୁ କୁଢ଼େଇଦେଇ ଧାଇଁଲା ଝିଅଟି । ବାସଙ୍ଗ ଡାହି ଖଣ୍ଡେ ଭାଙ୍ଗି ଦଉଡ଼ିଲା ପଟି ଚାରିପାଖରେ ହୋ ହୋ ହୋ କହି କହି । ପକ୍ଷୀମାନେ ଏକ ସାଥିରେ ହାସ୍ କରି ଉଡ଼ି ଘୂରି ବୁଲିଲେ । ଝିଅଟି ଯେମିତି ହୋ ହୋ ହୋ କହିଚି ସେମିତି ସିଆଡୁ ବଣ ଭିତରୁ ଶୁଭିଲା, "ମୁଁ ତତେ ବାହାହୋ" ।

ଏଥର ଝିଅ ମନରେ ଦମ୍ଭ ବାନ୍ଧିଲା, ମାଆ କହିଛନ୍ତି ଯାହା ବି ହଉ । ହାତ ଯୋଡ଼ିଲା, କହିଲା, "ଆପଣ କିଏ କହୁଛନ୍ତି ବାହାରକୁ ଆସନ୍ତୁ । ମୁଁ ଆପଣଙ୍କୁ ଦେଖିବି ।" ଉତ୍ତର ଆସିଲା, "ମତେ ଦେଖି ତମେ ଡରି ଯିବନି ତ ? ମୁଁ ତୁମର କିଛି କ୍ଷତି କରିବିନି, କିନ୍ତୁ ତୁମେ ମତେ ଦେଖି ଯଦି

ଡରି ଚାଲିଯାଅ, ତେବେ ମୋର ବହୁତ କ୍ଷତି ହେବ । ଆହୁରି ବାରବର୍ଷ ମୋତେ ଏହିପରି ଦୁଃଖ ଭୋଗ କରିବାକୁ ପଡ଼ିବ ।" ଝିଅ ପଚାରିଲା, "ଆପଣ କ'ଣ ଭାରି କଷ୍ଟରେ ଅଛନ୍ତି?" ରାଜାଝିଅ ମନ ବିକଳ ହେଇଗଲା ସେ ଆହୁରି ପଚାରିଲା, "ମୁଁ ଯଦି ନ ଡରେ ଆପଣଙ୍କୁ କ'ଣ ଏଇ କଷ୍ଟରୁ ମୁକ୍ତି ମିଳିଯିବ?" ଉତ୍ତର ଆସିଲା, "ହଁ ।" ରାଜାଝିଅ କହିଲା, "ତେବେ ମୁଁ ଜମାରୁ ଡରିବିନି ଯାହା ବି ହେଉ ।" ଜଙ୍ଗଲ ଭିତରୁ ଶବ୍ଦ ଆସିଲା, "ଡରିବନି? ଯେତେ ଭୟଙ୍କର ରୂପ ଦେଖିଲେ ବି!" ରାଜାଝିଅ କହିଲା, "ରୂପରେ କି ଥାଏ? ଆପଣ ତ ଏତେ ସୁନ୍ଦର କଥା କହୁଛନ୍ତି, ମୁଁ ଜାଣେ ଆପଣ ମୋର କିଛି କ୍ଷତି କରିବେନି । କରିବାର ଥିଲେ କେବେଠୁ କରିଥାଆନ୍ତେ । ବାହାରକୁ ଆସନ୍ତୁ । ଆପଣଙ୍କ କଥାରେ ମୁଁ ରାଜି । କଥା ଦଉଚି ।" ସିଆଡୁ ଶୁଣାଗଲା, "ଡରିବନି, କଥା ଦେଇଚ ସୁନାଝିଅ ।" ରାଜକୁମାରୀ କହିଲା, "ହଁ ହଁ ହଁ ।"

ତାପରେ ବଣ ଭିତରୁ ଶୀତଳ ସୁଲୁ ସୁଲିଆ ପବନ ଧୀରେ ଧୀରେ ବହି ଆସିଲା । ବଂଶୀର ସୁର ପରି କିଛି ମଧୁର ସୁର ଭାସି ଆସିଲା । ବାସମତୀ ଚାଉଳର ବାସ୍ନାରେ ମହକିଗଲା ସାରା ବଣ । ଝିଅ ଦେଖିଲା ସେଇ ଆଡୁ ବାହାରି ଆସୁଚି ଗୋଟିଏ ସୁନା ରଙ୍ଗର ସାପ, ତା ମୁଣ୍ଡରେ ଲାଗିଥିବା ମୁକୁଟଟି ଚକ୍ ଚକ୍ କରୁଚି । ଝିଅଟି ଡରିଲାନି, ତା ମନରେ ଡର ଜମାରୁ ଆସିଲାନି । ସେ ସତେ ଅବା ଯେମିତି ସମ୍ମୋହିତ ହୋଇ ଚାହିଁ ରହିଚି । ତାକୁ ଲାଗୁଚି ଏ ଯେମିତି ତା'ର ଭାରି ଭଲ ପାଉଥିବା ଖେଳଣାଟିଏ, ତା ଆଗରେ ଫଣା ତୋଳି ଝୁଲି ଝୁଲି ନାଚୁଚି! ଝିଅଟି ତା ଫଣାରେ ଆଙ୍ଗୁଳିଟିଏ ଛୁଆଁଇ ପୁଣି ହାତ ଫେରାଇ ଆଣିଲା, ତା ଦେହରେ ଶୀତ କଣ୍ଟା ମାରିଗଲା । ସେ ବାରମ୍ବାର ତା ଫଣାକୁ ଛୁଇଁଲା, ଆଉଁଶିଲା । ଧୀରେ ଧୀରେ ତା ସାରା ଦେହକୁ ସାଉଁଳିଲା, ସାପଟିକୁ କୋଳକୁ ଆଣିଲା । ତା ଦେହରେ କି ଗୋଟାଏ ନୂଆ ପ୍ରକାରର ଅନୁଭୂତି ହେଉଥିଲା ଯାହା ସେ ଆଗରୁ କେବେ ଅନୁଭବ କରି ନ ଥିଲା ।

ଏଥର ସୁନା ରଙ୍ଗର ସାପଟି ଆସ୍ତେ ଆସ୍ତେ ତା ଦେହରେ ଗୁଡ଼େଇ ହେଇ ହେଇ ତା ମୁଣ୍ଡ ଉପରେ ଫଣା ଟେକି ରହିଲା । କେହି କିଛି କଥା କହୁ ନ ଥିଲେ । ଝିଅଟିକୁ ଲାଗୁଥିଲା ସତେ ଅବା କେହି ଫୁଲର ଗଜରା ହାରଟିଏ ତା ଦେହରେ ଛନ୍ଦି ଦେଇ ତାକୁ ଗେହ୍ଲା କରୁଚି! ଅପୂର୍ବ ପୁଲକରେ ପୁଲକିତ ହେଇ ଯାଉଚି ତା'ର ମନପ୍ରାଣ । ସେ ମନ୍ତ୍ରମୁଗ୍ଧ ପରି ଅନେକ ସମୟ ବସି ରହିଥିଲା ଚୁପ୍‌ଚାପ୍ । ଆହୁରି କେତେ ସମୟ ସେଇମିତି ଅବସ୍ଥାରେ ଥାଆନ୍ତା କେଜାଣି?

କିଛି ଗୋଟିଏ କାମରେ ବଡ଼ରାଣୀ ସିଆଡୁ ଆସି ତାକୁ ଦେଖି ସ୍ଥାଣୁ ପାଲଟି ଗଲେ । ତାଙ୍କ ଝିଅଟି ନାଗ କନ୍ୟା ପରି ନିର୍ବିକାରରେ ବସି ରହିଚି । ଆଉ ସୁନା ରଙ୍ଗର ସାପଟିଏ ତା ଦେହସାରା ବେଢ଼େଇ ହେଇ ମଥା ଉପରେ ଫଣା ତୋଳି ରହିଚି । ତାଙ୍କ ପାଟିରୁ କଥା ବାହାରିଲାନି । ଏହି ସମୟରେ ସାପ କହିବାର ସେ ଶୁଣିଲେ, "ମାଆ, ମୁଁ ଆପଣଙ୍କର କିଛି କ୍ଷତି କରିବି ନାହିଁ । ବରଂ ଏ ବିବାହରେ ଆମ ସମସ୍ତଙ୍କର ମଙ୍ଗଳ ହେବ । ଆପଣ ସ୍ୱଇଚ୍ଛାରେ ଏ ବିବାହ ସମ୍ପୂର୍ଣ୍ଣ କରନ୍ତୁ ।"

ବଡ଼ରାଣୀ ହଠାତ୍ ସମ୍ବିତ ଫେରି ପାଇଲେ । ଭାବିଲେ, "ସାପ ଏପରି ସୁନ୍ଦର ହେବା ଏବଂ ଏପରି ସୁନ୍ଦର ଭାବରେ କଥା କହିବା, କେହି କେବେ ଦେଖିଚି ନାଁ ଶୁଣିଚି? ଏ ତ କେବେହେଲେ ସାଧାରଣ ସାପ ହେଇ ନ ପାରେ । କୌଣସି ଦେବା ଦେବୀ ହୋଇଥିବେ ନିଶ୍ଚୟ । ମୋ ପରି

ଅଭାଗିନୀକୁ ଦୟା କଲେ।" ସେ ହାତ ଯୋଡ଼ି କହିଲେ, "ଆପଣ କେହି ଠାକୁର ଦେବତା ମୁଁ ଜାଣୁଚି। ମୋ ପରି ଦୁଃଖୀ ମଣିଷ ଉପରେ କୃପାଦୃଷ୍ଟି ପକାଇଲେ। ମୁଁ ବା କଅଣ କରିପାରିବି! ଆପଣ ଯାହା ଇଚ୍ଛା ତାହା କରନ୍ତୁ। ଏବେ ମୋ ଘରକୁ ବିଜେ କରନ୍ତୁ।" ସାପ କହିଲା, "ମାଆ ମୁଁ ଆପଣଙ୍କ କନ୍ୟାର ପାଣି ଗ୍ରହଣ କରିବାକୁ ଯାଉଚି। ମୁଁ ଆପଣଙ୍କ ପୁତ୍ର ସମାନ, ତେଣୁ ଆପଣ ମୋତେ ହାତ ଯୋଡ଼ିବେନି, ମୁଁ ଆପଣଙ୍କୁ ପ୍ରଣାମ କରୁଚି।", କହି ସାପ ଫଣା ନୁଆଁଇଲା। ପୁଣି କହିଲା, "ଆପଣ ଅତି ଶୀଘ୍ର ବିବାହର ଆୟୋଜନ କରନ୍ତୁ"।

ରାଣୀଙ୍କୁ ସବୁ ସ୍ୱପ୍ନ ପରି ଲାଗୁଥିଲା। ସେ ଆଗରେ ଆଗରେ ଆସି ବିଛଣା ବିଛେଇ ଦେଲେ, ସଫା ଚାଦର ପକେଇଲେ। କୋଉ କାଳରେ ପିଲା ଦିନରୁ ଭଲରେ ବୁଣିଥିବା ଆସନ ଖଣ୍ଡିକ ଆଣି ବିଛେଇ ଦେଲେ। ଝିଅଟି ତା ଉପରେ ସାପଟିକୁ ଛାଡ଼ିଦେଇ ତା ପାଖରେ ବସି ପଡ଼ିଲା, ସେମିତି ଚୁପ୍ ଚାପ୍। ସାପ ସେ ଆସନ ଉପରେ କୁଣ୍ଡଳ ମାରି ଫଣାଟି ଝିଅ କୋଳରେ ରଖିଲା। ବଡ଼ରାଣୀ ଝିଅର ବିବାହ ସାପ ସହିତ ହେବା କଥା କହି ରାଜାଙ୍କ ପାଖକୁ ଖବର ଦେଲେ।

ରାଜା ସେତେବେଳକୁ ନିଶାରେ ଟେର୍, ତାଳି ମାରି କହିଲେ, "ବାଃ ବାଃ ବଢ଼ିଆ ହେଲା – ବାହାଘର ହବ ବାହାଘର।" ସାନରାଣୀ ଶୁଣି ଆଶ୍ଚର୍ଯ୍ୟ ହେଲା। କି ଅଭିଲା କଥା, ବଡ଼ରାଣୀର ମୁଣ୍ଡ କ'ଣ ଖରାପ ହେଇଗଲାଣି ନା କଣ? ହଉ ଭଲ ହେଲା, ମୂଳରୁ କଣ୍ଟା ଯିବ। ବଡ଼ରାଣୀଙ୍କୁ ଲୋକହସା କରାଇବାକୁ ରାଜ୍ୟରେ ଡେଙ୍ଗୁରା ଦିଆଇ ସମସ୍ତଙ୍କୁ ନିମନ୍ତ୍ରଣ କଲା। ବର ଦେଖିବାକୁ ଝିଅକୁ ଧରି ସଖୀ ସଙ୍ଗାତଙ୍କ ସଙ୍ଗେ ବଡ଼ ରାଣୀ ଘରକୁ ଆସିଲା। ତାକୁ ଦେଖି ଫୁଁଫୁଁକାରୀ ଫଣା ବିସ୍ତାର କରି ଠିଆ ହେଇଗଲା ସାପ। ସାନରାଣୀ ତା ଝିଅ ସାଙ୍ଗରେ ଆସିଥିବା ଖୋସାମତିଆ ଦଳ ଡରିଥରି ପଳେଇଲେ। ତାଙ୍କୁ ଭାରି ଭୟଙ୍କର ଦେଖାଗଲା।

ଏଣେ ବଡ଼ରାଣୀ ବିଭାଘରର ସମସ୍ତ ବ୍ୟବସ୍ଥା କରି ସାରିଲେଣି, କିଛି ଜାକଜମକ ନାହିଁ। ମାଟି ବେଦିଟିରେ ଝୋଟି ଦିଆଯାଇ ଉପରେ ଡାଳ ଛାମୁଡ଼ିଆ କରି ବେଦି ସଜା ହେଇଚି। ନିଜେ ନିଜେ ହୁଳହୁଳି ପକେଇ ଶଙ୍ଖ ବଜେଇ ବିଭାଘର ହେଉଚି। ହସ୍ତଗଣ୍ଠି ପଡ଼ିଲା ବେଳକୁ ରାଜାଙ୍କ ତରଫରୁ ମୁଦିରସ୍ଥ କାମ ତୁଲାଇବେ। ବଡ଼ରାଣୀଙ୍କୁ ତ ସମସ୍ତେ ଭଲ ପାଆନ୍ତି। ରାଜ ପୁରୋହିତମାନେ ସମସ୍ତେ ଠାକୁର ଭଳି ବ୍ୟବହାର କରୁଛନ୍ତି। ହଠାତ୍ ଯୋଡ଼ି ନାଗରା, ତୂରୀ ମହୁରୀ, ବଡ଼କାଠ, ବାଜ ବାଜଣା, ବାଣ ରୋଷଣୀରେ ରାଜଦାଣ୍ଡ ପ୍ରକମ୍ପିତ ହୋଇ ଉଠିଲା। ରାଜ୍ୟର ଶହ ଶହ ନୁହେଁ ହଜାର ହଜାର ସଂଖ୍ୟାରେ ମାନ୍ୟଗଣ୍ୟ ଠାରୁ ଆରମ୍ଭ କରି ସାମାନ୍ୟ ଲୋକମାନେ ଛୁଟି ଆସିଲେ। ଆଜି ସାନରାଣୀର କଥା କେହି ଶୁଣୁ ନାହାଁନ୍ତି। ଥାଟ ପଟାଳି ଭାଙ୍ଗୁଚି ବଡ଼ରାଣୀଙ୍କ ଦୁଆରେ। ସମସ୍ତେ ଭୂରି ଭୋଜନ କରି ଲେଉଟୁଛନ୍ତି। ହଣ୍ଡା ହଣ୍ଡା ରନ୍ଧା ପରଷା ଚାଲିଚି। ରାଜକୀୟ ଖାଦ୍ୟ, କେଉଁଠୁ କିଏ ବାଢୁଚି କାହାରିକୁ ଜଣାନାହିଁ। ମନ ପସନ୍ଦ ଖାଦ୍ୟ ମନକୁ ପହଞ୍ଚି ଯାଉଚି। ଲୋକମାନେ ଖାଇ ପିଇ ବରକନ୍ୟାଙ୍କୁ ଆଶୀର୍ବାଦ କରି ଲେଉଟିଲେଣି। ମୁଦିରସ୍ଥ ପୁରୋହିତମାନଙ୍କ ପାଉଣା ସାମାନ୍‌ରେ ଘର ଭର୍ତ୍ତି। ସେମାନଙ୍କ ପରିବାରର ପ୍ରାପ୍ୟ ମଧ୍ୟ ତହୁଁ ବଳି ତହୁଁ ବଳି। ସମସ୍ତଙ୍କ ମୁହଁରେ ଏଇ ଅଲୌକିକ ବିବାହର ଚର୍ଚ୍ଚା।

ବରକନ୍ୟା ସେଇ ଘରେ ଅଛନ୍ତି। ରାଣୀ କବାଟଟି ଆଉଜେଇ ଆଣିଲେ। ଚଉରା ପାଖରେ

ଦୀପଟିଏ ଜାଳି ବସି ରହିଲେ । ରାତି ଆସି ପାହି ପାହି ହେଲାଣି । ସିଆଡ଼େ ହୋମ ଧାସରେ ଝାଉଁଳି ପଡ଼ିଚି ଝିଅଟି । ଇଆଡ଼େ ବାହା ଉପାସ । ପୁଣି ଦିନ ଯାକର ଧକଲ । । ଝିଅଟି ତା ଥକିଲା ଦେହକୁ ସେଇ ବିଛଣା ଉପରେ ଗଡ଼େଇ ଦେଲା । ହାତକୁ ଚାହିଁଲା, ହଳଦି ଗୁରୁଗୁରୁ ଅଷାଢୁଆ ସୂତାରେ ଦୂବ ବନ୍ଧା ହେଇ ହାତରେ ଲାଗିଚି । ଲଗେଇଚି ନବଘନ ପଇତା । ସାପ ଦେହରେ ମଧ୍ୟ ସେହିପରି ବନ୍ଧା ଯାଇଚି । ଆଉ ସାରା ଦେହରେ ଖୋଳ ପରି କିଛି ମୂଲ୍ୟବାନ ସୂକ୍ଷ୍ମ ଜିନିଷ ଲାଗିଚି । ସେ ଧୀରେ ଧୀରେ ତା ଆଡ଼କୁ ଆସୁଚି ନା କ'ଣ !

ସେ ଆଖି ମୁଦିଦେଲା, ସାପଟି ଧୀରେ ଧୀରେ ତା ପାଖକୁ ଆସିଲା । କୁଣ୍ଡଳି ମାରି ବସିଲା । ଧୀରେ ଧୀରେ ତାକୁ ଉଠାଇ ଆଣି କୋଳରେ ରଖିଲା, ତା ମୁହଁ ଉପରେ ତା ମୁହଁକୁ ଥାପି ଦେଲା । ଝିଅର ଛାଇ ନିଦ ଝଅଟ୍ କରି ଭାଙ୍ଗିଗଲା । ସେ ଆଖି ଖୋଲି ଚମକି ପଡ଼ିଲା । ସେ ଇଏ କାହା କୋଳରେ? କିରୀଟ କୁଣ୍ଡଳ ରତ୍ନ ଆଭୂଷଣରେ ଭୂଷିତ ସୁନ୍ଦର ତରୁଣଟିଏ ତାକୁ କୋଳାଗ୍ରତ କରି ତା ମୁହଁକୁ ଚାହିଁ ରହିଛନ୍ତି । ଦେବକୁମାର ପରି ପ୍ରତୀୟମାନ ହେଉଛନ୍ତି । ତା'ର ସାରା ଦେହରେ ମଧ୍ୟ ରତ୍ନଖଚିତ ଅଳଙ୍କାରମାନ, ଆଉ ମହାର୍ଘ ପଟ୍ଟବସ୍ତ୍ର ମଧ୍ୟ ତା'ର ପରିଧାନ । ଲାଜରେ ତା ମୁହଁ ଲାଲ ହେଇଗଲା । ସେ ଉଠିପଡ଼ି କହିଲା, "ଆପଣ କିଏ? ମୁଁ କିଏ? ଆପଣ ଏଠିକୁ କିପରି ଆସିଲେ?" ପ୍ରଥମ ଥରପାଇଁ ସେ କଥା କହିଲେ । ବସନ ଭୂଷଣ ସହିତ ଭାଷାରେ ପରିବର୍ତ୍ତନ ଆସିଲା ପରି ତାକୁ ଲାଗୁଚି ।

ହାତ ଧରି ପାଖରେ ବସାଇ ସେ ତାକୁ କହିଲେ, "ମୁଁ ତୁମର ସେଇ ସାପ ସୁନା ରାଜଜେମା, ଯାହାକୁ ତୁମେ ଶାପମୁକ୍ତ କରିଚ ।" ଜେମା କହିଲା, "ମୋ ସାପ କାଇଁ?" ସେ ଇଙ୍ଗିତରେ ଗୋଟିଏ ପାଖରେ ପଡ଼ିଥିବା ସାପ ଆକୃତିର ଖୋଳଟିକୁ ଦେଖାଇ ଦେଇ ନିଜ କାହାଣୀ କହିବାକୁ ଲାଗିଲେ । "ମୁଁ ହଉଚି କିନ୍ନର ରାଜକୁମାର, ଅଳକାପୁରୀରେ ମୋର ଘର । ମୁଁ ନିଜେ ବହୁତ ସୁନ୍ଦର ଥିବାରୁ ମୋର ଗର୍ବର ସୀମା ନ ଥିଲା, ଅସୁନ୍ଦରକୁ ମୁଁ ବହୁତ ଘୃଣା କରୁଥିଲି । ଦିନେ ସାଙ୍ଗ ସାଥୀଙ୍କ ସହିତ ଖେଳିବା ସମୟରେ ଅଷ୍ଟବକ୍ର ମୁନୀ ସେଇ ବାଟ ଦେଇ ଆସୁଥିଲେ । ଘୃଣାରେ ତାଙ୍କ ଚାଲି ନକଲ କରି ମୁଁ ତାଙ୍କୁ ପରିହାସ କଲି ।" ସେ ରାଗିଯାଇ ମୋତେ ଅଭିଶାପ ଦେଲେ, "ତୁ ସର୍ପ ହୋଇ ସବୁବେଳେ ଏମିତି ଅଙ୍କା ବଙ୍କା ହୋଇ ଚାଲୁଥାଆ ।"

ସେତେବେଳକୁ ମୋ ମୁଣ୍ଡରୁ ବାଚାଳତା ଖସି ସାରିଥିଲା । ମୁଁ ତାଙ୍କ ପାଦତଳେ ପଡ଼ି ବହୁତ ଅନୁନୟ ବିନୟକରି କ୍ଷମା ମାଗିଲି । ସେତେବେଳକୁ ମୋ ସାଥୀମାନଙ୍କ ଠାରୁ ମୋର ଦୁର୍ଭାଗ୍ୟ କଥା ଶୁଣି ମୋ ବାପାମା ଆସି ପହଞ୍ଚି ଯାଇଥିଲେ। ମୁନିଙ୍କ ପାଦତଳେ ପଡ଼ି ସେମାନେ ମଧ୍ୟ ବହୁତ ପ୍ରାର୍ଥନା କଲେ । ଆମ ସମସ୍ତଙ୍କର ଆକୁଳ ବିକଳ ଦେଖି ମୁନିଙ୍କର ମନ ତଟିଲା । ସେ ବ୍ୟସ୍ତ ହୋଇ କହିଲେ, "ଗର୍ବ ହିଁ ସବୁଠାରୁ ବଡ଼ ଦୁର୍ବୃତ୍ତ, ସବୁ ଅନର୍ଥର ମୂଳ । ଆମ ସିଦ୍ଧମାନଙ୍କର ବର କିମ୍ବା ଶାପ କେବେ ହେଲେ ବ୍ୟର୍ଥ ହେବାର ନୁହେଁ । ଯଦି କେହି ରାଜକନ୍ୟା ସ୍ୱଇଚ୍ଛାରେ ତୋତେ ବରଣ କରି, ପିତା ମାତାଙ୍କ ମତ ନେଇ ତୋତେ ବିଭାହୁଏ, ତେବେ ତୁ ତୋ ନିଜ ରୂପ ଫେରିପାଇବୁ । ସେଇ ଦିନରୁ ଆଜି ପର୍ଯ୍ୟନ୍ତ ଅନେକ ବର୍ଷ ହେଲାଣି ମୁଁ ଏ ରୂପ ନେଇ ବହୁତ କଷ୍ଟ ପାଇଲିଣି । ମୋ ପାପର ପ୍ରାୟଶ୍ଚିତ କରୁଥିଲି । ତୁମେ ମୋତେ ଏ ଅଭିଶାପରୁ ମୁକ୍ତି ଦେଲ ।" ଏହା କହି ସେ ମୃଦୁ

ମୃଦୁ ହସି ଜେମାର ଗାଲକୁ ଟିପି ଦେଇ କହିଲେ, "ତୁମେ ଆଉ ମାନବୀ ନୁହଁ, କିନ୍ନରୀ ଯୁବରାଣୀ। ସେଥିପାଇଁ ଏଠି ସବୁ ଛାଁ ଛାଁ ହେଇଗଲା।"

ଝିଅଟି ଆଶ୍ଚର୍ଯ୍ୟ ଚକିତ ହୋଇ ଚାରିଆଡ଼କୁ ଚାହୁଁଚି। ସେ ଏଠି କୋଉଠି? ଏ ମଣିମୟ ପୁରୀ, ଏ ହାତୀଦାନ୍ତ ପଲଙ୍କ, ଏ ଘରର ସାଜସଜ୍ଜା, ତା ଦେହର ବସନ ଭୂଷଣ, ତାକୁ ସବୁ ଇନ୍ଦ୍ରଜାଲ ପରି ଲାଗୁଚି, କୁହୁକମାୟା ପରି ମନେ ହେଉଚି। ସେମାନେ ମାଆଙ୍କ ପାଖକୁ ଆସିଲେ। କାଇଁ ସେ ଚାଳିଆ? କାଇଁ ସେ ଚଉରା, ଯୋଉଠି ମାଆ ଅଖଣ୍ଡ ଦୀପ ଜଳେଇ ବସିଥିଲେ? ଗୋଟିଏ ସୁନ୍ଦର ଚନ୍ଦନ ଘର ଆଗରେ ଶଙ୍ଖ ମଲମଲ ଚଉରା ପାଖରେ ସୁନ୍ଦର ଅଖଣ୍ଡ ଦୀପଟି ଜଳୁଚି। ମାଆ ତା'ର ପାଖରେ ପ୍ରଣାମକରି ଶୋଇ ଯାଇଛନ୍ତି ଗଭୀର ନିଦରେ, କିନ୍ତୁ ଝରି ଝରି ଶୁଖିଯାଇଥିବା ଲୁହ ଧାର ସ୍ୱଷ୍ଟ ବାରି ହେଇ ଯାଉଚି। ତାଙ୍କ ବେଶ ଭୂଷାରେ ମଧ୍ୟ ପରିବର୍ତ୍ତନ।

ଏମାନେ ମାଆଙ୍କୁ ଉଠାଇ ପ୍ରଣାମ କଲେ। ନିଜ ଝିଅକୁ ଅପରୂପ ରୂପରେ ପୁଅଟି ସହିତ ଦେଖି ସେ କିଛି ବୁଝିପାରୁ ନ ଥିଲେ। ନିଜକୁ ଚାହିଁ ଆଶ୍ଚର୍ଯ୍ୟ ହୋଇଗଲେ। ଜୋଇଁ ସବୁ କଥା ବୁଝାଇ କହିଲେ, "ଏ ସବୁ ଆପଣଙ୍କ ସୁକୃତର ଫଳ। ଆପଣଙ୍କ ପୂଜା, ନିଷ୍ଠା, ସହିଷ୍ଣୁତାର ଫଳ। ଆପଣଙ୍କ ସବୁ ଦୁଃଖ ଏବେ ଶେଷ ହୋଇ ଯାଇଚି। ଏଣିକି ରାଜାଙ୍କ ସହିତ ଆପଣ ସମସ୍ତ ଐଶ୍ୱର୍ଯ୍ୟ ଭୋଗକରି ଅଳକାପୁରୀକୁ ଆସିବେ।" ରାଣୀ ବିକଳ ହୋଇ କହିଲେ, "ମୋ ଝିଅ, ଯାହା ମୁହଁକୁ ଚାହିଁ ସକଳ ଦୁଃଖ ହସି ହସି ସହି ଯାଉଥିଲି, ତାକୁ ଆଉ କେବେ ବି ଦେଖି ପାରିବି ନାହିଁ?" ଜୋଇଁ କହିଲେ,"ହଁ, ବର୍ଷର ଏଇ ତିଥିରେ ସର୍ପର ସେଇ ଚମଡ଼ାଟି ସ୍ୱର୍ଶକରି ସ୍ମରଣ କଲେ ଆମେ ଦୁହେଁ ଆପଣଙ୍କ ପାଖକୁ ଆସିବୁ। ଏଇକ୍ଷଣି ଆପଣଙ୍କୁ ଏଇ ମାନବ ଶରୀରରେ ଅଳକାପୁରୀକୁ ନେଇଯିବା ଆମ ସାଧ୍ୟର ବାହାରେ।" ରାଣୀ ତାଙ୍କ ଝିଅ ଜୋଇଁଙ୍କୁ ପରମ ସ୍ନେହରେ ଦୁଇ ବାହୁରେ ଜଡ଼େଇ ଧରି ସ୍ୱର୍ଗ ସୁଖ ଅନୁଭବ କଲେ। ସେତେବେଳେ ତାଙ୍କ ଆଖିରୁ ମଧ୍ୟ ଲୁହ ଝରୁଥିଲା, ମାତ୍ର ତାହା ଆନନ୍ଦର ଅଶ୍ରୁ।

ରାଣୀ କୁଳର ପ୍ରଥା ଅନୁସାରେ ଝିଅ ଜୋଇଁଙ୍କୁ ଧରି କୁଳଦେବତା, ଉଆସର ମନ୍ଦିରକୁ ଗଲେ। ସେମାନେ ଯୁଆଡ଼େ ଯାଉଥିଲେ ସିଆଡ଼େ ସୁନା ପାଲଟି ଯାଉଥିଲା। ଦେଉଳ ଦର୍ଶନ ସାରି, ସେମାନେ ରାଜାଙ୍କୁ ପ୍ରଣାମ କରିବାକୁ ଆସିଲେ। ତାଙ୍କୁ ଦେଖି ରାଜାଙ୍କ ନିଶା କୁଆଡ଼େ ଛାଡ଼ିଗଲା। ସେ ଝିଅ ଜୋଇଁଙ୍କୁ ଧରି ଭୋ ଭୋ କାନ୍ଦି ଉଠି ଆଶୀର୍ବାଦ କଲେ। ଦୂରରୁ ସେମାନଙ୍କୁ ଦେଖି ସାନରାଣୀ ଈର୍ଷାରେ ପାଗଳ ପରି ହେଇଗଲେ। ବନ ଅଗ୍ନି ପରି ଏଇ କଥା ରାଜ୍ୟସାରା ପ୍ରଚାର ହୋଇଗଲା। ସମସ୍ତେ ଆସି ରୁଣ୍ଡ ହେଇଗଲେ ହଜାର ହଜାର ସଂଖ୍ୟାରେ। ସମସ୍ତେ ଚାହିଁଛନ୍ତି, କେହି କେବେ ଦେଖି ନ ଥିବା ଅପୂର୍ବ ଫୁଲରେ ସଜ୍ଜିତ ହୋଇ ବିମାନଟିଏ ଉପରୁ ଖସିଲା। ମାଆ ଝିଅଙ୍କର ବିଦାୟକାଳୀନ ଦୃଶ୍ୟ ଥିଲା ଅତ୍ୟନ୍ତ ମର୍ମସ୍ପର୍ଶୀ। ଏଥିରେ ସମସ୍ତେ ବିଚଳିତ ହୋଇଗଲେ। ଶେଷରେ ମାଆ ଠାରୁ, ସମସ୍ତଙ୍କ ଠାରୁ ବିଦାୟ ନେଇ ଝିଅ ଜୋଇଁ ବିମାନରେ ବସିଲେ। ଚାହୁଁ ଚାହୁଁ ବିମାନଟି ଉଠି ଉଠି ଆକାଶରେ କୁଆଡ଼େ ଉଭାନ୍ ହେଇଗଲା। ତଥାପି ଝରଝର ହୋଇ ଅନେକ ବେଳ ଯାଏ ବୃଷ୍ଟି ହେଉଥିଲା ସେଇ ସୁବାସିତ ଅପୂର୍ବ ଫୁଲଗୁଡ଼ିଏ।

ଇଆଡ଼େ କ'ଣ ହେଇଚି ନା, ସାନରାଣୀର ଝିଅ ଅଡ଼ି ବସିଚି ସିଏ ସାପ ବାହାହବ। ସାନରାଣୀର

ମଧ୍ୟ ସେଇ ଇଚ୍ଛା । ଶହ ଶହ ସଂଖ୍ୟାରେ କେଳାମାନେ ଆସି ସାରା ଜଙ୍ଗଲ ଖେଦି ପକାଇଲେ । ସେମିତିକା ସାପ କୋଉଠି ହେଲେ ମିଳିଲାନି। ସେଠୁ ସାନରାଣୀଙ୍କର ଆଦେଶ ହେଲା ସବୁଠାରୁ ବଡ଼ ସାପ ଯିଏ ଆଣିବ, ସିଏ ପୁରସ୍କାର ପାଇବ । କେଳାମାନେ ଯେତେ ଆଣିଲେ, ସାନରାଣୀ ମନକୁ ଗଲାନି । ଶେଷରେ ଚାରିଜଣ କେଳା ଗୋଟିଏ ବିରାଟ ଅହିରାଜ ନେଇ ଆସିଲେ । ଏଇଟା ସାନରାଣୀର ମନକୁ ଆସିଲା । ଚାରିଜଣ ମିଶି ଏଇ ମହାଶକ୍ତିଶାଳୀ ସାପକୁ ବଡ଼ ବଡ଼ ଚାରିଟା ଲଙ୍ଗଳ ଦଉଡ଼ିରେ ଶକ୍ତ କରି ମୋଟା ବାଉଁଶରେ ବାନ୍ଧି ଆଣିଛନ୍ତି । ସେମାନେ ପୁରସ୍କାର ପାଇଲେ ।

ଉଆସର ଖାସ୍ ବିବାହ ମଣ୍ଡପକୁ ତାକୁ ନିଆଗଲା । ସାନ ଝିଅର ସମସ୍ତ ମୂଲ୍ୟବାନ ଶାଢ଼ୀ ଗହଣା କାଢ଼ି ନିଆଯାଇ ବଡ଼ରାଣୀ ଝିଅ ଯେମିତି ଅଷ୍ଟରତ୍ନରେ ଭୂଷିତା ହେଇ ବାହାରିଲା, ଏ ମଧ୍ୟ ସେମିତି ବାହାରିବ । ଭାରି ବାଜା ବଜନ୍ତରୀ, ବାଣ ରୋଷଣୀରେ, ଭାରି ଜାକଜମକରେ ବାହାଘର ହେଲା । ହଜାର ହଜାର ନିମନ୍ତ୍ରିତ ଅତିଥି ଖାଇ ପିଇ ବାହାଘର ଦେଖୁଛନ୍ତି । ଦେଖିବେ କଣ ? ତା'ର ଯୋଉ ଭୟଙ୍କର ଗର୍ଜନ, ରୂପ ଦେଖି ଭୟରେ ନିଜ ପୈତୃକ ପ୍ରାଣଟି ମଧ୍ୟ ଧରି କିଏ କୁଆଡ଼େ ପଳେଇଲେ । ସାନରାଣୀ ଓ ତା ଝିଅ ସାପ ପାଖକୁ ଆସି ତାକୁ ଆଉଁଶିବାକୁ ଚାହିଁଲେ । ତା ଗର୍ଜନ, ତା ଉଗ୍ରମୂର୍ତ୍ତି ଦେଖି ସେମାନେ ତ ଛାନିଆ । ଯାହା ହଉ, ଚାରିଜଣ ଷଣ୍ଢ ଷଣ୍ଢ ଲୋକ ସାପକୁ ନେଇ ମଧୁଶଯ୍ୟା ଘରେ ରଖିଦେଲେ । ସେ ଘର ଭାରି ସୁନ୍ଦର ଭାବରେ ସଜା ହେଇଥିଲା । ରୁପା ପଲଙ୍କରେ ମଖମଲି ବିଛଣା, ତା ଉପରେ ସଜ ସଜ ଫୁଲ ସବୁ ବିଛା ଯାଇଥିଲା । ସାନ ଝିଅ ତା ଉପରେ ଶୋଇଥିଲା ।

ସାପ ଭିଡ଼ି ଓଟାରି ହେଇ ସବୁ ଦଉଡ଼ି ଛିଣ୍ଡାଇ ଦେଲାଣି । ଦି ଦିନର ଉପାସ, ବିଜୁଳିପରି ଏପଟ ସେପଟ ବୁଲୁଚି ସୁ ସୁ ହୋଇ । ଶିକାର ବାସ୍ନା ପାଇ ଖଟ ଉପରକୁ ଉଠିଲା, ତା ଉଗ୍ରରୂପ ଦେଖି ବିଚରା ଝିଅଟି ଡରିଗଲାଣି । ସାପ ତା ପାଦ ଆଡୁ ଗିଳିବାକୁ ଆରମ୍ଭ କଲା । ଝିଅଟି କଲବଲ ହେଇ ଡାକ ପକେଇଲା, "ମାଆ ମାଆ, ମୋ ପାଦ ଗଲା ।" ମାଆ ବାହାରେ ଥାଇ କହିଲା, "ରହ ଜୋଇଁ ତତେ ପାଉଁଜି ପା ପଦ୍ମ ଲଗେଇ ଦଉଛନ୍ତି ।" ଅଣ୍ଟାଯାଏ ଗିଳିଲା ବେଳକୁ ଝିଅପାଟି ଶୁଣି ମା ବିରକ୍ତିରେ କହିଲା, "ଏମିତି କ'ଣ ହଉଛୁ ? ଜୋଇଁ ତତେ ଚନ୍ଦ୍ରହାରୀ କମରପଟି ଲଗଉଛନ୍ତି ।" ଯେତେବେଳେ ଛାତି ଗିଳି ବେକ ପାଖକୁ ଆସୁଚି ସେତେବେଳେ ଝିଅ "ମୋ ଛାତି... ମୋ ତଣ୍ଟି...", ଅତି କଷ୍ଟରେ କହିଲା । ମାଆ ମନେ କଲେ ସବୁ ଅଳଙ୍କାର ଜୋଇଁ ପିନ୍ଧଉଛନ୍ତି । ଶେଷରେ ସବୁ ନିଶ୍ଚଳ ହେଇଗଲା, ଖାଲି ସୁ ସୁ ଶବ୍ଦ ଶୁଣାଯାଉଥିଲା ।

ସାନରାଣୀ ସେଇ କବାଟପାଖରେ ଅପେକ୍ଷାକରି ରହିଥିଲେ । କେତେବେଳେ ଝିଅ ଜୋଇଁ ବାହାରିବେ । ଜୋଇଁଟି କେତେ ସୁନ୍ଦର ହେଇଥିବ । ବଡ଼ରାଣୀ ଜୋଇଁଠାରୁ ଅଧିକ ସୁନ୍ଦର ହୋଇଥିବ ତ ? ଝିଅ କେମିତି କେତେ କେତେ ସୁନ୍ଦର ମୂଲ୍ୟବାନ ଅଳଙ୍କାର ପିନ୍ଧିଥିବ କେଜାଣି ? ହେ ପ୍ରଭୁ ବଡ଼ରାଣୀ ଝିଅଠାରୁ ଯେମିତି ଅଧିକ ହେଇଯାଉ । ସକାଳ ପାହି ପାହି ଆସିଲାଣି, ଉଆସର ବହୁତ ଲୋକ ଆସି ଦୁଆର ମୁହଁରେ ରୁଣ୍ଡହେଲେଣି, ସାନରାଣୀ ସମସ୍ତଙ୍କୁ ଜାବତା କରି ନିଜେ ଆଗ ଦେଖିବ ବୋଲି ଆସ୍ତେ ଆସ୍ତେ ଦୁଆରକୁ ଠୁକିଲା । କେହି କୁଆଡ଼େ କବାଟ ଖୋଲିଲେନି । ତା ଭିତରେ ପଶିଗଲା ସାନରାଣୀ, କେହି କୁଆଡ଼େ ନାହିଁ ।

ପଲଙ୍କ ବିଛଣା ଲୋଚା କୋଚା, ଠାଏ ଠାଏ ରକ୍ତ ପଡ଼ିଚି । ରୁପାର କଡ଼ିରେ ଗୁଡ଼େଇ ହୋଇ ସାପଟା ଭିଡ଼ିମୋଡ଼ି ହଉଚି । ଗିଳିଥିବା ହାଡ଼ସବୁ କଡ଼ କଡ଼ ଶୁଭୁଚି । ସାନରାଣୀ ଆଲୋ ବୋଉଲୋ ପାଟି କଲା ବେଳକୁ ସାପଟା ସୁ ସୁ କରି ତା ଉପରକୁ ଡେଇଁ ପଡ଼ିଲା । ଖଇଟିକୁ ଜନ୍ଦାଟିଏ ଟେକି ନେଇ ଗଲାପରି ବିରାଟ ସାପଟା ସାନରାଣୀକୁ ଟେକି ନେଇ ବିଜୁଳି ବେଗରେ ଜଙ୍ଗଲ ଆଡ଼େ କୁଆଡ଼େ ଅଦୃଶ୍ୟ ହେଇଗଲା ।

ଲୋକଙ୍କ ହା ହା କାର ଉଠିଲା, କାହାରି ଜାଣିବାକୁ ବାକି ରହିଲାନି ଯେ ଦୁଷ୍ଟ ସାପଟା ରାତିରେ ଝିଅଟିକୁ ଗିଳି ଦେଇଚି । ଅନେକ ଶିକାରୀ କେଳାମାନେ ଯାଇ ବଣସାରା ଖୋଜି ନିରାଶ ହେଲେ, ସାନରାଣୀ କିମ୍ବା ସାପର କୌଣସି ଚିହ୍ନବର୍ଣ୍ଣ ନ ଥିଲା । ଥରେ କେତେ ଜଣ କାଠୁରିଆ ଗଭୀର ଜଙ୍ଗଲ ଭିତରେ ସାନରାଣୀ ପିନ୍ଧିଥିବା ଶାଢ଼ୀର ଛିଣ୍ଡା ଅଂଶ ଏଠି ସେଠି ପଡ଼ିଥିବାର ଦେଖିବାକୁ ପାଇଲେ । ରାଜ୍ୟର ପୋଖତ ଶିକାରୀ ଗୋଟିଏ ବିରାଟ ଅହିରାଜ ସାପ ଶିକାର କଲେ । ଛାଲ ବାହାର କରିବାକୁ ଚିରିଲା ବେଳକୁ ତା' ପେଟରୁ ସାନରାଣୀର କେତେକ ଅଳଙ୍କାର ବାହାରିଲା । କେହି କେହି କହିବାର ଶୁଣାଗଲା, 'ଆପଣାକଲା କର୍ମମାନ, ଆଗୁଁ ହୁଅନ୍ତି ସାବଧାନ ।'

ବଡ଼ରାଣୀ ତାଙ୍କ ରାଣୀହଂସପୁରକୁ ଲେଉଟି ଆସିଲେ, ଧୀରେ ଧୀରେ ରାଜା ମଧ୍ୟ ତାଙ୍କ ପୂର୍ବ ଅବସ୍ଥା ଫେରି ପାଇଲେ । ଲୋକ କହିଲେ 'ଉତ୍ତମ ସଙ୍ଗେ ସଙ୍ଗ ଯାର, ସେ କରେ ଉତ୍ତମ ବେଭାର' । ବର୍ଷର ସେଇ ନିର୍ଦ୍ଦିଷ୍ଟ ତିଥିରେ ରାଜା ରାଣୀ ନିଶାର୍ଦ୍ଧରେ ମନ୍ଦିରରେ ପୂଜା ପାଉଥିବା ସେଇ ସୁବର୍ଣ୍ଣ ଚମଡ଼ାଟି ଧରି ସୁମରଣା କରନ୍ତି । ଆକାଶର କିଛି ଅଂଶ ସୁନେଲି କିରଣରେ ଝଟକି ଯାଏ । ଆଉ ଭିତରୁ ଅପୂର୍ବ ଫୁଲରେ ସଜ୍ଜିତ ବିମାନଟିଏ ଅବତରଣ କରେ ।



## ଶେଷ କଥା
## ମୋ ନିଜ କଥା

କୋଟିକମକରା ମୋ ବୋଉର କାହାଣୀ ପେଡ଼ିଟି ଖୋଲିଲେ, ମୋର ମନେହୁଏ ଯେମିତି ଅନନ୍ତ ନୀଳ ଆକାଶରୁ ନୀଳିମାସବୁ ନୀଳ ଝରଣା ହେଇ ଝର ଝର ଝରିଝରି ଆସୁଛି ମୋ କଲମକୁ । ସେଇଠି ମୁଁ ଦେଖିଲି କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ଅପରୂପା... ଅନୁପମା...ମା' ଦୁର୍ଗା, ଐଶ୍ୱର୍ଯ୍ୟମୟୀ ମା' ମହାଲକ୍ଷ୍ମୀ, ବିଦ୍ୟାର ଅଧିଷ୍ଠାତ୍ରୀ ମାତା ମହାସରସ୍ୱତୀଙ୍କୁ – ମୋ ବୋଉକୁ, ମୋ ମାମାମାନଙ୍କୁ । ମୁଁ ସ୍ତମ୍ଭିତ... ବିସ୍ମିତ... ଚକିତ... ବିଭୋର ହେଇ ଚାହିଁ ରହିଲି... ।

ମୁଁ ଦେଖିଲି ମୌନୀ ବାବାଙ୍କୁ – ଯାହାଙ୍କୁ ପିଲାଦିନେ ଦେଖିଥିଲି ଆମ ଘରେ । ଆମ ବଡ଼ଘର, ମଝିଘର, ସରଘର, କୋଠି । ଆମ ଫୁଲବଗିଚା, ଆମ ମନ୍ଦିର, ଆମ ପୂଜାରୀ, ମାଳୀ... । ପୋଷା ହରିଣ, ମୟୂର, ନେପାଳ, ଠେକୁଆ, ଶୁଆସାରି, ବାରମାସୀ ଚଢ଼େଇ... ଆଉ କମାର ଖଳା ଧାନଗଦା, ନଡ଼ା କୁଡ଼ିଆ, ଆମ ପାଟ ଅଗଣା, ଆମ ମାଣବସା, ଝୋଟି, ଚିତା, ପୂର୍ଣ୍ଣକୁମ୍ଭ, ମାଛ ପୂର୍ଣ୍ଣକୁମ୍ଭ, ଧାନ ଶିଶା, ଟିପ ଦେଉଳ, ନବଗୁଞ୍ଜର । ରଜ, କୁମାରପୂନେଇଁ, ଆମ ପୂଜାପାର୍ବଣ, ପିଠା ଖଜା । ମୁଁ ଦେଖିଚି, ଦେଖିଚି... ଅନେକ ଦେଖିଚି ।

ମୋ ପିଲାଏ ଧଳା ସର୍ବଜୟ ପକ୍ଷୀରାଜ ଘୋଡ଼ାରେ ବସି ସୁନା ଛାଟରେ ଛାଟେକ ମାରି ଏକା ଡିଆଁକେ ଅନଳ ପାଚିରି ଡେଇଁଯିବାର ମୁଁ ଦେଖିଚି । ଆପଣ ମିଛ ମଣିପାରନ୍ତି... କିନ୍ତୁ ନିହାତି ସତ କଥା – କେବେ ଯଦି ଇଆଡ଼େ ଆସନ୍ତି, ତା ହେଲେ ଆପଣ ବି ଦେଖିବେ ଚାରି ସଙ୍ଗାତଙ୍କ ଶୟନ କକ୍ଷରେ, ମହ ମହ ମହକୁଥିବା ଈଶ୍ୱର ପାର୍ବତୀଙ୍କର ସେଇ ଅଲୌକିକ ଅମଉଳା ଫୁଲସବୁ ଏବେ ବି ତାଜା ହେଇ ରହିଚି ସୁନା ଫୁଲଦାନିରେ; ଦେଖିବେ ସରଖାଇ ସୁନ୍ଦରୀର ଗହନ ବନର ମାର୍ମିକ ବନ୍ଧୁ ମନୁକୁ... ଯିଏ ସୁନା ପଞ୍ଜୁରିରେ ରତ୍ନହାର ପିନ୍ଧି ହସୁଚି ।

ଦେଖିବେ ସେ ଦିନର ସେଇ ଦୁର୍ମୂଲ୍ୟ କାଚ ଖୁମ୍ବକୁ । ନ ଖାଇ ନ ପିଇ ଭଉଣୀଟି ବସିଲା ଠାବରୁ ଉଠି ଆସିଥିଲା, ଆଉ ଏଇ ଅପୂର୍ବ କାଚ ଖୁମ୍ବ ଭଙ୍ଗାଇ ଲାବଣ୍ୟବତୀ କିନ୍ନରୀ କନ୍ୟାଟିକୁ ବାହାର କରି ଏକୋଇର ବଳା ବିଶିକେଶନ ଭାଇଟିକୁ ବଞ୍ଚାଇଥିଲା । ସମ୍ରାଟଙ୍କର ଅପହଞ୍ଚ ଭଣ୍ଡାର ଘରେ ସୁନାରୁଖାଟିକୁ ଦେଖିବେ ଏ ପର୍ଯ୍ୟନ୍ତ ନିଜ ମହିମାରେ ମହିମାନ୍ୱିତ ହୋଇ ରହିଚି, ଯାହାର ନିର୍ମାଣ କୌଶଳ ଆଜିର ବୈଜ୍ଞାନିକମାନେ ମଧ୍ୟ ଜାଣିବାକୁ ସକ୍ଷମ ହୋଇପାରିନାହାନ୍ତି ।

ଆଉ ଟିକିଏ କଷ୍ଟ କରି ଇଆଡ଼େ ଆସନ୍ତୁ । ଦେଖିବେ ଗୋଟାଏ ବିରାଟ ଟାଙ୍ଗରା ପଡ଼ିଆ । ସରକାରଙ୍କର ଅନେକ କୃଷି ବିଶାରଦମାନଙ୍କର ପ୍ରୟାସ ଓ ପ୍ରଚେଷ୍ଟା ସତ୍ତ୍ୱେ ସେ ଭୂଇଁରେ

ଦୂବଘାସଟିଏ ମଧ୍ୟ କଅଁଳୁନାହିଁ । କୁଆଡ଼େ ଏଇଠି ଗୋରା ବ୍ରାହ୍ମଣର ହାତକେ ଚାନ୍ଦ ହାତକେ ତାରା ଥିବା ପୁଅ ଝିଅଙ୍କୁ ଜନ୍ମ ଦେଇଥିବା ସାନଝିଅର ଭଉଣୀମାନେ ନିଜ ଲଜ୍ଜାରେ ଆପଣା ହାତରେ ଜିଭ ଉପାଡ଼ି ମରିଥିଲେ ।

ଟିକିଏ ଆଗକୁ ସମାଧି ପରି ଦେଖାଯାଉଥିବା ଛୋଟ ମନ୍ଦିରରେ କେତେଗୁଡ଼ିଏ ଭଙ୍ଗା ପିହାଣ ଆଉ କଳା ମୁଗୁନିରେ ତିଆର କାଉର ବିରାଟ ପ୍ରତିମୂର୍ତ୍ତିଟିଏ ରହିଚି, ପ୍ରତିଦିନ ସାଧବଘରର ବଂଶଧରମାନେ ଫୁଲଚନ୍ଦନ ଦେଇ ପୂଜା କରନ୍ତି । ଶ୍ରାବଣ ମାସର ଦ୍ୱିତୀୟା ତିଥିରେ ଶ୍ରାଦ୍ଧ ଉପଲକ୍ଷେ ଏଠାରେ କୁଆଡ଼େ ଖୁବ୍ ରନ୍ଧାବଢ଼ା ଖିଆପିଆ ହୁଏ । ଏ କଥା କାହାରିକୁ ପଚାରିବେନାହିଁ, ତାଙ୍କ ମନଦୁଃଖ ହେଇଯାଏ । ଆଉ କିଛି ବାଟ ଆସନ୍ତୁ ।

ହଁ, ହଁ, ଏଇ ସେଇ ରଙ୍ଗମହଲ ଯୋଉଠି ସେଇ ଗୁମାନୀ ରାଜକୁମାରୀ ଅବୁଝା ରାଜକୁମାରକୁ ଆଚ୍ଛା ପାନେ ଚଖେଇଥିଲା । ଯିଏ କହିଥିଲା – "ଏମିତି ଝିଅକୁ ବାହା ହୁଅନ୍ତା, ଅଧା ବିଭା ହୋଇ ଛାଡ଼ିଯାଆନ୍ତା ।" ଉତ୍ତରରେ ଝିଅ କହିଥିଲା ଭାରି ଦମ୍ଭରେ – "ଏମିତି ପୁଅକୁ ବାହା ହୁଅନ୍ତା, ବାପଘରେ ଥାଇ ପୁଅ କରନ୍ତା ।"

ଆଗରେ ଗୋଟିଏ ସମ୍ପୂର୍ଣ୍ଣ ରାଜ୍ୟ ସୀମାରେ ରୁପା ଜାଲି ଦିଆ ପ୍ରବାଳର ପାଚିରି ଭିତରେ ଝରାଝମ୍ପା ଲଗା ଚନ୍ଦ୍ରାତପ ଟଣା ରୁପାର ଚଉତରା ଉପରେ ସୁନାର ଫରୁଆରେ ଝକ ଝକ କରୁଚି ଗୋଟାଏ ବିରାଟ ମଣି । ଚାହିଁଲେ ଆଖି ଝଲସି ଯାଉଛି । ଇଏ କୁଆଡ଼େ ସେଇ ମଣିଚୂଳ ନାଗର ମଣି । ପାଖରେ ଗୋଟାଏ ବିରାଟ ପୋଖରୀ । ଏ ପାଖରୁ ସେ ପାଖ ଚାହିଁବାକୁ ଆଖି ପାଉନାହିଁ । ଏଥିରେ କେହି ସ୍ନାନ ମଧ୍ୟ କରିବାକୁ ମନା – ଭିତରେ କୁଆଡ଼େ ପ୍ରବାଳର ଉଆସ ଅଛି । ଅର୍ଦ୍ଧରାତ୍ରିର ନିର୍ଦ୍ଦିଷ୍ଟ ପ୍ରହରରେ ନାଗକନ୍ୟାମାନେ କୁଆଡ଼େ ଏଇ ମଣିକୁ ପୂଜିବାକୁ ଆସନ୍ତି ।

ଆଗ ଗାଁରେ ସାତ ସାଧବଘର ପଡ଼ିବ । 'ସାଧବଘରର ଗୁମର କଥା... ମିତ କାନ ଡେରିଥା' – ଏଇଠି କଲରେଇ ଫୁଲର ଘର । ସେଇଠି ଆଶ୍ରମ ଅଛି, ଯଜ୍ଞମଣ୍ଡପ ଅଛି, କେତେ କାଳରୁ କେଜାଣି ଧୁନି ଜଳୁଚି । ଯେତେ ଝଡ଼ ବତାସି ହେଲେ ବି ଅଗ୍ନି ଦେବତା ଜୁକୁ ଜୁକୁ ହେଉଥିବେ ପାଉଁଶ ତଳେ – ଅଲିଭା ସେ ଧୁନି ।

ଆଗକୁ ମଧୁବନ ତୋଟା । ସେଠି ସଦାସର୍ବଦା 'ଫୁଲହାଟ' ବସିଥାଏ । କାହାର ଜଣାନାହିଁ ଏଇ ସୁନ୍ଦର ମନୋରମ ଉଦ୍ୟାନଟି । ସଞ୍ଜ ଗଡ଼ିଗଲେ, ରାତି ଜମିଆସିଲେ, ଅନ୍ଧକାର ଘନେଇଆସିଲେ ଆପଣ ଶୁଣିପାରିବେ, "ଏ କୁଲି, ଇଟା ଲାଓ, ଚୂନ ଲାଓ, ପାନି ଲାଓ" ମିଳିତ କଣ୍ଠରେ ଆକାଶରୁ ଶୁଣାଯାଏ – କିଏ ସବୁ ଡାକୁଛନ୍ତି ।

ଆପଣ ଆଶ୍ଚର୍ଯ୍ୟ ହେଲେ କି? ଆଉ ଟିକିଏ ଆଗକୁ ସର୍ପ ଆକୃତିର ସର୍ପ ଦେଉଳ । ତା ଗମ୍ଭୀରା ଭିତରେ ଗୋଟିଏ ବିରାଟ ରୌପ୍ୟ ପାତ୍ରରେ ରହିଚି ସୁନା ରଙ୍ଗର ଗୋଟିଏ ସାପ କାତି । ଦୀପ ଆଲୁଅରେ ଚିକ୍ ଚିକ୍ କରୁଚି । ଲୋକେ କହନ୍ତି ନିର୍ଦ୍ଦିଷ୍ଟ ଗୋଟିଏ ତିଥିରେ ଗଭୀର ରାତିରେ ପୂର୍ବ ଆକାଶ ସୁନେଲି ହୋଇଯାଏ । ଆଉ ଅପୂର୍ବ ଫୁଲରେ ମଣ୍ଡଣି ହୋଇ ଅପରୂପ ବିମାନ ଦେଖାଯାଇ କିଛି କ୍ଷଣ ପରେ ଉଭାନ ହୋଇଯାଏ । ଲୋକେ ପୁଣି କହନ୍ତି ଏକସ୍ତରି ଥର ଏହି ବିମାନକୁ ଦର୍ଶନ କଲେ ଆଉ ପୁନର୍ଜନ୍ମ ହୁଏନାହିଁ ।

ସବୁଆଡ଼ ଦେଖିଦେଖି ବୁଲିବୁଲି ଆପଣ ଥକିପଡ଼ିଲେଣି ନା? ବିଶ୍ରାମ ନିହାତି ଜରୁରୀ – ଚିନ୍ତା ନାହିଁ। ଆଉ ମାତ୍ର ଦି ଫର୍ଲଙ୍ଗ ଦୂରରେ ଆପଣଙ୍କୁ ବିଶ୍ରାମାଗାର ମିଳିଯାଇ ପାରିବ। ଆପଣ ଦେଖି ପାରିବେ ସୁଉଚ୍ଚ... ସୁଶୋଭିତ ବିଳାସ ସୌଧ। ଫଳକରେ ଲେଖାଥିବ 'ବର୍ଣ୍ଣାଳି ରତ୍ନ ଭଣ୍ଡାର'। ଟିକିଏ ତଳକୁ 'ଚୌରଚନ୍ଦ୍ର ଚୂଡ଼ାମଣି ଅତିଥିଶାଳା'।

ଗୋଟାଏ କରକୁ ବିରାଟ କଳା ମୁଗୁନି ପଥରରେ ଖୋଦେଇ କରା ସ୍ୱର୍ଣ୍ଣ ଅକ୍ଷରରେ ଲିଖିତ – "ମହାରାଜାଙ୍କର ମହାରାଜ ସଭା ପରଖ ଦେଉଚି ଛାଞ୍ଛିମାଛି, ମହା ଜାଣିବାର ମହାମନ୍ତ୍ରୀ ଶୁଣି କଥା କହିଦେଲେ ବାଛିବାଛି... ସବୁ ବିଦ୍ୟାଠାରୁ ଚୋରିବିଦ୍ୟା ଭଲ, ନେଇ ଆଣି ଯଦି ଥୁଅ, ଚାଲି ନ ଜାଣିଲେ ଅଗଣାର ଦୋଷ ମନ୍ତ୍ରୀ ବନ୍ଦିଶାଳା ଯାଅ। ରାଇଜ ସାରା ତ ଯୁର କଲା ଚୋର ସେନାପତି ହରିକାଠେ... ସାରା ରାଇଜର ମଉଡ଼ମଣି ସେ ଜଗିଚନ୍ତି ଧୋବା ତୁଠେ। ମଣିମା ମଣିମା ଗୁହାରି ଶୁଣିମା ମୁଁ ଛାର ସେବକ ପୁଣି... କ୍ଷମାକର ଦୋଷ ବିନତି କରୁଚି ଚୌରଚନ୍ଦ୍ର ଚୂଡ଼ାମଣି।"

ଏହା ପରା ବିଶ୍ୱଜନ ବିଦିତ, ସର୍ବଜନ ଆଦୃତ ପ୍ରସିଦ୍ଧ ଭୋଜନାଳୟ। ଆପଣ ଏଇ ବିଳାସ ସୌଧରେ ମଜା ନେବା ପାଇଁ ଚାହିଁଲେ ମୋ ନାମ ନେଇ ଏଠାର ମୁଖ୍ୟ ପ୍ରବନ୍ଧକଙ୍କ ସହିତ ସମ୍ପର୍କ ସ୍ଥାପନ କରନ୍ତୁ। ପାଞ୍ଚ ଦିନ ପାଇଁ ଆପଣଙ୍କୁ ବିନା ଶୁଳ୍କରେ ସୁସ୍ୱାଦୁ ଭୋଜନ ଏବଂ ଆରାମଦାୟକ ରହଣିର ବ୍ୟବସ୍ଥା ମିଳିଯିବ।

"ଗଲି ଆଇଲି... ଯାହା ଦେଖିଲି ତାହା କହିଲି।" ଏ ଗପଗୁଡ଼ିକ ସବୁ ବୟସର ପିଲାଙ୍କ ପାଇଁ ଲେଖା ହେଇଚି। ମୋ ବୟସର ପିଲାଟି "ମୋ ବୋଉର କାହାଣୀ ପେଡ଼ି"ରୁ ବାଛିବାଛି ସଂଗ୍ରହ କରିଚି। ଏମିତି ଅଜସ୍ର କାହାଣୀ ବୋଉର କାହାଣୀ ପେଡ଼ିରେ ସାଇତା ହେଇ ରହିଚି।

ଏ ଲେଖା ମୁଁ ଲେଖିନାହିଁ, କିଏ ଲେଖିଚି ତା ମଧ୍ୟ ମୁଁ ଜାଣିପାରିନି। ବହୁଦିନ ଆଗରୁ ମୋର ପରମପୂଜ୍ୟ ଭାଇ ଶ୍ରୀଯୁକ୍ତ ଦେବୀପ୍ରସନ୍ନ ପଟ୍ଟନାୟକ ଏହା ଲେଖିବାକୁ ମୋତେ ଆଦେଶ କରିଥିଲେ। ହୁଏତ ତାଙ୍କରି କିଛି ଶକ୍ତି ଦ୍ୱାରା ଏହା ଲିଖିତ ହେଇଥାଇପାରେ। ମୁଁ ତାଙ୍କୁ ବାରମ୍ବାର ପ୍ରଣାମ କରୁଚି।

ମୋର ସାନଭାଇଟିଏ ଦେବରାଜ, ଯିଏ ନିଜ ନାଁକୁ ଫୁଲେଇ ହେଇ ଲେଖେ 'ଦେବ୍ରାଜ ଲେଙ୍କା', ଯାହା ସହିତ ମୋର କୌଣସି ରକ୍ତର ସମ୍ପର୍କ ନାହିଁ କିମ୍ବା ନିର୍ମାଲ୍ୟ ଦେଇ ଆମେ ସମ୍ପର୍କ ସ୍ଥାପନ କରିନାହୁଁ। କିନ୍ତୁ ମୋର ଗେହ୍ଲାର ଛୋଟ ଭାଇଟି ସିଏ। ମୋତେ କୋଉଠୁ ନେଇ କୋଉଠି ରଖିଦେଇଚି। ଚଗଲା। ଏମିତି ସବୁ କଥା ଲେଖିଲେଖି ମୋ ମୁହଁକୁ ଏମିତି ବନ୍ଦ କରିଦେଇଚି ଯେ ମୋ ହୃଦୟ ଭିତରୁ ଉତୁରି ଆସୁଥିବା 'ଧନ୍ୟବାଦ'ଟିଏ ମଧ୍ୟ କହିବାର ସ୍ପର୍ଦ୍ଧା ରଖିପାରୁନାହିଁ ମୁଁ। ଏତେ ଦିନ ତୁ କୋଉଠି ଥିଲୁ ରେ ଭାଇ?

କୋଉ ଆଦିମ କାଳରୁ ମୋ ବୋଉର କାହାଣୀ ପେଡ଼ିରେ ସାଇତା ରତ୍ନକଣିକାଗୁଡ଼ିକର ଅତି ଯତ୍ନର ସଜ୍ଜିତ ଛବି ଉତାରି ତାକୁ ଦେଶ ଦୁନିଆ ବୁଲେଇ ଆଣିଲେ ସେଇ ମହାଶୟ ଶ୍ରୀଯୁକ୍ତ ମହେନ୍ଦ୍ର ମିଶ୍ର। ବହିରେ ରହିଛି ଗପଟିକୁ ଛବିଟିଏ – ଚିତ୍ରଗୁଡ଼ିକୁ ଆଙ୍କିଛନ୍ତି ଶିଳ୍ପୀ ଶ୍ରୀ ବଂଶୀଧର ପ୍ରତିହାରୀ। ପ୍ରଚ୍ଛଦର ପୃଷ୍ଠଭୂମି ମଧ୍ୟ ଆସିଛି ତାଙ୍କରି ତୂଳୀରୁ – ଏ ଦୁହିଁଙ୍କୁ ମୁଁ ଅଶେଷ ଅଶେଷ ଧନ୍ୟବାଦ ସହିତ କୃତଜ୍ଞତା ଜଣାଉଚି।

ଆଉ ସବୁଠାରୁ ଉଲ୍ଲେଖଯୋଗ୍ୟ ଘଟଣା ମୋର ଆଦରଣୀୟା ଗେହ୍ଲା ଭାଉଜ ପୁଷ୍ପଶ୍ରୀ ଆଉ ମୋର ସ୍ନେହର ଛୋଟଭାଇ ନିଖିଳମୋହନ ତାଙ୍କର ଅସୀମ କର୍ମଜଞ୍ଜାଳ ଭିତରେ ମଧ୍ୟ କଠିନ ପରିଶ୍ରମ କରି ମୋ ଜନ୍ମଦିନରେ ଏଇ ବହିଟି ମୋତେ ଉପହାର ଦେଇଚନ୍ତି – ଯାହା ମୋ ବାକି ଜୀବନର ପାଥେୟ। ତାଙ୍କର ଆଉ ତାଙ୍କ ସାଥୀ ପଦ୍ମଜାନନ୍ଦିନୀ, ଶିବପ୍ରସାଦ ଓ ଜୀବନକୁମାରଙ୍କର ସଯତ୍ନ ପ୍ରଚେଷ୍ଟା ଓ ନିଷ୍ଠା ଫଳରେ ଏହା ସମ୍ଭବ ହୋଇପାରିଚି। ସେମାନଙ୍କୁ ମୁଁ ମୋ ଗଭୀର ହୃଦୟରୁ କଲ୍ୟାଣ ଦେଉଚି। ମା' ତାଙ୍କୁ ପଣତ ଆଢୁଆଳରେ ରକ୍ଷା କରନ୍ତୁ। ତାଙ୍କର ଉତ୍ତରୋତ୍ତର ଉନ୍ନତି କାମନା କରୁଚି।

ଆଉ ପିଲାମାନେ – ପାଠର ବୋଝ... କାମର ବୋଝରେ ତମେମାନେ ଏତେ ବ୍ୟସ୍ତ, ଏତେ ବିବ୍ରତ, ଏତେ ଅସ୍ଥିର ଯେ କେତେବେଳେ ସୂର୍ଯ୍ୟ ଉଏଁ, ସେତେବେଳେ ଆକାଶର ରଙ୍ଗ କେମିତି, ଚନ୍ଦ୍ରମାରେ ଶୀତଳତା କେତେ ମୋହନୀୟ ତାକୁ ସବୁ ଦେଖିବାକୁ... ଗ୍ରହଣ କରିବାକୁ... ଅନୁଭବ କରିବାକୁ ଅବକାଶ ନାହିଁ। ତମର ସଂସ୍କାର... ତମର ସଂସ୍କୃତି... ତମର ଅତୀତ... ତମର ଐତିହ୍ୟ... ଆଦିକୁ ସ୍ମରଣ କରିବାକୁ... ଚାହିଁବାକୁ... ତମର ସମୟ ନାହିଁ।

ମନ ବି ଆଉ ନାହିଁ। ପାଶ୍ଚାତ୍ୟ ସଭ୍ୟତା, ଆଧୁନିକ କଲେଇକରା ଚଳଣିର ଚଷମା ପିନ୍ଧି ତମେମାନେ ଦୁନିଆକୁ ଦେଖିବାରେ ଅଭ୍ୟସ୍ତ ହୋଇସାରିଲଣି। ମୋର ଆଦରର ପିଲାଏ, ମୋର ଭାରି ମନଦୁଃଖ ହେଇ ଯାଉଚି। ଆଖିରେ ଲୁହ। ମୋର ପିଲାଏ, ଅନଧିକାରର ଅଧିକାରରେ ମୁଁ ତମମାନଙ୍କୁ ଅନୁରୋଧ କରୁଚି, ଏକାବେଳେ ନ ହେଲେ ମଧ୍ୟ କେତେବେଳେ କେମିତି ଟିକିଏ ଟିକିଏ କରି ଏ ବହିଟି ପଢ଼ି ଦେଖ, ତମ ଅତୀତ କେତେ ସୁନ୍ଦର, କେତେ ମନମୋହକ, କେତେ ମାର୍ମିକ, କେତେ ମର୍ଯ୍ୟାଦାବନ୍ତ ଥିଲା।

ଏ ବହିଟିକୁ ମୁଁ ତମରିମାନଙ୍କ ହାତରେ ଦେଲି।

୫-୧୧-୨୦୧୩ **ଶ୍ରୀମତୀ ବିନୋଦିନୀ ଦେବୀ**

ସହିଦନଗର

*ମୋ ବୋଉର କାହାଣୀ ପେଢ଼ିରୁ* : ପୁରୁଣା ଗପର ରାଜ୍ୟ ହେଉଛି ଅଜଣାର ରାଜ୍ୟ, ଖେଳର ରାଜ୍ୟ । ଏଠି ସବୁ କଥାର ଅର୍ଥ ନାହିଁ । ଅର୍ଥ ଖୋଜି ବାହାର କରିବାକୁ ହେବ କିମ୍ବା ନିରର୍ଥକ ସେହି ଶବ୍ଦର ସ୍ୱାଦ ଅନୁଭବ କରିବାକୁ ହେବ । ଏଇ ଗପଗୁଡ଼ିକର ଗୋଟିଏ ବିଶେଷତ୍ୱ ହେଉଛି ସାମାଜିକ ସମନ୍ୱୟ । ଏଠି ପଶୁପକ୍ଷୀ, ଗଛବୃକ୍ଷ, ବାସନକୁସନ, ଶିଳଶିଳୁପୁଆ, ସମସ୍ତେ କଥାବାର୍ତ୍ତା କରନ୍ତି । ମଣିଷ ରାଜାପୁଅ ପାରା, ବାର୍ ହା, ବାଘ ରାଜକନ୍ୟାଙ୍କୁ ବାହା ହୁଏ । ସୁନାସାପ କିନ୍ନର ପାଲଟିଯାଏ, ଅହିରାଜ ଲୋଭୀ, ହିଂସୁକ, ଦୁଷ୍ଟ ଲୋକଙ୍କୁ ଗିଳି ହଜମ କରିଦିଏ । ଗପ କହୁଥିବା ବୋଉମାନେ ଏକାଧାରରେ ଶବ୍ଦଶିଳ୍ପୀ, ଚିତ୍ରକର, କଳ୍ପନାପ୍ରବଣ ସର୍ଜନଶୀଳ କଥକ । ଏଇ ସବୁ କଥା କହିକହି ସେମାନେ ପିଲାଙ୍କ ଜୀବନ ଗଢ଼ନ୍ତି । ଏଇ ଗପଗୁଡ଼ିକ ଆମ ଭାଙ୍ଗିଯାଉଥିବା ସମାଜକୁ ଯୋଡ଼ିବାରେ ଏବେ ମଧ୍ୟ ହୁଏତ ସାହାଯ୍ୟ କରିପାରିବ ।



ତାଙ୍କ ବୋଉର ଗପପେଢ଼ିରୁ ଏଗୁଡ଼ିକୁ ସାଇତି ରଖି ଆଜିର ପିଲାଙ୍କ ପାଖରେ ପହଞ୍ଚାଉଛନ୍ତି **ଶ୍ରୀମତୀ ବିନୋଦିନୀ ଦେବୀ** । ୧୯୩୭ ମସିହାରେ ତିଗିରିଆ ଗଡ଼ରେ ଜନ୍ମିତା ବିନୋଦିନୀ ଜଣେ ବିଖ୍ୟାତ କବି ଓ ଗୀତିକାର। ରେଡିଓ ଓ ସିନେମା ମାଧ୍ୟମରେ ତାଙ୍କର ସୁଲଳିତ ଗୀତଗୁଡ଼ିକ ସହିତ ଓଡ଼ିଶାବାସୀ ବେଶ୍ ପରିଚିତ ।

ତାଙ୍କର ମୌଳିକ ଓ ଅନୁବାଦ ରଚନା ଭିତରେ ରହିଛି - *ଏଇ କଳା ମୋର କଳଙ୍କ* (ଆଧୁନିକ ସଙ୍ଗୀତ ସଂକଳନ), *ଟିକି ଟିକି ନାଲି କାଇଁଚ* (ପଲ୍ଲୀଗୀତ ସଂଗ୍ରହ), *ଅମୃତ* (ଭଜନ), *ଖୋକାଟିଏ ଖୋକିଟିଏ* (ଶିଶୁ ସାହିତ୍ୟ), *ଆଦର୍ଶ ନାରୀ ସୁଶୀଳା* (ହିନ୍ଦୀରୁ ଅନୁବାଦ), *ଜାଗୃତି* (ବଙ୍ଗଳାରୁ ଅନୁବାଦ) ଇତ୍ୟାଦି ।

ଅନେକ ଭାବରେ ସମ୍ମାନିତା ଓ ପୁରସ୍କୃତା ଏହି ଲେଖିକା *ମଲାଜହ୍ନ* ସିନେମାରେ ତାଙ୍କର *ରଜତ ଟଳମଳ...* ଗୀତ ପାଇଁ ରାଷ୍ଟ୍ରପତି ପୁରସ୍କାରରେ ଅଳଂକୃତା ।

ସାହିତ୍ୟ କ୍ଷେତ୍ରରେ ସମସାମୟିକ ସର୍ଜନାର ପ୍ରକାଶନ ସହିତ ଓଡ଼ିଆ ଭାଷାର ହଜିଯାଉଥିବା ମୂଲ୍ୟବାନ ବିଭବକୁ ଲୋକଲୋଚନକୁ ଆଣିବା କାମରେ ଲାର୍କ ବୁକ୍ ସ୍ ସମ୍ପୃକ୍ତ । ୭୦ ବର୍ଷ ପରେ **ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ**ର ସଫଳ ପୁନର୍ମୁଦ୍ରଣ ଏହାର ଗୋଟିଏ ମୁଖ୍ୟ ଅବଦାନ ।

ଲାର୍କ ବୁକ୍ସ

ସୁବର୍ଣ୍ଣରେଖା ଚ୍ୟାମ୍ବର୍ସ
ଏ/ ୯, ଭୌମ ନଗର, ୟୁନିଟ-୪, ଭୁବନେଶ୍ୱର - ୭୫୧୦୦୧
ଫୋନ୍ : (୦୬୭୪) ୨୫୧୬୨୪୪
ମୋ : ୯୪୩୭୦୩୬୨୪୪